# ସୂଚୀ

ଅପ୍ରେଲ ୨୦୧୬

# ବନ୍ଦେ ଉତ୍କଳ ଜନନୀ

ବନ୍ଦେ ଉତ୍କଳ ଜନନୀ
ଚାରୁହାସମୟୀ ଚାରୁ ଭାଷମୟୀ, ଜନନୀ, ଜନନୀ, ଜନନୀ ।
ପୂତ-ପୟୋଧି-ବିଧୌତ-ଶରୀରା,
ତାଳତମାଳ-ସୁଶୋଭିତ-ତୀରା,
ଶୁଭ୍ରତଟିନୀକୂଳ-ଶୀକର-ସମୀରା
ଜନନୀ, ଜନନୀ, ଜନନୀ ।।

ଘନ ବନଭୂମି ରାଜିତ ଅଙ୍ଗେ,
ନୀଳ ଭୂଧରମାଳା ସାଜେ ତରଙ୍ଗେ,
କଳ କଳ ମୁଖରିତ ଚାରୁ ବିହଙ୍ଗେ
ଜନନୀ, ଜନନୀ, ଜନନୀ ।।

ସୁନ୍ଦରଶାଳି-ସୁଶୋଭିତ-କ୍ଷେତ୍ରା,
ଜ୍ଞାନବିଜ୍ଞାନ-ପ୍ରଦର୍ଶିତ-ନେତ୍ରା,
ଯୋଗୀଋଷିଗଣ-ଉଟଜ-ପବିତ୍ରା
ଜନନୀ, ଜନନୀ, ଜନନୀ ।।

ସୁନ୍ଦର ମନ୍ଦିର ମଣ୍ଡିତ-ଦେଶା,
ଚାରୁକଳାବଳି-ଶୋଭିତ-ବେଶା,
ପୁଣ୍ୟ ତୀର୍ଥଚୟ-ପୂର୍ଣ୍ଣ-ପ୍ରଦେଶା
ଜନନୀ, ଜନନୀ, ଜନନୀ ।।

ଉତ୍କଳ ସୁରବର-ଦର୍ପିତ-ଗେହା,
ଅରିକୁଳ-ଶୋଣିତ-ଚର୍ଚ୍ଚିତ-ଦେହା,
ବିଶ୍ୱଭୂମଣ୍ଡଳ-କୃତବର-ସ୍ନେହା
ଜନନୀ, ଜନନୀ, ଜନନୀ ।।

କବିକୁଳମୌଳି ସୁନନ୍ଦନ-ବନ୍ଦ୍ୟା,
ଭୁବନବିଘୋଷିତ-କୀର୍ତ୍ତିଅନିନ୍ଦ୍ୟା,
ଧନ୍ୟେ, ପୁଣ୍ୟେ, ଚିରଶରଣ୍ୟେ
ଜନନୀ, ଜନନୀ, ଜନନୀ ।।

(କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର)

# ନବ ଉତ୍କଳର ନିର୍ମାତାଗଣ



ଉତ୍କଳଗୌରବ ମଧୁସୂଦନ ଦାସ







ଉତ୍କଳମଣି ଗୋପବନ୍ଧୁ ଦାସ

# ନବ ଉତ୍କଳର ନିର୍ମାତାଗଣ



ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ







ମହାରାଜା ଶ୍ରୀରାମଚନ୍ଦ୍ର ଭଂଜଦେଓ

# ନବ ଉତ୍କଳର ନିର୍ମାତାଗଣ



ସ୍ୱଭାବକବି ଗଂଗାଧର ମେହେର







ବ୍ୟାସକବି ଫକୀରମୋହନ ସେନାପତି

# ନବ ଉତ୍କଳର ନିର୍ମାତାଗଣ



ପଣ୍ଡିତ ନୀଳକଣ୍ଠ ଦାସ



କବିବର ରାଧାନାଥ ରାୟ





ଡକ୍ଟର ହରେକୃଷ୍ଣ ମହତାବ



ମହାନ ଜନନାୟକ ବିଜୁ ପଟ୍ଟନାୟକ

# ଓଡ଼ିଶା ଦିବସ –୨୦୧୬ ପାଳନ ଅବସରରେ

# ମାନ୍ୟବର ପ୍ରଧାନମନ୍ତ୍ରୀ
# ଶ୍ରୀ ନରେନ୍ଦ୍ର ମୋଦିଙ୍କ
# ବାର୍ତ୍ତା



ଏହା ମୋ' ପାଇଁ ଏକ ଆନନ୍ଦର ବିଷୟ ଯେ, ପ୍ରତିବର୍ଷ ପରି ଏହି ବର୍ଷ ମଧ୍ୟ ଓଡ଼ିଶା ରାଜ୍ୟ ୨୦୧୬ ମସିହା ଅପ୍ରେଲ ୧ ତାରିଖରେ 'ଓଡ଼ିଶା ଦିବସ' ପାଳନ କରୁଛି । ଏହି ପବିତ୍ର ଭୂମି, ଏହାର ଇତିହାସ, ପୁରାଣ ଶାସ୍ତ୍ର ଓ ଆଧ୍ୟାତ୍ମିକ ଶକ୍ତି ନିମନ୍ତେ ପ୍ରସିଦ୍ଧି ଲାଭ କରିଛି । ଭାରତ ଗର୍ବ ଅନୁଭବ କରୁଥିବା ଏପରି ଅନେକ କିଛିର ଉତ୍ପତ୍ତି ଏହି ଓଡ଼ିଶା ମାଟିରୁ ହିଁ ସମ୍ଭବ ହୋଇପାରିଛି । ୧୯୩୬ ମସିହା ଅପ୍ରେଲ ୧ ତାରିଖରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପରଠାରୁ ଦୀର୍ଘ ୮୦ ବର୍ଷର ଯାତ୍ରା ପଥରେ ରାଜ୍ୟର ସର୍ବାଙ୍ଗୀନ ବିକାଶ ପରିଲକ୍ଷିତ ହୋଇଛି । ନିର୍ଦ୍ଦିଷ୍ଟ ଭାବେ ଚଳିତ ବର୍ଷ ଏହି ରାଜ୍ୟ ବିଭିନ୍ନ କ୍ଷେତ୍ରରେ ନେତୃତ୍ୱ ବହନ କରିଛି । ଏଣୁ, ଓଡ଼ିଶାରେ ଆଜି ପରମ୍ପରା ଏବଂ ଆଧୁନିକତାର ଏକ ବିରଳ ସମନ୍ୱୟ ଘଟିଛି ।

ସାମଗ୍ରିକ ଖୁସି, ଶାନ୍ତି ଏବଂ ସମୃଦ୍ଧି ସହ ଓଡ଼ିଶାବାସୀଙ୍କ ନିମନ୍ତେ ଏକ ଉଜ୍ଜ୍ୱଳ ଭବିଷ୍ୟତ କାମନା କରୁଛି ।

**ନୂଆଦିଲ୍ଲୀ**

**୨୯ ମାର୍ଚ୍ଚ, ୨୦୧୬**

(ନରେନ୍ଦ୍ର ମୋଦି)

# ଓଡ଼ିଶା ଦିବସ –୨୦୧୬ ପାଳନ ଅବସରରେ

# ମାନ୍ୟବର ରାଜ୍ୟପାଳ
# ଡକ୍ଟର ଏସ୍.ସି. ଜମିର୍‌ଙ୍କ
# ବାର୍ତ୍ତା



ପ୍ରିୟ ଭଉଣୀ ଓ ଭାଇମାନେ,

ଏକ ସ୍ୱତନ୍ତ୍ର ରାଜ୍ୟ ରୂପେ ଓଡ଼ିଶା ପ୍ରଦେଶ ଗଠନର ୮୦ ବର୍ଷ ପୂର୍ତ୍ତି ତଥା ଓଡ଼ିଶା ଦିବସ ୨୦୧୬ ପାଳନ ଅବସରରେ ଆପଣମାନଙ୍କୁ ମୁଁ ମୋର ଆନ୍ତରିକ ଶୁଭେଚ୍ଛା ଜଣାଉଛି । ଆଜିର ଏହି ଐତିହାସିକ ଦିବସରେ ଏକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ବହୁ ପ୍ରତୀକ୍ଷିତ ସ୍ୱପ୍ନ ସାକାର ହୋଇଥିଲା । ଏ ମାଟିର ସୁଯୋଗ୍ୟ ସନ୍ତାନମାନଙ୍କ ଅବିଶ୍ରାନ୍ତ ସଂଗ୍ରାମ ଏବଂ ନିଃସ୍ୱାର୍ଥପର ବଳିଦାନ ଯୋଗୁଁ ୧୯୩୬ ମସିହା ଅପ୍ରେଲ ୧ ତାରିଖ ଦିନ ଏକ ସ୍ୱତନ୍ତ୍ର ଓଡ଼ିଶା ଆତ୍ମପ୍ରକାଶ କରିଥିଲା । ଏହି ଐତିହାସିକ ସଫଳତା ଲାଭ ଦିଗରେ ଓଡ଼ିଶା ମାଟିର ଉତ୍କଳଗୌରବ ମଧୁସୂଦନ ଦାସ, ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ, ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ, ବ୍ୟାସକବି ଫକୀର ମୋହନ ସେନାପତି, ସ୍ୱଭାବ କବି ଗଙ୍ଗାଧର ମେହେର, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ଏବଂ ଏପରି ଅନେକ ପ୍ରଥିତଯଶା ମହାମନୀଷୀଗଣ ନିରନ୍ତର ସଂଗ୍ରାମ ଜାରି ରଖିଥିଲେ ।

ଏକ ସ୍ୱତନ୍ତ୍ର ଓଡ଼ିଶା ରାଜ୍ୟ ଗଠନ ତତ୍କାଳୀକ ପ୍ରକ୍ରିୟା ନଥିଲା ବରଂ ଏହା ଆମର ସ୍ୱାଧୀନତା ସଂଗ୍ରାମୀ, ସମାଜ ସଂସ୍କାରକ, ସାହିତ୍ୟିକ ଏବଂ ଦୂରଦ୍ରଷ୍ଟାମାନଙ୍କ ବହୁ ବର୍ଷ ବ୍ୟାପୀ ଉତ୍ସର୍ଗୀକୃତ ଉଦ୍ୟମର ଫଳଶ୍ରୁତି ଥିଲା । ଆଜିର ଏହି ସ୍ମରଣୀୟ ଦିବସରେ ଆସନ୍ତୁ, ଏହି ମହାନ ବରପୁତ୍ରମାନଙ୍କୁ ଆମର ଗଭୀର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିବା ଏବଂ ସମଗ୍ର ଭାରତବର୍ଷରେ ଭାଷାଭିତ୍ତିକ ପ୍ରଥମ ରାଜ୍ୟ ଗଠନ କ୍ଷେତ୍ରରେ ଆମକୁ ଏକ ଅନନ୍ୟ ପରିଚିତି ପ୍ରଦାନ କରିଥିବା ଏହି ବରପୁତ୍ରମାନଙ୍କ ଅମୂଲ୍ୟ ଅବଦାନ ନିମନ୍ତେ ଶ୍ରଦ୍ଧାପୂର୍ବକ ସେମାନଙ୍କ ସ୍ମୃତିଚାରଣ କରିବା । ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରିକରଣ ସହିତ ୨୫୦୦ ବର୍ଷର ପ୍ରାଚୀନ ଓଡ଼ିଆ ଭାଷାକୁ ସମୃଦ୍ଧ କରିବା ଦିଗରେ ଉତ୍କଳ ସମ୍ମିଳନୀର ନିରନ୍ତର ଉଦ୍ୟମ ଆମ ପାଇଁ ଚିର ସ୍ମରଣୀୟ ହୋଇ ରହିବ ।

ପୁରାତନ ଐତିହାସିକ କାଳର ବୃହତ ତଥା ଶକ୍ତିଶାଳୀ ରାଜ୍ୟ କଳିଙ୍ଗ, ଉତ୍କଳ, ଦକ୍ଷିଣ କୋଶଳ ଏବଂ ଓଡ୍ର ଶବ୍ଦରୁ ସାମ୍ପ୍ରତିକ ଓଡ଼ିଶା ପ୍ରଦେଶ ନାମଟି ଉଦ୍‌ଭବ ହୋଇଅଛି । ଅତୀତର ସମୃଦ୍ଧି ଓ ବୀରତ୍ୱର ଏକ ଅପୂର୍ବ ସମିଶ୍ରଣ ସହ ବର୍ତ୍ତମାନର ବିକାଶ ଓ ସଶକ୍ତିକରଣ ଦିଗରେ ଉଦ୍ୟମ ଆମମାନଙ୍କୁ ଅନ୍ୟମାନଙ୍କଠାରୁ ସ୍ୱତନ୍ତ୍ର କରି ଗଢିତୋଳିଛି ।

ସୁଦୂର ଦେଶମାନଙ୍କ ସହ ଆମର ନୌବାଣିଜ୍ୟ ସମ୍ପର୍କ, ସମୟ ପ୍ରବାହରେ ଆଧ୍ୟାତ୍ମିକ ଓ ନୈତିକ ଜୟଯାତ୍ରା ଏବଂ ସଦ୍‌ଭାବ ଓ ମାର୍ମିକ ସୃଜନଶୀଳତାର ଅନନ୍ୟ ଐତିହ୍ୟ ସମ୍ପର୍କରେ ଆମକୁ ଧାରଣା ଦେଉଥିବା ଓଡ଼ିଶା ହେଉଛି

ଗୌରବମୟ ଐତିହ୍ୟ ଏବଂ ସମୃଦ୍ଧ ସାଂସ୍କୃତିକ ପରମ୍ପରାର ଅଧିକାରୀ । ଆମର ବିବିଧ ଯାନିଯାତ୍ରା, ପର୍ବପର୍ବାଣି ଏବଂ ଉତ୍ସବ ପାଳନ, ଆମର ଲୋକକଳା ଏବଂ ଆଦିବାସୀ ସଂସ୍କୃତି, ଆମର ଓଡ଼ିଶୀ ଶାସ୍ତ୍ରୀୟ ନୃତ୍ୟ ଓ ସଂଗୀତ, ଚିତ୍ତାକର୍ଷକ ଚାନ୍ଦୁଆ, ତାରକସୀ କାମ, ହସ୍ତଶିଳ୍ପ, ସୂକ୍ଷ୍ମକାରିଗରୀ, ଚିତ୍ରକଳା ଏବଂ ପଟ୍ଟଚିତ୍ର, କାରୁକାର୍ଯ୍ୟପୂର୍ଣ୍ଣ ବୟନ ଓ ହସ୍ତତନ୍ତ ସାମଗ୍ରୀ ଓଡ଼ିଶାର କଳାନୈପୁଣ୍ୟତାର ଶ୍ରେଷ୍ଠତ୍ୱ ପ୍ରତିପାଦନ କରେ ।

ଓଡ଼ିଶା ଆଜି ସ୍ୱତନ୍ତ୍ର ପ୍ରଦେଶ ଗଠନର ୮୦ ବର୍ଷରେ ପଦାର୍ପଣ କରିଛି । କିମ୍ବଦନ୍ତୀ ପୁରୁଷ, ରାଷ୍ଟ୍ରନୀତିଜ୍ଞ ତଥା ଆଧୁନିକ ଓଡ଼ିଶାର ସ୍ଥପତି ବିଜୁ ପଟ୍ଟନାୟକଙ୍କ ଜନ୍ମ ଶତବାର୍ଷିକୀ ମାର୍ଚ୍ଚ ୫ତାରିଖଠାରୁ ମହାଡମ୍ବରରେ ପାଳନ କରାଯାଉଛି । ଏହି ଅବସରରେ ରାଜ୍ୟ, ଜାତୀୟ ଏବଂ ଅନ୍ତର୍ଜାତୀୟ ସ୍ତରରେ ବର୍ଷବ୍ୟାପୀ ବିବିଧ କାର୍ଯ୍ୟକ୍ରମ ପାଳନ କରାଯିବା ପାଇଁ କାର୍ଯ୍ୟସୂଚୀ ସ୍ଥିରୀକୃତ ହୋଇଛି । ବିଜୁବାବୁଙ୍କ ଜନ୍ମ ଶତବାର୍ଷିକୀ ପାଳନର ସ୍ମୃତି ସ୍ୱରୂପ ଶତବାର୍ଷିକୀ ଲୋଗୋ, ଏକ ସ୍ମାରକୀ ମୁଦ୍ରା, ସ୍ୱତନ୍ତ୍ର ଡାକ ଟିକଟ ଏବଂ ଏକ ସ୍ୱତନ୍ତ୍ର କ୍ୟାଲେଣ୍ଡର ଉନ୍ମୋଚିତ ହୋଇଛି । ଓଡ଼ିଶାର ଜନସାଧାରଣଙ୍କ କଲ୍ୟାଣାର୍ଥେ ୧୦୦ଟି ପ୍ରକଳ୍ପ ଉତ୍ସର୍ଗ କରିବା ସହ ଉକ୍ତ କାର୍ଯ୍ୟକ୍ରମର ଶୁଭାରମ୍ଭ କରାଯାଇଛି । ଏହାଦ୍ୱାରା ଜନସାଧାରଣ ଅମଳପର ପ୍ରକ୍ରିୟାକରଣ, ବିଶୁଦ୍ଧ ପାନୀୟଜଳ ସୁବିଧା, ଭୂମି ଅଧିକାର ଏବଂ ପ୍ରାକୃତିକ ଦୁର୍ବିପାକ ମୁକାବିଲା କ୍ଷେତ୍ରରେ ବିଶେଷ ସୁବିଧା ହାସଲ କରିପାରିବେ । ରାଜ୍ୟର ବିକାଶ ଏବଂ ଏହାର ଜନସାଧାରଣଙ୍କ ସଶକ୍ତିକରଣ ହେବ ଏହି ମହାନ୍ ଦୂରଦ୍ରଷ୍ଟାଙ୍କ ପ୍ରତି ଯଥାର୍ଥ ଶ୍ରଦ୍ଧାଞ୍ଜଳି । ବିଜ୍ଞାନ ଏବଂ ପ୍ରଯୁକ୍ତିବିଦ୍ୟାର ବିକାଶ, ଅନ୍ତର୍ଜାତୀୟ କ୍ଷେତ୍ରରେ ଏହାର ପ୍ରସାର ଦିଗରେ ବିଜୁବାବୁଙ୍କର ଅବଦାନ ବାସ୍ତବିକ୍ ଅତୁଳନୀୟ । ବିଜୁବାବୁ ଉତ୍ସର୍ଗୀକୃତ ମନୋଭାବ, ନିଃସ୍ୱାର୍ଥପର ସେବା ଓ ତ୍ୟାଗର ମୂର୍ତ୍ତିମନ୍ତ ପ୍ରତୀକ ଥିଲେ । ତୃଣମୂଳସ୍ତରରେ କ୍ଷମତାର ବିକେନ୍ଦ୍ରୀକରଣ ଦିଗରେ ସେ ଥିଲେ ପଥପ୍ରଦର୍ଶକ ।

ଓଡ଼ିଶାର ଜନସାଧାରଣଙ୍କୁ ଉନ୍ନତ କୃଷି, ଜଳସେଚନ, ଯୋଗାଯୋଗ, ବିଦ୍ୟୁତିକରଣ, ପାନୀୟ ଜଳଯୋଗାଣ, ସ୍ୱାସ୍ଥ୍ୟସେବା ଏବଂ ଗୁଣାତ୍ମକ ଶିକ୍ଷା ପ୍ରଦାନ ଏବଂ ଜୀବନଜୀବିକା ନିର୍ବାହ କ୍ଷେତ୍ରରେ ସେମାନଙ୍କୁ ସଶକ୍ତକରିବା ନିମନ୍ତେ ସରକାରଙ୍କ କାର୍ଯ୍ୟସୂଚୀରେ ପ୍ରାଥମିକତା ଦିଆଯାଇଛି । ଏହି ଲକ୍ଷ୍ୟ ସହ ଓଡ଼ିଶାର ସାମଗ୍ରୀକ ବିକାଶ ନିମନ୍ତେ ରାଜ୍ୟ ସରକାର ଅଭିନବ ପଦକ୍ଷେପ ଗ୍ରହଣ କରିଛନ୍ତି । ରାଜ୍ୟ ଐତିହାସିକ ଉତ୍କର୍ଷରୁ ଅର୍ଥନୈତିକ ଅଭିବୃଦ୍ଧି ଆଡକୁ ଅଗ୍ରସର ହେଉଛି ।

ସମଗ୍ର ବିଶ୍ୱ ବର୍ତ୍ତମାନ ପ୍ରଯୁକ୍ତି ବିଦ୍ୟା ଦ୍ୱାରା ପରିଚାଳିତ । ବିକାଶ କ୍ଷେତ୍ରରେ ପ୍ରଯୁକ୍ତି ବିଦ୍ୟାର ପ୍ରସାର ଓଡ଼ିଶା କ୍ଷେତ୍ରରେ ମଧ୍ୟ ଅନୁଭୂତ ହୋଇଛି, ଯାହା ଆମର ଜୀବନଧାରଣ ମାନରେ ଏକ ସକାରାତ୍ମକ ପ୍ରଭାବ ପକାଇବା ସହ ସାମାଜିକ ଏବଂ ଅର୍ଥନୈତିକ ସମସ୍ୟାଗୁଡିକୁ ସମାଧାନ କରିବା ଦିଗରେ ସହାୟକ ହୋଇପାରିଛି । ଏଣୁ ସାମ୍ପ୍ରତିକ ସ୍ଥିତିରେ ଓଡ଼ିଶା ଏକ ଗୁରୁତ୍ୱପୂର୍ଣ୍ଣ ସୂଚନା ପ୍ରଯୁକ୍ତି, ଶିକ୍ଷା ଏବଂ ବାଣିଜ୍ୟ କେନ୍ଦ୍ର ରୂପେ ପରିଗଣିତ ହୋଇଛି ।

ପୁଞ୍ଜିନିବେଶ ଏବଂ ସହଜ ବ୍ୟବସାୟ କରିପାରିବାର ଭିତ୍ତିଭୂମି ସୃଷ୍ଟି କରିବାରେ ଓଡ଼ିଶା ବର୍ତ୍ତମାନ ଏକ ଅଗ୍ରଣୀ ରାଜ୍ୟ ହୋଇପାରିଛି । ୨୦୧୫ ମସିହାରେ ପ୍ରଣୀତ ନୂତନ ଶିଳ୍ପନୀତି ସହ ରାଜ୍ୟ ସରକାର ୨୦୨୫ ମସିହା ସୁଦ୍ଧା ୨.୨୫ଲକ୍ଷ କୋଟି ଟଙ୍କାର ପୁଞ୍ଜି ଆକର୍ଷଣ ଏବଂ ୧୦ଲକ୍ଷ ନିଯୁକ୍ତି ସୁଯୋଗ ସୃଷ୍ଟି କରିବାର ଲକ୍ଷ୍ୟ ରଖି ଓଡ଼ିଶା ଶିଳ୍ପ ବିକାଶ ଯୋଜନା- ୨୦୨୫ ପ୍ରଣୟନ କରିଛନ୍ତି । ଓଡ଼ିଶାରେ ମୋବାଇଲ୍ ଆପ୍‌ର ଶୁଭାରମ୍ଭ, ଅନ୍‌ଲାଇନ୍ ତଦାରଖ ବ୍ୟବସ୍ଥା ଏବଂ ଲ୍ୟାଣ୍ଡ-ବ୍ୟାଙ୍କ୍ ପରି ଓଡ଼ିଶାର ଶିଳ୍ପ ସଂସ୍କାର ସମଗ୍ର ବିଶ୍ୱରେ ଉଚ୍ଚ ପ୍ରଶଂସିତ ହୋଇପାରିଛି । ନିକଟରେ ମୁମ୍ବାଇଠାରେ ସମ୍ପନ୍ନ ହୋଇଥିବା 'ମେକ୍ ଇନ୍ ଇଣ୍ଡିଆ ' ଅଭିଯାନରେ ୭୦ହଜାର କୋଟି ଟଙ୍କାରୁ ଊର୍ଦ୍ଧ୍ୱ ପୁଞ୍ଜିନିବେଶ ନିମନ୍ତେ ପୁଞ୍ଜିନିବେଶକାରୀଙ୍କୁ ଓଡ଼ିଶା ଆକର୍ଷିତ କରିପାରିଛି, ଯାହାର ଏକ ପ୍ରମୁଖ ଅଂଶ ଅଣ ଖଣିଜ କ୍ଷେତ୍ରରେ ବିନିଯୋଗ ହେବ ।

୭୯୦୦ କୋଟି ଟଙ୍କାରୁ ଅଧିକ ପୁଞ୍ଜିନିବେଶ ସହ ଓଡ଼ିଶାରେ ୧.୬୦ ଲକ୍ଷରୁ ଊର୍ଦ୍ଧ୍ୱ ଅଣୁ, କ୍ଷୁଦ୍ର ଏବଂ ମଧ୍ୟମ ଉଦ୍ୟୋଗ ପ୍ରତିଷ୍ଠା କରାଯାଇଛି, ଯାହା ୮.୫ ଲକ୍ଷରୁ ଊର୍ଦ୍ଧ୍ୱ ଯୁବକ ଯୁବତୀଙ୍କୁ ନିଯୁକ୍ତି ସୁଯୋଗ ପ୍ରଦାନ କରିବାରେ ସହାୟକ ହେବ । ୩୨ ହଜାର ୯୩୮ଟି ୟୁନିଟ୍ ପ୍ରତିଷ୍ଠା ସହ ସମାନ୍ତରାଳଭାବେ ୧ଲକ୍ଷରୁ ଊର୍ଦ୍ଧ୍ୱ ଯୁବକ ଯୁବତୀଙ୍କୁ ନିଯୁକ୍ତି ସୁଯୋଗ ଯୋଗାଇ ଦେବା ନିମନ୍ତେ ରାଜ୍ୟ ପଥ ପ୍ରଶସ୍ତ କରିପାରିଛି ।

୧୨୦ ଲକ୍ଷ ମେଟ୍ରିକ୍ଟନ୍ ଖାଦ୍ୟଶସ୍ୟ ଉତ୍ପାଦନ କରି କୃଷି ଉତ୍ପାଦନ କ୍ଷେତ୍ରରେ ଓଡ଼ିଶା ଏକ ରେକର୍ଡ ସୃଷ୍ଟି କରିପାରିଛି । ଏପରି ବ୍ୟାପକ କୃଷି ଉତ୍ପାଦନ ହାସଲ ନିମନ୍ତେ ରାଜ୍ୟ ବିଗତ ୫ବର୍ଷ ମଧ୍ୟରେ ଚତୁର୍ଥ ଥର ପାଇଁ ସମ୍ମାନଜନକ କୃଷି କର୍ମଣ ପୁରସ୍କାର ଲାଭ କରିଛି । ଧାନ ସଂଗ୍ରହକୁ ସୁବ୍ୟବସ୍ଥିତ କରିବା ଏବଂ କୃଷକମାନଙ୍କ ବ୍ୟାଙ୍କ୍ ଖାତାକୁ ଅର୍ଥରାଶିର ପ୍ରତ୍ୟକ୍ଷ ହସ୍ତାନ୍ତର କରିବା ନିମନ୍ତେ ରାଜ୍ୟ ସୂଚନା ଓ ପ୍ରଯୁକ୍ତି ବିଦ୍ୟାର ସଫଳ ପ୍ରୟୋଗ କରିଛି । ଆମ ରାଜ୍ୟର ରାଜଧାନୀ ଭୁବନେଶ୍ୱର ଦେଶର ଏକ ନମ୍ବର ସ୍ମାର୍ଟ ସିଟି ରୂପେ ବିବେଚିତ ହୋଇଛି । ୨୦୧୯ ମସିହା ସୁଦ୍ଧା ଗ୍ରାମାଞ୍ଚଳ ଗରିବ ଜନସାଧାରଣଙ୍କ କଚ୍ଚା ଗୃହକୁ ପକ୍କା ଗୃହରେ ପରିଣତ କରିବା ପାଇଁ ରାଜ୍ୟ ସରକାର ନିରବଚ୍ଛିନ୍ନ ଉଦ୍ୟମ ଜାରି ରଖିଛନ୍ତି ।

ପୂର୍ବରୁ କାର୍ଯ୍ୟକାରୀ ହେଉଥିବା କେତେକ କେନ୍ଦ୍ର ପ୍ରବର୍ତ୍ତିତ ଯୋଜନା ବ୍ୟାହତ ହେବା କାରଣରୁ ଓଡ଼ିଶାର ସମସ୍ତ ଜିଲ୍ଲାରେ ଥିବା ଗ୍ରାମଗୁଡ଼ିକର ଗ୍ରାମୀଣ ଭିତ୍ତିଭୂମି ଯଥା ସଡକ, ବିଜୁଳି ଓ ପାଣିର ସୁବ୍ୟବସ୍ଥା ନିମନ୍ତେ ୧ ହଜାର କୋଟି ଟଙ୍କାର ବର୍ଦ୍ଧିତ ବ୍ୟୟବରାଦ ସହ ଗୋପବନ୍ଧୁ ଗ୍ରାମୀଣ ଯୋଜନା ରାଜ୍ୟର ସମସ୍ତ ୩୦ ଗୋଟି ଜିଲ୍ଲାକୁ ପରିବର୍ଦ୍ଧିତ କରାଯାଇଛି । ମହିଳାମାନଙ୍କର ମର୍ଯ୍ୟାଦା ଅକ୍ଷୁଣ୍ଣ ରଖିବା, ଉଭୟ ପରିବାର ତଥା କାର୍ଯ୍ୟାଳୟରେ ସେମାନଙ୍କ ସମ୍ମାନ ଓ ସମାନତା ବଜାୟ ରଖିବା ଏବଂ ରାଜନୈତିକ କ୍ଷେତ୍ରରେ ସେମାନଙ୍କୁ ସଶକ୍ତ କରିବା ନିମନ୍ତେ ଓଡ଼ିଶା ଅନେକ ପଦକ୍ଷେପ ଗ୍ରହଣ କରିଛି । ଅନୁସୂଚିତ ଜାତି ଓ ଜନଜାତି, ସଂଖ୍ୟାଲଘୁ ଏବଂ ପଛୁଆବର୍ଗଙ୍କ ସର୍ବାଙ୍ଗୀନ ବିକାଶ ପାଇଁ ରାଜ୍ୟ ସରକାର ଅନେକଗୁଡ଼ିଏ ଜନହିତକର ଯୋଜନା ପ୍ରଣୟନ କରିଛନ୍ତି ।

ରାଜ୍ୟ ସରକାର ଓଡ଼ିଶାରେ ଜଙ୍ଗଲ ପରିସର ବୃଦ୍ଧି କରିବାରେ ସଫଳ ହୋଇଛନ୍ତି । ଏହା ଜଙ୍ଗଲରେ ବସବାସ କରୁଥିବା ଲୋକଙ୍କ ସକ୍ରିୟ ସହଯୋଗ ଦ୍ୱାରା ସମ୍ଭବ ହୋଇପାରିଛି । 'ଆମ ଜଙ୍ଗଲ ଯୋଜନା' ପରି କାର୍ଯ୍ୟକ୍ରମ ଜରିଆରେ ସେମାନଙ୍କର ଜୀବିକା ନିର୍ବାହ ସୁଗମ ହୋଇପାରିଛି ।

ଓଡ଼ିଶା ସରକାର ଓଡ଼ିଶାର ଅନନ୍ୟ ସାଂସ୍କୃତିକ ଧାରାର ସୁରକ୍ଷା ଏବଂ ବିକାଶ ତଥା ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ବିକାଶ ନିମନ୍ତେ ପ୍ରତିଶ୍ରୁତିବଦ୍ଧ । ଏକ 'ଭର୍ଚୁ୍ୟଆଲ୍ ଓଡ଼ିଆ ୟୁନିଭରସିଟି' ପ୍ରତିଷ୍ଠା ସମେତ ରାଜ୍ୟ ସରକାର ମଧ୍ୟ ଓଡ଼ିଆ ଭାଷା ଓ ସାହିତ୍ୟର ବିକାଶ ନିମନ୍ତେ ଅନେକ ପଦକ୍ଷେପ ଗ୍ରହଣ କରିଛନ୍ତି । ସ୍ୱତନ୍ତ୍ର ପ୍ରଦେଶ ଗଠନର ୮୦ ବର୍ଷରେ ଉପନୀତ ହୋଇଥିବା ଓଡ଼ିଶା ଆଜି ନିରନ୍ତର ବିକାଶ ଏବଂ ଏହାର ଜନସାଧାରଣଙ୍କ ସଶକ୍ତିକରଣ କ୍ଷେତ୍ରରେ ସଫଳ ହୋଇପାରିଛି । ୨୦୩୬ ମସିହାରେ ଓଡ଼ିଶା ଗଠନର ୧୦୦ ବର୍ଷ ପୂର୍ତ୍ତି ଅବସରରେ ସାମଗ୍ରୀକ ଅଭିବୃଦ୍ଧିର ଏକ ଉଚ୍ଚାଭିଳାଷୀ ଲକ୍ଷ୍ୟ ଓଡ଼ିଶା ରଖିଛି ଏବଂ ଯୋଜନାବଦ୍ଧ ଅଭିବୃଦ୍ଧି କାର୍ଯ୍ୟକ୍ରମ 'ଭିଜନ ୨୦୩୬' ପ୍ରସ୍ତୁତି ନିମନ୍ତେ ଓଡ଼ିଶା ଅଭିଜ୍ଞ, ଦକ୍ଷ ଏବଂ ଦୂରଦୃଷ୍ଟି ସମ୍ପନ୍ନ ବ୍ୟକ୍ତିବିଶେଷଙ୍କର ସହଯୋଗ କାମନା କରୁଛି ।

ଆଜିର ଏହି ପବିତ୍ର ଦିବସ ଅବସରରେ ଆସନ୍ତୁ, ଆମ ମାତୃଭୂମିର ଟେକ ବଜାୟ ରଖିବା, ମାତୃଭାଷାକୁ ସମ୍ମାନ ଜଣାଇବା ଏବଂ ଆମର ସହଭାଗୀ ଓ ମାତୃଭୂମିର ସେବା ସହ ନିଃସ୍ୱାର୍ଥପର କାର୍ଯ୍ୟକଳାପ ଦ୍ୱାରା ଆମର ସଂସ୍କୃତି ଏବଂ ଐତିହ୍ୟକୁ ସମୃଦ୍ଧ କରିବା ନିମନ୍ତେ ସଙ୍କଳ୍ପବଦ୍ଧ ହେବା ।

ବନ୍ଦେ ଉତ୍କଳ ଜନନୀ ।

## ଓଡ଼ିଶା ଦିବସ -୨୦୧୬ ପାଳନ ଅବସରରେ

# ମାନ୍ୟବର ମୁଖ୍ୟମନ୍ତ୍ରୀ
# ଶ୍ରୀ ନବୀନ ପଟ୍ଟନାୟକଙ୍କ
# ବାର୍ତ୍ତା



ଓଡ଼ିଶା ଦିବସର ଶୁଭ ଅବସରରେ ଆପଣମାନଙ୍କୁ ମୋର ଅଭିନନ୍ଦନ ।

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଭାରତ ଇତିହାସର ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା । ଏହା ଦେଶରେ ଭାଷାଭିତ୍ତିକ ରାଜ୍ୟ ଗଠନର ମୂଳଦୁଆ ପକାଇଥିଲା । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନରେ ଉତ୍କଳଗୌରବ ମଧୁସୂଦନ ଦାସ, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ, ଗଙ୍ଗାଧର ମେହେର ଓ ଫକୀର ମୋହନ ସେନାପତିଙ୍କ ଅବଦାନକୁ ଏ ଜାତି ସବୁ ଦିନ ସ୍ମରଣ ରଖିବ । ଆମ ପାଇଁ ଏହି ଗୌରବ ଆଣି ଦେଇଥିବା ଓଡ଼ିଶା ମାଆର ବରପୁତ୍ରମାନଙ୍କ ପ୍ରତି ଏହି ଅବସରରେ ମୋର ଭକ୍ତିପୂର୍ଣ୍ଣ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ଚଳିତ ବର୍ଷ ବିଭିନ୍ନ ଦୃଷ୍ଟିରୁ ଓଡ଼ିଶା ପାଇଁ ଗୁରୁତ୍ୱପୂର୍ଣ୍ଣ । ନିକଟରେ ଓଡ଼ିଆ ଜାତିର ଗର୍ବ ଓ ଗୌରବ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ନବକଳେବର ଅନୁଷ୍ଠିତ ହୋଇଯାଇଛି । ଓଡ଼ିଆ ଜାତିର ବିକାଶ ଯାତ୍ରାରେ ମହାପ୍ରଭୁଙ୍କ ଆଶୀର୍ବାଦ ମୁଁ କାମନା କରୁଛି ।

ଚଳିତ ବର୍ଷ ଆମେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ଅଶୀ ବର୍ଷ ପାଳନ କରୁଅଛୁ । ୧୯୩୬ରୁ ୨୦୧୬ ଏହି ଅଶୀବର୍ଷ ମଧ୍ୟରେ ଓଡ଼ିଆ ଜାତି ଅନେକ ସଫଳତା ପାଇଛି । ଅନେକ କଠିନ ପରିସ୍ଥିତିର ମୁକାବିଲା ମଧ୍ୟ କରିଛି । ୧୯୪୭ରେ ଦେଶ ସ୍ୱାଧୀନ ହେଲା । ଗଡଜାତ ରାଜ୍ୟ ସବୁ ଭାରତରେ ମିଶିଲା । ଏଥିରେ ମଧ୍ୟ ଓଡ଼ିଶା ଆଗୁଆ ଥିଲା । ନୂଆ ବ୍ୟବସ୍ଥା, ନୂଆ ସମ୍ବିଧାନ ଓ ବିକାଶ ଯୋଜନାରେ ଦେଶ ଆଗକୁ ବଢିଲା । ଓଡ଼ିଶା ମଧ୍ୟ ଏହି ବିକାଶ ଯାତ୍ରାରେ ନିଜକୁ ସଫଳ ଭାବରେ ସାମିଲ କରିପାରିଛି ।

ଓଡ଼ିଆ ଭାଷା ଆଜି ଶାସ୍ତ୍ରୀୟ ଭାଷା ମାନ୍ୟତା ଲାଭ କରିଛି । ଓଡ଼ିଆ ଲେଖକମାନେ ସେମାନଙ୍କ କୃତୀ ଦ୍ୱାରା ଭାରତର ସାରସ୍ୱତ ଜଗତର ଗୌରବ ବୃଦ୍ଧି କରିଛନ୍ତି । ଓଡ଼ିଆ ଖେଳାଳୀମାନେ ଦେଶର ସୁନାମ ବଢାଇଛନ୍ତି । ଓଡ଼ିଆ

ପିଲାମାନେ ସେମାନଙ୍କ ପ୍ରତିଭା ଦ୍ୱାରା ଦେଶକୁ ଗର୍ବିତ କରୁଛନ୍ତି । ଓଡ଼ିଶାର ନୃତ୍ୟ, ସଂଗୀତ ଓ ଲୋକକଳା ଆଜି ଦେଶ ବିଦେଶରେ ଓଡ଼ିଆ ଜାତି ପାଇଁ ପ୍ରସିଦ୍ଧି ଆଣି ଦେଇଛି ।

ଚଳିତ ବର୍ଷ ମଧ୍ୟ ଆମେ ମହାନ ଓଡ଼ିଆ ବିଜୁବାବୁଙ୍କ ଜନ୍ମ ଶତବାର୍ଷିକୀ ପାଳନ କରୁଛୁ । ଓଡ଼ିଆ ଜାତିର ଶ୍ରେଷ୍ଠତ୍ୱ ଏବଂ ଓଡ଼ିଆ ସ୍ୱାଭିମାନ ପାଇଁ ତାଙ୍କର ସଂଗ୍ରାମ ଆଜିର ଦିବସରେ ଆମ ପାଇଁ ପ୍ରେରଣା ।

କୃଷି କ୍ଷେତ୍ରରେ ଆମର ଚାଷୀ ଭାଇ ଭଉଣୀମାନଙ୍କ ପରିଶ୍ରମ ଆମକୁ ଚାରି ଚାରି ଥର କୃଷି କର୍ମଣ ପୁରସ୍କାର ଆଣି ଦେଇଛି । ଶିଳ୍ପ କ୍ଷେତ୍ରରେ ପୁଞ୍ଜି ବିନିଯୋଗ ବଢ଼ିଛି । ନୂଆ ନୂଆ ନିଯୁକ୍ତିର ସୁଯୋଗ ସୃଷ୍ଟି ହୋଇଛି । ଭିତ୍ତିଭୂମିର ବିକାଶ ଆମ ପାଇଁ ଅନେକ ସୁଯୋଗ ଆଣିଦେଇଛି । ପ୍ରାକୃତିକ ବିପର୍ଯ୍ୟୟ ଓଡ଼ିଶାର ଚିର ସହଚର । ଏହାର ମୁକାବିଲା କ୍ଷେତ୍ରରେ ଆମର ଦକ୍ଷତା ଆଜି ଅନ୍ତର୍ଜାତୀୟ ସ୍ତରରେ ସ୍ୱୀକୃତି ଲାଭ କରିଛି । ସମାଜ କଲ୍ୟାଣ କ୍ଷେତ୍ରରେ ଆମର କାର୍ଯ୍ୟକ୍ରମ ଅନ୍ୟମାନଙ୍କ ପାଇଁ ଏକ ମଡେଲ ହୋଇଛି । ଗରିବୀ କମିଛି । ସାକ୍ଷରତା ବଢ଼ିଛି । ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ଜୟ କରିଥିବା ଏହି ମହାନ ଜାତି ଆଜି ଗଭୀର ଆତ୍ମବିଶ୍ୱାସର ସହ ଆଗକୁ ବଢ଼ୁଛି । ୨୦୩୬ରେ ଆମେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ଶହେ ବର୍ଷ ପାଳନ କରିବା । ତେଣୁ ୨୦୩୬ରେ ଓଡ଼ିଶାକୁ ସବୁ ଦୃଷ୍ଟିରୁ ବିକଶିତ କରିବା ପାଇଁ ଆମେ ଚଳିତ ବର୍ଷରୁ ଓଡ଼ିଶା@୧୦୦ ନାମରେ ଏକ ଭିଜନ ଡକ୍ୟୁମେଣ୍ଟ ତିଆରି କରୁଛୁ । ଶତବାର୍ଷିକୀ ଅବସରରେ ଏକ ସମ୍ପୂର୍ଣ୍ଣ ବିକଶିତ ଓ ସଶକ୍ତ ଓଡିଶା ହେବ ଆମର ବରପୁତ୍ରମାନଙ୍କ ପ୍ରତି ଓଡ଼ିଆ ଜାତିର ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି । ଆସନ୍ତୁ, ଏହି ମହାନ ଲକ୍ଷ୍ୟକୁ ବ୍ୟକ୍ତିଗତ ଉଚ୍ଚାଭିଳାଷ ଭାବରେ ଗ୍ରହଣ କରି ଓଡ଼ିଶାର ଗୌରବକୁ ନୂଆ ଶିଖରରେ ପହଞ୍ଚାଇବା ପାଇଁ କାମ କରିଚାଲିବା ।

**ବନ୍ଦେ ଉତ୍କଳ ଜନନୀ ।**

# ଓଡ଼ିଶା ଦିବସ -୨୦୧୬ ପାଳନ ଅବସରରେ
# ମାନ୍ୟବର ସୂଚନା ଓ ଲୋକସଂପର୍କ ଏବଂ
# ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ମନ୍ତ୍ରୀ
# **ଶ୍ରୀ ଅତନୁ ସବ୍ୟସାଚୀ ନାୟକଙ୍କ**
# **ବାର୍ତ୍ତା**



ପ୍ରିୟ ଭାଇ ଓ ଭଉଣୀମାନେ,

'ଓଡ଼ିଶା ଦିବସ' ପାଳନର ଏହି ପବିତ୍ର ଅବସରରେ ମୁଁ ଆପଣମାନଙ୍କୁ ମୋର ଆନ୍ତରିକ ଶୁଭେଚ୍ଛା ଜ୍ଞାପନ କରୁଛି ।

ଆଜିର ଦିନଟି ଆଧୁନିକ ଓଡ଼ିଶାର ଇତିହାସରେ ଗୋଟିଏ ଗୌରବମୟ ଅଧ୍ୟାୟକୁ ସଂଯୁକ୍ତ କରିଛି । ସେହି ଅଧ୍ୟାୟରେ ସଂଗ୍ରାମ, ଦେଶପ୍ରୀତି ଓ ଅସାଧାରଣ ତ୍ୟାଗ ପ୍ରତିଫଳିତ ହୋଇଛି । ଭାଷାଭିତ୍ତିରେ ଏକ ଭୌଗୋଳିକ ଆୟତନ ହାସଲ କରିବା ଓ ସ୍ୱତନ୍ତ୍ର ଭାବରେ ଓଡ଼ିଶାର ପରିଚିତିକୁ ପ୍ରତିଷ୍ଠିତ କରିବା ପାଇଁ ଆମ ପୂର୍ବପୁରୁଷମାନେ ଯେଉଁ ଆନ୍ଦୋଳନରେ ଭାଗ ନେଇଥିଲେ, ଆଜିର ଦିନରେ ତା'ର ଯଥାର୍ଥ ଉପଲବ୍ଧି ମିଳିଥିଲା । ସ୍ୱତନ୍ତ୍ର ଓଡ଼ିଶା ଗଠନର ସ୍ୱପ୍ନ ବାସ୍ତବତାରେ ପରିଣତ ହୋଇଥିଲା । ସେହି ପୂଜ୍ୟ ମହାମନୀଷୀମାନଙ୍କ ମଧ୍ୟରେ ଥିଲେ ଉତ୍କଳଗୌରବ ମଧୁସୂଦନ ଦାସ, ଉତ୍କଳମଣି ଗୋପବନ୍ଧୁ ଦାସ, ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ, ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ, ରାଜା ହରିହର ମର୍ଦ୍ଦରାଜ, ବ୍ୟାସକବି ଫକୀର ମୋହନ ସେନାପତି, ସ୍ୱଭାବ କବି ଗଙ୍ଗାଧର ମେହେର, କବିବର ରାଧାନାଥ ରାୟ, କର୍ମବୀର ଗୌରୀଶଙ୍କର, ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର ଓ ଆଚାର୍ଯ୍ୟ ହରିହରଙ୍କ ପରି ଅନେକ ବ୍ୟକ୍ତିତ୍ୱ । ସେମାନଙ୍କର ତ୍ୟାଗ, ଅଧ୍ୟବସାୟ, ନିଷ୍ଠା ଓ ଜାତୀୟତାର ସୁଫଳ ମିଳିଛି । ଆମେ ଆଜି ଓଡ଼ିଆ ଭାବରେ ଗର୍ବ କରୁଛେ । ଅଭୂତପୂର୍ବ ଅବଦାନ ରଖିଥିବା ସେହି ମହାପୁରୁଷମାନଙ୍କ ଜୀବନ ଓ କାର୍ଯ୍ୟାବଳୀ ପ୍ରତ୍ୟେକ ଓଡ଼ିଆଙ୍କ ପାଇଁ ପ୍ରେରଣାର ଉତ୍ସ ହୋଇରହିଛି । ମୁଁ ସେହି ମହାପୁରୁଷମାନଙ୍କ ଉଦ୍ଦେଶ୍ୟରେ ମୋର ବିନମ୍ର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ଓଡ଼ିଶାର ଇତିହାସ ମହତ୍ତ୍ୱପୂର୍ଣ୍ଣ । ଓଡ଼ିଆମାନେ ବୀର, ପରିଶ୍ରମୀ ଓ ସଂସ୍କୃତିସମ୍ପନ୍ନ ଥିଲେ । ଏହାର ଭୂଗୋଳ ଗଙ୍ଗାଠାରୁ ଗୋଦାବରୀ ଯାଏଁ ବିସ୍ତୃତ ଥିଲା । ଓଡ଼ିଶାର ଶିଳ୍ପୀମାନେ କଳାକାରିଗରୀରେ ପ୍ରସିଦ୍ଧ ଥିଲେ । ବଣିକମାନେ ନୌବାଣିଜ୍ୟ ପରମ୍ପରାକୁ ପରିପୁଷ୍ଟ କରିଥିଲେ । ଓଡ଼ିଶାର ଶ୍ରୀଜଗନ୍ନାଥ ସାର୍ବଜନୀନ ଧର୍ମଧାରାକୁ ଅନୁପ୍ରାଣିତ କରିଛନ୍ତି । ଆମ ରାଜ୍ୟର ସବୁଜିମା ପରିପୂର୍ଣ୍ଣ ଜଙ୍ଗଲ, ପର୍ବତ, ନଦନଦୀ, ମନ୍ଦିର, ପର୍ଯ୍ୟଟନ ବିଭବ, ପର୍ଯ୍ୟାପ୍ତ ଖଣିଜ ସମ୍ପଦ ଓ ସୁଦୀର୍ଘ ବେଳାଭୂମି ସମସ୍ତଙ୍କୁ ଆକୃଷ୍ଟ କରିଛି । ଓଡ଼ିଶୀ ନୃତ୍ୟ-ସଙ୍ଗୀତ, ହସ୍ତତନ୍ତ ଓ ତାରକସୀ କାରୁକଳା ସାରା ବିଶ୍ୱକୁ ଚମତ୍କୃତ କରିଛି । ଭାରତର ସାମାଜିକ-ସାଂସ୍କୃତିକ-ଅର୍ଥନୈତିକ ମହାସ୍ରୋତକୁ ଓଡ଼ିଶାର ଅବଦାନ ସମସ୍ତଙ୍କ ଦ୍ୱାରା ସ୍ୱୀକୃତ ହୋଇଛି ।

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପରେ ଆମ ରାଜ୍ୟରେ ବିଭିନ୍ନ କ୍ଷେତ୍ରରେ ବ୍ୟାପକ ଉନ୍ନତି ହୋଇଛି । ରାଜ୍ୟର ପ୍ରତିଷ୍ଠା ଓ ପରିଚିତି ବଢ଼ିଛି । ପୃଥିବୀର ସବୁ ମହଲରେ ଓଡ଼ିଆଙ୍କ କୃତିତ୍ୱ ଓ ସୁନାମ ବ୍ୟାପିଛି । ଆମର ଯୋଗ୍ୟ, ଶିକ୍ଷିତ ଓ ସଚେତନ ମାନବସମ୍ବଳ ବିଦେଶରେ ପ୍ରଶଂସିତ ହୋଇଛନ୍ତି । ଓଡ଼ିଶାର ସାଂସ୍କୃତିକ ବିଭବଗୁଡ଼ିକ ସମଗ୍ର ବିଶ୍ୱରେ ସୁନାମ ଅର୍ଜନ କରିଛି । ବିକାଶ କ୍ଷେତ୍ରରେ ଆମର ଯାତ୍ରା ଅବ୍ୟାହତ ରହିଛି । ଦାରିଦ୍ର୍ୟ ହ୍ରାସ ପାଇଁ ସରକାର ବିଭିନ୍ନ ଲୋକାଭିମୁଖୀ ପଦକ୍ଷେପ ଗ୍ରହଣ କରିଛନ୍ତି । ଜାତୀୟ ହାର ତୁଳନାରେ ରାଜ୍ୟର ଅଭିବୃଦ୍ଧି ହାର କ୍ରମେ କ୍ରମେ ବଢ଼ୁଛି । ରାଜ୍ୟରେ କୃଷି, ଜଳସେଚନ, ଶିଳ୍ପ, ଶିକ୍ଷା, ସୂଚନା ଓ ପ୍ରଯୁକ୍ତି ବିଦ୍ୟା, ସ୍ୱାସ୍ଥ୍ୟସେବା, ଅନୁସୂଚିତ ଜନଜାତି-ଅନୁସୂଚିତ ଜାତି-ପଛୁଆବର୍ଗଙ୍କ କଲ୍ୟାଣ, ମହିଳା ସଶକ୍ତିକରଣ, ଶିଶୁ ବିକାଶ, ଜଙ୍ଗଲ ଓ ପରିବେଶ, ସଂଯୋଗୀକରଣ, ବାଣିଜ୍ୟ ଓ ପରିବହନ, ଶକ୍ତି, ନିୟୋଜନ, ସଂସ୍କୃତି ଓ ପର୍ଯ୍ୟଟନ ଏବଂ ମାନବସମ୍ବଳ ବିକାଶ ଇତ୍ୟାଦି କ୍ଷେତ୍ରରେ ନିରନ୍ତର ପ୍ରଗତିର ଧାରା ପ୍ରବାହିତ ହେଉଛି । ପ୍ରାଶାସନିକ ସ୍ୱଚ୍ଛତା ଉପରେ ଗୁରୁତ୍ୱ ଦିଆଯାଇଛି । ସମାଜର ସବୁ ବର୍ଗର ଲୋକମାନଙ୍କ ପାଖରେ ପ୍ରଶାସନର ସୁଫଳ ପହଞ୍ଚି ପାରିଛି । ବିକାଶର ନୂଆ ଦିଗ ଆଡ଼କୁ ଓଡିଶା ଅଗ୍ରସର ହେଉଛି ।

'ଓଡ଼ିଶା ଦିବସ' ଆତ୍ମସମୀକ୍ଷାର ସୁଯୋଗ ଆଣିଛି । 'ଓଡ଼ିଆ ଆତ୍ମ ପରିଚିତିର ପ୍ରତିଷ୍ଠା ଓ ରାଜ୍ୟର ସର୍ବାଙ୍ଗୀନ ବିକାଶ ସହିତ ସମୃଦ୍ଧ ଭବିଷ୍ୟତ ନିମନ୍ତେ ନିଜର ସହଯୋଗ ପ୍ରଦର୍ଶନ କରିବା ପାଇଁ ପୁନଃ ସଂକଳ୍ପବଦ୍ଧ ହେବା' ହେଉଛି ଆଜିର ଦିବସ ପାଳନର ମୂଳ ଉଦ୍ଦେଶ୍ୟ ।

ଓଡ଼ିଶାକୁ ଏକ ବିକଶିତ ଓ ସମୃଦ୍ଧ ରାଜ୍ୟ ରୂପେ ଗଢ଼ିତୋଳିବାକୁ ତଥା ଉତ୍ସର୍ଗୀକୃତ ଉଦ୍ୟମ ବଳରେ ଆମର ସଂକଳ୍ପକୁ ପୂରଣ କରିବା ନିମନ୍ତେ ମୁଁ ଆପଣମାନଙ୍କୁ ନିବେଦନ କରୁଛି ।

**ବନ୍ଦେ ଉତ୍କଳ ଜନନୀ ।**

# ୨୦୧୬-୧୭ ବଜେଟ୍: ବିଜୁବାବୁଙ୍କ ସ୍ୱପ୍ନର ବାସ୍ତବ ରୂପାୟନ

ଡକ୍ଟର ଲେନିନ୍ ମହାନ୍ତି

''ଓଡ଼ିଶା ଏବଂ ଓଡ଼ିଆଙ୍କ ହିତରେ ଉତ୍ସର୍ଗୀକୃତ ଅବଦାନ ରଖିଯାଇଥିବା ଅମୃତର ସନ୍ତାନମାନଙ୍କୁ ମୁଁ ମୋର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି । ଯେଉଁ ମହାନ୍ ବ୍ୟକ୍ତିତ୍ୱ, ଲେଖକ ଓ ଜ୍ଞାନୀଗୁଣୀଗଣ ଏପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟ ଇତିହାସକୁ ପରିପୁଷ୍ଟ କରିଆସିଛନ୍ତି, ସେମାନଙ୍କୁ ମୁଁ ମୋର ଭକ୍ତିପୂତ ପ୍ରଣତି ଜଣାଉଛି । ଓଡ଼ିଶାକୁ ଭାରତବର୍ଷରେ ଏକ ଉନ୍ନତ ରାଜ୍ୟ ରୂପେ ପରିଣତ କରିବାକୁ ଓଡ଼ିଶାର ବହୁ ଉତ୍ତୁଙ୍ଗ ବ୍ୟକ୍ତିତ୍ୱ ନିରବଚ୍ଛିନ୍ନଭାବେ ଉଦ୍ୟମ ଜାରି ରଖିଛନ୍ତି । ଓଡ଼ିଶାକୁ ନେଇ ବିଜୁବାବୁଙ୍କ ସ୍ୱପ୍ନ, ସଂଗ୍ରାମ, ସଂକଳ୍ପ ତଥା ଓଡ଼ିଶାର ସଂସ୍କୃତି ଓ ଐତିହ୍ୟକୁ ବଞ୍ଚାଇ ରଖିବା ଲାଗି ତାଙ୍କ ଉଦ୍ୟମ ଭାରତବର୍ଷରେ ତାଙ୍କୁ ଜଣେ ସ୍ୱପ୍ନଦ୍ରଷ୍ଟା ସଂସ୍କୃତି ପ୍ରେମୀ ରୂପେ ମାନ୍ୟତା ପ୍ରଦାନ କରିଛି । ବିଜୁବାବୁଙ୍କର ସୁଯୋଗ୍ୟ ସନ୍ତାନ ଏବଂ କ୍ରମାଗତ ଚତୁର୍ଥଥର ପାଇଁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେବାର ସୁଯୋଗ ପାଇଥିବା ଶ୍ରୀ ନବୀନ ପଟ୍ଟନାୟକ ଓଡ଼ିଶା ରାଜ୍ୟର ସର୍ବବିଧ ଉନ୍ନତି ନିମନ୍ତେ ଯଥାଶକ୍ତି ଉଦ୍ୟମ ଜାରି ରଖିଛନ୍ତି ।

ଓଡ଼ିଶା ପ୍ରଦେଶ ଗଠନର ୮୦ ବର୍ଷ ପାଳନ ଅବସରରେ ଐତିହାସିକ ବଜେଟ ଆଗତ କରାଯାଇଛି । ଗ୍ରାମ୍ୟ ଗୃହ ନିର୍ମାଣ, ଗ୍ରାମ୍ୟ ସଡକ ସଂଯୋଗ, ଗ୍ରାମ୍ୟ ବିଦ୍ୟୁତିକରଣ, ଗ୍ରାମୀଣ ଜୀବିକା ନିର୍ବାହ, ଖାଦ୍ୟ ସୁରକ୍ଷା ଏବଂ ଅନୁସୂଚିତ ଜନଜାତି, ଜାତି ଓ ସଂଖ୍ୟାଲଘୁଙ୍କ କଲ୍ୟାଣକୁ ବଜେଟରେ ଅଗ୍ରାଧିକାର ଦିଆଯାଇଛି । ଏଥିପାଇଁ ଓଡ଼ିଶା ବିଧାନସଭାରେ ୨୦୧୬-୧୭ ଆର୍ଥିକ ବର୍ଷ ନିମନ୍ତେ ୯୪ ହଜାର ୫୨ କୋଟି ୬୫ ଲକ୍ଷ ଟଙ୍କାର ବଜେଟ୍ ଆଗତ ହୋଇଛି । କୃଷି, ଜଳସମ୍ପଦ, ମତ୍ସ୍ୟ ଓ ପ୍ରାଣୀ ସମ୍ପଦ ଉନ୍ନୟନ ପାଇଁ କୃଷି ବଜେଟ୍‌ରେ ୧୩,୧୮୧.୮୯ କୋଟି ଟଙ୍କା ବ୍ୟୟ ବରାଦ କରାଯାଇଛି । ଉପସ୍ଥାପିତ ହୋଇଥିବା ବଜେଟ୍‌ରେ କୃଷି, ସାମାଜିକ କ୍ଷେତ୍ର, ଭିତ୍ତିଭୂମି ଓ ମାନବ ସମ୍ବଳ କ୍ଷେତ୍ରରେ ପୁଞ୍ଜିନିବେଶକୁ ଅଗ୍ରାଧିକାର ଦିଆଯାଇଛି । ଏତଦ୍‌ବ୍ୟତୀତ ଜଳସେଚନ, ଗ୍ରାମ୍ୟ ଉନ୍ନୟନ ଓ ଜୀବନ ଧାରଣର ମାନ ବୃଦ୍ଧି ଉପରେ ମଧ୍ୟ ବଜେଟ୍‌ରେ ଗୁରୁତ୍ୱାରୋପ କରାଯାଇଛି । ପ୍ରଥମ ଥର ପାଇଁ ରାଜ୍ୟ ସରକାର ବଜେଟ୍ ପ୍ରସ୍ତୁତି ପୂର୍ବରୁ ଜନମତ ଲୋଡ଼ିଥିଲେ । ଜନମତ ଆଧାର ଭିତ୍ତିରେ ଏଥର ବଜେଟ୍ ପ୍ରସ୍ତୁତ କରାଯାଇଥିବାରୁ ଏହି ବଜେଟ୍‌କୁ ଲୋକାଭିମୁଖୀ ବଜେଟ୍ କୁହାଯାଇପାରେ ।''

## ଟଙ୍କାଟିଏ ଆସିବ କେଉଁଠୁ ₹

- କେନ୍ଦ୍ରରୁ ରାଜ୍ୟର ଟିକସ ଭାଗ: ୨୮.୨୫ପ.
- ରାଜ୍ୟର ନିଜ ଟିକସ୍: ୨୪.୬୭ପ.
- କେନ୍ଦ୍ରୀୟ ଅନୁଦାନ: ୧୯.୭୦ପ.
- ବିଭିନ୍ନ ସୂତ୍ରରୁ ଋଣ ସଂଗ୍ରହ: ୧୫.୬୦ପ.
- ରାଜ୍ୟର ନିଜ ଅଣ ଟିକସ୍: ୧୦.୪୪ପ.
- ଭବିଷ୍ୟନିଧି ପାଣ୍ଠି ଓ ଅନ୍ୟ ପାଣ୍ଠି ଜମା: ୧.୧୪ପ.
- ଋଣ ଓ ଅଗ୍ରୀମରୁ ଆଦାୟ: ୦.୨୦ପ.




## ଟଙ୍କାଟିଏ ଖର୍ଚ୍ଚ ହେବ କେମିତି ₹

- ଯୋଜନା ବ୍ୟୟ: ୪୮.୮୭ପ.
- ସୁଧ ଦେୟ: ୪.୯୪ପ.
- ଅଣ ଯୋଜନା ଋଣ ଆବଣ୍ଟନ: ୧.୪୨ପ.
- ଋଣ ପରିଶୋଧ: ୧.୨୮ ପ.
- ଅନ୍ୟ ଅଣ ଯୋଜନା ବ୍ୟୟ: ୪୩.୪୯ପ.



ମୋ ଚାଷୀ ଭାଇମାନଙ୍କ ପାଇଁ ମୁଁ ସ୍ୱପ୍ନ ଦେଖୁଛି ଯେ, ପାଣି ଅଭାବରୁ ସେମାନଙ୍କ କ୍ଷେତ ଫସଲ କେବେ ଉଜୁଡି ଯାଉନଥିବ । ପ୍ରତ୍ୟେକଟି ବୁନ୍ଦା ପାଣିକୁ ଧରି ରଖି ଉପଯୁକ୍ତ ଭାବରେ ବିନିଯୋଗ କରାଯାଇ ପାରୁଥିବ । ଯେଉଁ ପ୍ରାକୃତିକ ଦୁର୍ବିପାକ ଓଡ଼ିଶା ପାଇଁ ମହାବିପତ୍ତି ବୋଲି ମୂଳରୁ ଧରାଯାଇ ଆସିଛି, ସେସବୁ ସେତେବେଳକୁ ଅତୀତର କଥା ହୋଇ ଉଠିଥିବ । ଓଡ଼ିଶାର ସବୁଯାକ ନଦୀକୁ ବଶ୍ୟ କରି ଦିଆଯିବ, ସବୁ ଜଳ ଭଣ୍ଡାରକୁ ସଜାଡି ଦିଆଯିବ, ତେଣୁ ଶୁଖିଲା କ୍ଷେତରେ ଆବଶ୍ୟକ ବେଳେ ପାଣି ମଡାଇ ଦେଇହେବ ।

- ୨୦୧୬-୧୭ ରାଜ୍ୟ ବଜେଟ୍ ହେଉଛି କୃଷି କୈନ୍ଦ୍ରିକ ଓ ଲୋକଙ୍କ ବଜେଟ୍ । ଯେହେତୁ ବଜେଟ୍ ପ୍ରସ୍ତୁତିରେ ଜନସାଧାରଣଙ୍କ ମତାମତ ଗ୍ରହଣ ପୂର୍ବକ ଏହାକୁ ପ୍ରସ୍ତୁତ କରାଯାଇଛି, ନିଃସନ୍ଦେହରେ ଏହା ଏକ ଲୋକାଭିମୁଖୀ ବଜେଟ୍ ।
- ଓଡ଼ିଶା ପ୍ରଦେଶ ଗଠନର ୮୦ ବର୍ଷ ପାଳନ ଅବସରରେ ଐତିହାସିକ ବଜେଟ ଆଗତ କରାଯାଇଛି । ଗ୍ରାମ୍ୟ ଗୃହ ନିର୍ମାଣ, ଗ୍ରାମ୍ୟ ସଡକ ସଂଯୋଗ, ଗ୍ରାମ୍ୟ ବିଦ୍ୟୁତିକରଣ, ଗ୍ରାମୀଣ ଜୀବିକା ନିର୍ବାହ, ଖାଦ୍ୟ ସୁରକ୍ଷା ଏବଂ ଅନୁସୂଚିତ ଜନଜାତି, ଜାତି ଓ ସଂଖ୍ୟାଲଘୁଙ୍କ କଲ୍ୟାଣକୁ ବଜେଟରେ ଅଗ୍ରାଧିକାର ମିଳିଛି ।
- ନବକଳେବରର ଏହି ବର୍ଷରେ ବଜେଟ ଆମ ଭାଷା, ସଂସ୍କୃତି ଓ ଗୌରବାନ୍ୱିତ ଐତିହ୍ୟ ପ୍ରତି ଫୋକସକୁ ନବୀକରଣ କରିଛି । ଜଗନ୍ନାଥ ଏନକ୍ଲେଭ, ହବିଷ୍ୟାଳୀଙ୍କ ପାଇଁ ଆଶ୍ରୟସ୍ଥଳ ଏବଂ ଓଡ଼ିଆ ଭର୍ଚୁଆଲ ଏକାଡେମୀ ପ୍ରତିଷ୍ଠା ଭଳି ପଦକ୍ଷେପ ସ୍ୱାଗତଯୋଗ୍ୟ । ବଜେଟରେ କୃଷି ଓ ଆନୁଷଙ୍ଗିକ କ୍ଷେତ୍ରକୁ ଉଲ୍ଲେଖନୀୟ ଦୃଷ୍ଟି ଦିଆଯାଇ ୨୦.୮୯ ପ୍ରତିଶତ ବ୍ୟୟବରାଦ ବଢ଼ିଛି । ଜଳସେଚନ ମଧ୍ୟ ବଜେଟରେ ଗୁରୁତ୍ୱ ପାଇଛି ।
- ବଜେଟ ପୁଞ୍ଜି ବିନିଯୋଗକାରୀଙ୍କ ପାଇଁ ଅନୁକୂଳ । ଏହା ମଧ୍ୟ ଦକ୍ଷତା ବିକାଶ ଓ ରୋଜଗାର ସୃଷ୍ଟିକୁ ଫୋକସ କରୁଛି । ଚାଲୁ ରହିଥିବା ପ୍ରକଳ୍ପକୁ ବଜେଟରେ ଗୁରୁତ୍ୱ ଦିଆଯାଇଥିବା ବେଳେ ସାମାଜିକ ଅର୍ଥନୈତିକ ଲକ୍ଷ୍ୟ ଏବଂ ହିତାଧିକାରୀଙ୍କୁ ସହାୟତା କ୍ଷେତ୍ରରେ ଏହି ବଜେଟ ସହାୟକ ହେବ ।

ଓଡ଼ିଶା ବିଧାନ ସଭାରେ ୨୦୧୬-୧୭ ଆର୍ଥିକ ବର୍ଷ ନିମନ୍ତେ ୯୪ ହଜାର ୫୨ କୋଟି ୬୫ ଲକ୍ଷ ଟଙ୍କାର ବଜେଟ୍ ଆଗତ ହୋଇଛି । କୃଷି, ଜଳସମ୍ପଦ, ମତ୍ସ୍ୟ ଓ ପ୍ରାଣୀ ସମ୍ପଦ ଉନ୍ନୟନ ପାଇଁ କୃଷି ବଜେଟ୍‌ରେ ୧୩,୧୮୧.୮୯ କୋଟି ଟଙ୍କା ବ୍ୟୟ ବରାଦ କରାଯାଇଛି । ଉପସ୍ଥାପିତ ହୋଇଥିବା ବଜେଟ୍‌ରେ କୃଷି, ସାମାଜିକ କ୍ଷେତ୍ର, ଭିତ୍ତିଭୂମି ଓ ମାନବ ସମ୍ବଳ କ୍ଷେତ୍ରରେ ପୁଞ୍ଜିନିବେଶକୁ ଅଗ୍ରାଧିକାର ଦିଆଯାଇଛି ।



## କୃଷି ବଜେଟ୍

### ମୋଟ ୧୩,୧୮୧.୮୯କୋଟି

- କୃଷି ଓ କୃଷକ ସଶକ୍ତିକରଣ: ୩,୪୩୮.୯୧କୋଟି
- ସମବାୟ ବିଭାଗ: ୧,୮୨୧.୭୨ କୋଟି
- ଜଳ ସମ୍ପଦ ବିଭାଗ: ୭,୨୪୧.୬୫ କୋଟି
- ମତ୍ସ୍ୟ ଓ ପ୍ରାଣୀ ସମ୍ପଦ ବିଭାଗ: ୬୭୯.୬୦ କୋଟି
- ପ୍ରଧାନମନ୍ତ୍ରୀ ଫସଲ ବୀମା ଯୋଜନା: ୩୦୦କୋଟି
- ଚାଷୀଙ୍କୁ ସୁଧ ରିହାତି: ୪୩୫.୪୮କୋଟି
- ଗୋଦାମ ଘର ନିର୍ମାଣ: ୧୦୦କୋଟି

## ନୂଆ କୃଷି ଯୋଜନା

- କୃଷି ଭିତ୍ତିକ ଶିଳ୍ପ ପାଇଁ ଷ୍ଟାର୍ଟ ଅପ୍ ଫଣ୍ଡ
- ଆଦିବାସୀ ଅଞ୍ଚଳରେ ମାଣ୍ଡିଆ ଚାଷ ପାଇଁ ସ୍ୱତନ୍ତ୍ର ଯୋଜନା
- ସମନ୍ୱିତ ଚାଷ ବ୍ୟବସ୍ଥା ପାଇଁ ସ୍ୱତନ୍ତ୍ର ସହାୟତା
- ଅନ୍ତର୍ଜାତୀୟ ସଂସ୍ଥାନ ସହାୟତାରେ କୃଷି ବିକାଶ ଯୋଜନା
- ମହିଳା ଚାଷୀଙ୍କ ପାଇଁ କୃଷି ଉପକରଣ ପ୍ରୋତ୍ସାହନ ଯୋଜନା
- ଭୁବନେଶ୍ୱରରେ ପିପିପି ମୋଡ୍‌ରେ ଫୁଲ ବଜାର
- କୃଷି ଉତ୍ପାଦ ସଂସ୍ଥାକୁ ସହାୟତା
- ଫଳ ଓ ପରିବା ବିପଣନ
- ବିହନ ଓ ସାର ମହଜୁଦ୍ ପାଇଁ ୧୦୦କୋଟି କର୍ପସ ପାଣ୍ଠି
- ୨ ଲକ୍ଷ କିଷାନ କ୍ରେଡିଟ୍ କାର୍ଡ ପ୍ରଦାନ କରାଯିବାର ଲକ୍ଷ୍ୟ

ମୋ ରାଜ୍ୟର ପ୍ରତ୍ୟେକଟି ନାରୀ ଓ ପୁରୁଷ ପାଇଁ ରାଜ୍ୟର ସ୍ୱାର୍ଥ ହିଁ ହେବ ସବୁବେଳେ ପ୍ରାଥମିକ । ସେମାନେ ଅନ୍ୟ କାହାର ଦୟାର ପାତ୍ର ହୋଇ ଚଳୁ ନଥିବେ । କେବଳ ନିଜର ଅନୁକମ୍ପାର ପାତ୍ର ହୋଇଥିବେ । ସେମାନଙ୍କ ଦକ୍ଷତା,



ବୁଦ୍ଧିମତ୍ତା ତଥା ମନ କଳିଙ୍ଗ ଇତିହାସର ମୋଡ ବଦଳାଇ ଦେବ । ସେମାନେ ସେହି ହୃତ ଗୌରବକୁ ପୁଣି ଫେରାଇ ଆଣି ପାରିବେ । ଏକବିଂଶ ଶତାବ୍ଦୀର ମୋର ଓଡ଼ିଶାରେ ଥିବେ ଶ୍ରେଷ୍ଠ ଶିଳ୍ପୀ, ଭବ୍ୟ କାରିଗର ଓ ସ୍ଥପତି ତଥା ଶ୍ରେଷ୍ଠ ସଂଗୀତଜ୍ଞ ଓ କବି । ମୁଁ କାମନା କରୁଛି, ମୋ ରାଜ୍ୟର ପ୍ରତ୍ୟେକ ଅଧିବାସୀ ପାନୀୟଜଳ ପାଇଥିବ ତଥା ସବୁଦିନିଆ ନିରାପଦତା ଲାଭ କରୁଥିବ । ସବୁଦିନିଆ ରାସ୍ତା, ଦକ୍ଷ ଶିକ୍ଷକ-ଶିକ୍ଷୟିତ୍ରୀଙ୍କ ଦ୍ୱାରା ପରିଚାଳିତ ସ୍କୁଲ ଏବଂ ଅଭିଜ୍ଞ ଡାକ୍ତର ଥିବା ଡାକ୍ତରଖାନା ସେମାନଙ୍କ ନିମନ୍ତେ ଉପଲବ୍ଧ ହେଉଥିବ । ଏ ସବୁର ସୁନିଶ୍ଚିତ ବ୍ୟବସ୍ଥା, ମୋ ସ୍ୱପ୍ନର ଓଡ଼ିଶାରେ କରାଯାଇ ପାରିଥିବା ଶିକ୍ଷା, ସ୍ୱାସ୍ଥ୍ୟ, ପରିବହନ ଦିଗରୁ ରାଜ୍ୟର କୌଣସି ଅଞ୍ଚଳ ଅବହେଳିତ ଅବସ୍ଥାରେ ନଥିବ । ମୋ ସ୍ୱପ୍ନର ଓଡ଼ିଶାରେ ଥିବ ମହାନୁଭବତା, ସାମ୍ୟ, ଚାରିଆଡେ ସହନଶୀଳ ମନୋଭାବ ତଥା ପଡୋଶୀ ପଡୋଶୀ ଭିତରେ ଭ୍ରାତୃତ୍ୱର ସଦ୍‌ଭାବ । ସେଠି କେହି କ୍ଷୁଦ୍ରତାର ଅଭିଶାପ ପାଇନଥିବେ କିମ୍ବା ଅହିତକର ବୀଜବପନ କରିବାକୁ କେହି ନଥିବେ । ଆମେ ସମସ୍ତେ ମିଶି ଓଡ଼ିଶା ରାଜ୍ୟକୁ ଏଭଳି ଗଢି ତୋଳିବା ଯେମିତିକି ସାରା ପୃଥିବୀର ଲୋକେ କହି ଉଠିବେ ଯେ ଓଡ଼ିଶା ହେଉଛି ଆମ ସ୍ୱପ୍ନର ରାଜ୍ୟ ।

## ୨୦୧୬-୧୭ ବଜେଟ୍‌ରେ ନୂଆ ଯୋଜନା



- ଜଗନ୍ନାଥ ସଂସ୍କୃତିର ବିକାଶ ପାଇଁ ୨୪୨ କୋଟି
- ଦୁର୍ଗମ ଅଞ୍ଚଳରେ ରିହ୍ୟାବ୍ ଗ୍ୟାପ୍ ଫଣ୍ଡିଂ
- ନବମ ଶ୍ରେଣୀର ଛାତ୍ରଛାତ୍ରୀଙ୍କୁ ମାଗଣା ସାଇକେଲ
- ହଜ୍ ହାଉସ୍ ନିର୍ମାଣ ପାଇଁ ପାଣ୍ଠି
- ଅଙ୍ଗନୱାଡି ଚାରିପାଖରେ ସବୁଜମୟ ଘାସ ଗାଲିଚା
- କର୍ମଜୀବୀ ମହିଳାଙ୍କ ପାଇଁ ୮ଟି ହଷ୍ଟେଲ୍
- ୫୦୦ ଲୌହ ପୃଥକୀକରଣ ପାନୀୟ ୟୁନିଟ୍ ସ୍ଥାପନ
- ସମ୍ବଲପୁର-ରାଉରକେଲା ସ୍ୱରେଜ୍ ପାଇଁ ୧୭୫କୋଟି
- ବ୍ରହ୍ମପୁର ସହର ବସ୍ତିର ଉନ୍ନତି ପାଇଁ ୪୦ କୋଟି
- ୫୫୦ଟି ୩୩କେ.ଭି. ସବ୍‌ଷ୍ଟେସନ ନିର୍ମାଣ
- ଭୁବନେଶ୍ୱରରେ କଳା ମଣ୍ଡଳ ପ୍ରକଳ୍ପ ପାଇଁ ୫କୋଟି

- ଓଡ଼ିଆ ଭର୍ଚୁଆଲ୍ ଏକାଡେମୀ ପାଇଁ ୧କୋଟି
- ଭାଗବତ ଟୁଙ୍ଗୀର ପୁନରୁଦ୍ଧାର ପାଇଁ ୩କୋଟି
- ସମ୍ବଲପୁର, ବ୍ରହ୍ମପୁର ଓ ଉତ୍ତର ଓଡ଼ିଶା ବିଶ୍ୱବିଦ୍ୟାଳୟରେ ୩ଟି ଚେୟାର ପାଇଁ ୨କୋଟି
- ଓଡ଼ିଆ ହସ୍ତଶିଳ୍ପ ବିକାଶ ପାଇଁ 'ଉତ୍କର୍ଷ ଶିଳ୍ପ ଯୋଜନା'
- ଜିଲ୍ଲା ଯୋଜନା ପାଇଁ କ୍ରିଟିକାଲ୍ ଗ୍ୟାପ୍ ଫଣ୍ଡ୍
- ରାଜ୍ୟ ଖାଦ୍ୟ ଯୋଜନା ପାଇଁ ୧କୋଟି
- ପ୍ରାକୃତିକ ବିପର୍ଯ୍ୟୟ ପ୍ରଶମନ ପାଇଁ ୩୫୨ କୋଟି
- ଓଡ଼ିଶାରେ ପ୍ରତିଷ୍ଠା ହେବ ନଲେଜ୍ ହବ୍

## ବଜେଟ୍ ମୁଖ୍ୟାଂଶ

- ଦରମା: ୧୮,୮୦୦ କୋଟି
- ପେନ୍‌ସନ୍: ୯,୫୦୦ କୋଟି
- ସୁଧ ଦେୟ: ୪,୬୫୦ କୋଟି
- ଋଣ ଓ ଅଗ୍ରୀମ ଆଦାୟ: ୧୮୫.୧୫କୋଟି
- ସ୍ୱାସ୍ଥ୍ୟ ବିଭାଗ: ୪,୭୭୧.୮୭ କୋଟି
- ଏସ୍‌ସି/ଏସ୍‌ଟି ଓ ସଂଖ୍ୟାଲଘୁ ବିଭାଗ: ୨,୮୩୫.୧୨କୋଟି
- କିନ୍ନରଙ୍କ କଲ୍ୟାଣ: ୪କୋଟି
- ଗଣଶିକ୍ଷା ବିଭାଗ: ୧୩,୩୯୬.୩୫କୋଟି
- ମହିଳା, ଶିଶୁ କଲ୍ୟାଣ ଓ ଭିନ୍ନକ୍ଷମ: ୪,୬୯୩.୫୫ କୋଟି
- ରାଜ୍ୟ ମେଡିକାଲ ନିଗମ: ୨୨୨.୩୧କୋଟି
- ୫ ନୂଆ ମେଡିକାଲ କଲେଜ: ୬୧୫ କୋଟି
- ପଞ୍ଚାୟତିରାଜ ବିଭାଗ: ୮,୪୫୮.୯୫ କୋଟି
- ୧,୭୧,୦୦୦ ଇନ୍ଦିରା ଆବାସ ଘର: ୧,୬୮୮.୨୬ କୋଟି
- ମନରେଗାରେ ୯କୋଟି ଶ୍ରମ ଦିବସ ସୃଷ୍ଟି: ୧,୬୬୦.୩୫ କୋଟି
- ୯୩ ହଜାର ବିଜୁ ପକ୍କା ଘର: ୭୦୦ କୋଟି
- ଜାତୀୟ ଗ୍ରାମୀଣ ଜୀବିକା ମିଶନ: ୨୪୪.୭୩ କୋଟି
- ଗୋପବନ୍ଧୁ ଗ୍ରାମୀଣ ଯୋଜନା: ୧,୦୦୦ କୋଟି
- ଭିତ୍ତିଭୂମି ଉନ୍ନୟନ: ୧୭,୧୭୨.୩୦ କୋଟି
- ରାସ୍ତାକଡ ଶୌଚାଳୟ: ୧୫କୋଟି
- ପୁରୀରେ ହବିଷ୍ୟାଳୀଙ୍କ ନିବାସ: ୧କୋଟି
- ପୁରୀ ଜଗନ୍ନାଥ ଏନକ୍ଲେଭ: ୫କୋଟି
- ଭୁବନେଶ୍ୱର ସ୍ମାର୍ଟ ସିଟି ମିଶନ: ୩୩୩.୩୩ କୋଟି
- ବିଜୁ ଏକ୍ସପ୍ରେସ ୱେ: ୧୫୦ କୋଟି
- ଅମୃତ ଯୋଜନା: ୧୪୦.୧୫ କୋଟି
- ଓଡ଼ିଆ ଭାଷା ଶବ୍ଦ କୋଷ ସଂକଳନ: ୧କୋଟି
- ରାଜ୍ୟ ରାଜପଥ ସମ୍ପ୍ରସାରଣ ପାଇଁ ୫୦୦ କୋଟି
- ଭୁବନେଶ୍ୱରରେ ୨୪ ଘଣ୍ଟିଆ ବିଦ୍ୟୁତ୍ ସେବା ୧୬୦ କୋଟି
- ହାତୀ କରିଡର୍ ୨୦ କୋଟି
- ଶିଳ୍ପ ଭିତ୍ତିଭୂମିର ବିକାଶ ପାଇଁ ୧୦ କୋଟି

## ବଜେଟ୍ ୨୦୧୬–୧୭

**ମୋଟ ଘରୋଇ ଉତ୍ପାଦନ (ଜିଏସ୍‌ଡିପି) ଆକଳନ**

**୩,୮୩,୨୨୮ କୋଟି**

- ମୋଟ ବଜେଟ୍: ୯୪,୦୫୨.୬୫ କୋଟି
- ଯୋଜନା ବ୍ୟୟ: ୪୫,୯୫୬.୧୬ କୋଟି
- ଅଣ ଯୋଜନା ବ୍ୟୟ: ୪୮,୦୯୬.୪୯ କୋଟି
- ରାଜସ୍ୱ ସଂଗ୍ରହ ଲକ୍ଷ୍ୟ: ୭୮,୧୨୬.୭୧ କୋଟି
- ବିତ୍ତୀୟ ନିଅଣ୍ଟ: ୧୪,୫୨୩.୩୯ କୋଟି (ଜିଏସ୍‌ଡିପିର ୩.୭୯%)
- ରାଜସ୍ୱ ବଳକା: ୩,୬୮୩.୩୪ କୋଟି

## ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ସୁରକ୍ଷା ଦିଗରେ ବୈପ୍ଳବିକ ପଦକ୍ଷେପ



**'ଓଡ଼ିଶା ଭର୍ଚୁଆଲ୍ ଏକାଡେମୀ' ପ୍ରତିଷ୍ଠା ଭାଷା ସାହିତ୍ୟ ସୁରକ୍ଷା ଦିଗରେ ଏକ ଅଭିନବ ପଦକ୍ଷେପ**

- ଓଡ଼ିଆ ଭାଷାକୁ ସହଜ ଓ ସରଳଭାବେ ଲୋକଙ୍କ ପାଖରେ ପହଞ୍ଚାଇବାକୁ 'ଓଡ଼ିଶା ଭର୍ଚୁଆଲ୍ ଏକାଡେମୀ' ପ୍ରତିଷ୍ଠାର ପ୍ରସ୍ତାବ । ଓଡ଼ିଆ ଭାଷା, ଶିକ୍ଷା, ଇତିହାସ, କଳା, ସାହିତ୍ୟ ଓ ସଂସ୍କୃତି ଉପରେ ଆଗ୍ରହୀ ଥିବା ଲୋକଙ୍କୁ ଇଣ୍ଟରନେଟ୍ ମାଧ୍ୟମରେ ସୂଚନା ପ୍ରଦାନ ପାଇଁ କୋଟିଏ ଟଙ୍କାର ବ୍ୟୟ ବରାଦ ।
- ଓଡ଼ିଆ ଭାଷା ପ୍ରତିଷ୍ଠାନ ଭୁବନେଶ୍ୱରକୁ ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗରୁ ସଂସ୍କୃତି ବିଭାଗକୁ ଅଣାଯିବା ପରେ ଚଳିତ ବଜେଟ୍‌ରେ **'ଓଡ଼ିଆ ଭାଷାର ଇତିହାସ'** ଓ **'ଚଳନ୍ତି ଓଡ଼ିଆ ଶବ୍ଦକୋଷ'** ପୁସ୍ତକ ପ୍ରକାଶନ ନିମନ୍ତେ କୋଟିଏ ଟଙ୍କାର ବ୍ୟୟ ବରାଦ ।
- ଭାରତୀୟ ଭାଷା କେନ୍ଦ୍ର ଓ ନୂଆଦିଲ୍ଲୀର ଜେ.ଏନ୍.ୟୁ ବିଶ୍ୱବିଦ୍ୟାଳୟ ପ୍ରଭୃତିରେ **ଆଦିକବି ସାରଳା ଦାସଙ୍କ ଚେୟାର ପ୍ରତିଷ୍ଠା** ପାଇଁ ଆଗାମୀ ତିନିବର୍ଷ ନିମନ୍ତେ ଚଳିତ ବଜେଟ୍‌ରେ ୪୪ ଲକ୍ଷ ଟଙ୍କାର ବ୍ୟୟବରାଦ କରାଯିବା ସହିତ ପୌନଃପୁନିକ ଅନୁଦାନ ରାଶି ପ୍ରଦାନ କରାଯିବ । ସେହିପରି ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ ଓ ଦିଲ୍ଲୀ ବିଶ୍ୱ ବିଦ୍ୟାଳୟରେ ଓଡ଼ିଆ ଚେଆର ପ୍ରତିଷ୍ଠା ସମେତ ସମ୍ବଲପୁର, ବ୍ରହ୍ମପୁର ଓ ଫକୀର ମୋହନ ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଭାଷା ଓ ସାହିତ୍ୟର ଗବେଷଣା ନିମନ୍ତେ ୩ଗୋଟି ଚେଆର ପ୍ରତିଷ୍ଠା ହେବ । ଏସବୁ ପାଇଁ ୨କୋଟି ଟଙ୍କାର ବ୍ୟୟ ବରାଦର ପ୍ରସ୍ତାବ ଚଳିତ ବଜେଟ୍‌ରେ ରହିଛି ।

### ବିଜୁ କନ୍ୟାରତ୍ନ ଯୋଜନା

ରାଜ୍ୟ ସରକାର 'ଓଡ଼ିଶା ରାଜ୍ୟ ବାଳିକା ଓ ମହିଳା ନୀତି- ୨୦୧୪' ମାଧ୍ୟମରେ ସାମାଜିକ ମାନସିକତାର ପରିବର୍ତ୍ତନ କରି ବାଳିକାମାନଙ୍କ ପାଇଁ ସମାନ ସୁଯୋଗ ସୃଷ୍ଟି, ବୈଷମ୍ୟ ଦୂରୀକରଣ ଓ ସେମାନଙ୍କର ସଶକ୍ତିକରଣ ପାଇଁ ପରିବେଶ ସୃଷ୍ଟି କରିବା ପାଇଁ ଅଙ୍ଗୀକାରବଦ୍ଧ । ଏହି ଉଦ୍ଦେଶ୍ୟକୁ ଆଖି ଆଗରେ ରଖି ଏକ ନୂଆ ଯୋଜନା 'ବିଜୁ କନ୍ୟା ରତ୍ନ' ଢେଙ୍କାନାଳ, ଅନୁଗୁଳ ଓ ଗଞ୍ଜାମ ଜିଲ୍ଲାରେ ଶୁଭାରମ୍ଭ କରାଯିବ । ଏଥିପାଇଁ ୨୦୧୬-୧୭ ଆର୍ଥିକ ବର୍ଷରେ ୫କୋଟି ଟଙ୍କାର ବ୍ୟୟ ବରାଦ କରାଯାଇଛି ।

### ଭାଗବତ ଟୁଙ୍ଗିର ପୁନରୁଦ୍ଧାର

ଓଡ଼ିଶାରେ ପ୍ରତ୍ୟହ ଘରେ ଘରେ ଅତିବଡି ଜଗନ୍ନାଥ ଦାସଙ୍କର ରଚିତ ସମ୍ପୂର୍ଣ୍ଣ 'ଶ୍ରୀମଦ୍ ଭାଗବତ' ପାଠ କରାଯାଏ । ଶ୍ରୀମଦ୍ ଭାଗବତର ନିୟମିତ ପାଠ ଦ୍ୱାରା ଆଧ୍ୟାତ୍ମିକ ଚେତନାର ଉଦ୍ରେକ ହୋଇଥାଏ, ଯାହାର ଦୃଢ ସାକ୍ଷ୍ୟ ହେଉଛି 'ଓଡ଼ିଆ ଭାଗବତ ଟୁଙ୍ଗି' । ଭାଗବତ ବାସ୍ତବରେ ଜୀବନର ସହଚର, କୋଟି କୋଟି ଓଡ଼ିଆର ଜ୍ଞାନ ଓ ଭକ୍ତିର ପଥ ପ୍ରଦର୍ଶକ । ୨୦୧୫-୧୬ ଆର୍ଥିକ ବର୍ଷରେ ୧୨୦୦ ଭାଗବତ ଟୁଙ୍ଗିର ପୁନରୁଦ୍ଧାର ପାଇଁ ପ୍ରତି ଟୁଙ୍ଗିପିଛା ୨୫୦୦୦ ଟଙ୍କା ହାରରେ ମୋଟ ୩କୋଟି ଟଙ୍କା ବ୍ୟୟବରାଦ କରାଯାଇଥିବା ବେଳେ ୨୦୧୬-୧୭ ଆର୍ଥିକ ବର୍ଷରେ ଆହୁରି ଅଧିକ ୧୨୦୦ ଭାଗବତ ଟୁଙ୍ଗିର ପୁନରୁଦ୍ଧାର ପାଇଁ ୩କୋଟି ଟଙ୍କାର ବ୍ୟୟବରାଦ ପ୍ରସ୍ତାବ ଅଛି ।

### ସାଇକେଲ ବଣ୍ଟନ ଯୋଜନାରେ ଦୁଇଗୁଣା ଅର୍ଥ ବ୍ୟବସ୍ଥା

ଯୋଜନାର ଏକ ନିରପେକ୍ଷ ମୂଲ୍ୟାୟନ ଅନୁସାରେ ଏହି ଯୋଜନାର ସକାରାତ୍ମକ ପ୍ରଭାବ ଯୋଗୁଁ ହାଇସ୍କୁଲ ସ୍ତରରେ ବିଦ୍ୟାଳୟ ଛାଡୁଥିବା ବିଦ୍ୟାର୍ଥୀଙ୍କ ହାର ହ୍ରାସ ଓ ଉପସ୍ଥାନ ସଂଖ୍ୟା ବୃଦ୍ଧି ପାଇଛି । ଏହି ବ୍ୟବସ୍ଥାର ସଫଳତାକୁ ଆଖି ଆଗରେ ରଖି ନବମ ଶ୍ରେଣୀ ଓ ଦଶମ ଶ୍ରେଣୀ ଛାତ୍ରଛାତ୍ରୀମାନଙ୍କୁ ୨୦୧୬-୧୭ ଶିକ୍ଷାବର୍ଷରେ ଯୋଜନାରେ ଅନ୍ତର୍ଭୁକ୍ତ କରିବା ପାଇଁ ଦୁଇଗୁଣା ଅର୍ଥର ବ୍ୟବସ୍ଥା କରାଯାଇଅଛି । ରାଜ୍ୟରେ ଆଦର୍ଶ ବିଦ୍ୟାଳୟ ପ୍ରତିଷ୍ଠା ପାଇଁ ଭାରତ ସରକାର କେନ୍ଦ୍ରୀୟ ସହାୟତା ବନ୍ଦ କରିଦେଇଛନ୍ତି । ଆମ ସରକାର ନିଜସ୍ୱ ଯୋଜନା ମାଧ୍ୟମରେ ଏହି ବିଦ୍ୟାଳୟଗୁଡିକ ପ୍ରତିଷ୍ଠା ପାଇଁ 'ଓଡ଼ିଶା ଆଦର୍ଶ ବିଦ୍ୟାଳୟ' ନାମରେ ଏକ ନୂତନ ଯୋଜନା ପ୍ରଣୟନ କରି ଏଥି ନିମନ୍ତେ ବ୍ୟୟବରାଦ କରିଛନ୍ତି ।

## ଖାଦ୍ୟ କମିଶନଙ୍କୁ ୧.୭୫ କୋଟି

ଓଡ଼ିଶା ରାଜ୍ୟ ଖାଦ୍ୟ କମିଶନ ଗଠନ ପାଇଁ ୧କୋଟି ୭୫ଲକ୍ଷ ଟଙ୍କାର ବ୍ୟୟବରାଦ କରାଯାଇଛି । ସେହିପରି ଖାଦ୍ୟ ନିରାପତ୍ତା ନିମନ୍ତେ ୯୫୦ କୋଟି ୫୬ ଲକ୍ଷ ଟଙ୍କାର ବ୍ୟୟବରାଦ ହୋଇଛି ।

## ଦରମା ଲାଗି ୧୮ହଜାର ୮ଶହ କୋଟି

ବଜେଟରେ ୨୦୧୬–୧୭ ଆର୍ଥିକ ବର୍ଷର ଦରମା ନିମନ୍ତେ ୧୮ ହଜାର ୮ଶହ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି । ସେହିପରି ପେନସନ୍ ପାଇଁ ୯ହଜାର ୫ଶହ କୋଟି ଟଙ୍କାର ବ୍ୟୟବରାଦ ହୋଇଛି । ଏହାବାଦ୍ ବିଭିନ୍ନ ଋଣର ସୁଧ ଦେବାକୁ ୪୬୫୦ କୋଟି ଟଙ୍କା ରଖାଯାଇଥିବା ବେଳେ ବିଭିନ୍ନ ପୁଞ୍ଜି ସମ୍ପତ୍ତିର ରକ୍ଷଣାବେକ୍ଷଣ ପାଇଁ ୪୯୭୭ କୋଟି ୩୫ ଲକ୍ଷ ଟଙ୍କା ରଖାଯାଇଛି ।

## ଚେନ୍ନାଇ ଓଡ଼ିଶା ଭବନକୁ ୧୦ କୋଟି

ଚେନ୍ନାଇଠାରେ ଓଡ଼ିଶା ଭବନ ନିର୍ମାଣ ନିମନ୍ତେ ୧୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି । ଚିକିତ୍ସା ଉଦ୍ଦେଶ୍ୟରେ ଯାଉଥିବା ବ୍ୟକ୍ତି, ତୀର୍ଥଯାତ୍ରୀ ଓ ଛାତ୍ରଛାତ୍ରୀମାନଙ୍କର ସ୍ୱଳ୍ପ ରହଣି ନିମନ୍ତେ ସେଠାରେ ଓଡ଼ିଶା ଭବନ ନିର୍ମାଣ ହେବ ।

## ବଜେଟ୍‌ରେ କିନ୍ନରମାନଙ୍କ ପାଇଁ ଅର୍ଥ ବରାଦ ଏକ ଐତିହାସିକ ପଦକ୍ଷେପ

ରାଜ୍ୟ ବଜେଟ୍‌ରେ କିନ୍ନରମାନଙ୍କ ପାଇଁ ଭାରତରେ ପ୍ରଥମ କରି ଓଡ଼ିଶା ସରକାର ବିଧାନସଭାରେ ଅର୍ଥମନ୍ତ୍ରୀ ପ୍ରଦିପ କୁମାର ଅମାତ ଯେଉଁ ଐତିହାସିକ ପଦକ୍ଷେପ ରଚନା କଲେ ତାହା କିନ୍ନର ସମାଜ ପ୍ରତି ଏକ ସ୍ୱାଗତଯୋଗ୍ୟ ପଦକ୍ଷେପ । ଏହି ପଦକ୍ଷେପ ଆଗରୁ କୌଣସି ରାଜ୍ୟ ନେଇନଥିବା ବେଳେ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ପ୍ରଥମ ଥର ଏହି ପଦକ୍ଷେପ ନେଇଥିବାରୁ ରାଜ୍ୟସ୍ତରୀୟ ତୃତୀୟ ଲିଙ୍ଗ ପ୍ରତିନିଧି କମିଟିର ଅଧକ୍ଷ ପ୍ରତାପ କୁମାର ସାହୁ, ଆବାହକ ସାଧନା କିନ୍ନର, ରାଜ୍ୟ କମିଟି ସଭ୍ୟା ମୀରା କିନ୍ନର, ମେଘନା କିନ୍ନର, ମାଧୁରୀ କିନ୍ନରଙ୍କ ସମେତ ଜିଲ୍ଲା ପ୍ରତିନିଧି ମେନକା କିନ୍ନର, ରାଣୀ କିନ୍ନର, କାଜଲ କିନ୍ନର, ସ୍ୱପ୍ନା କିନ୍ନର ପ୍ରମୁଖ ମୁଖ୍ୟମନ୍ତ୍ରୀଙ୍କୁ କୃତଜ୍ଞତା ଜଣାଇବା ସହ ରାଜ୍ୟ ବଜେଟ୍‌ରେ ହୋଇଥିବା ୪କୋଟି ଅର୍ଥ ବରାଦ ଓଡ଼ିଶାରେ ଥିବା ୨୫,୦୦୦ରୁ ଊର୍ଦ୍ଧ୍ୱ କିନ୍ନରମାନଙ୍କ ସାମାଜିକ, ଅର୍ଥନୈତିକ ସ୍ଥିତିରେ ସୁଧାର ଆଣିବା ଦିଗରେ ଏକ ଐତିହାସିକ ପଦକ୍ଷେପ ବୋଲି ଅଭିହିତ କରିଛନ୍ତି ।

## ବଜେଟ୍ ଅଟକଳ, ବିତ୍ତୀୟ ଉତ୍ତରଦାୟୀ ଓ ବଜେଟ୍ ପରିଚାଳନା ଆଇନ ସମ୍ବନ୍ଧୀୟ ଲକ୍ଷ୍ୟ

ରାଜ୍ୟରେ ୨୦୧୬–୧୭ ଆର୍ଥିକ ବର୍ଷରେ ରାଜସ୍ୱ ଖର୍ଚ୍ଚ ୭୪୪୪୩ କୋଟି ୩୮ ଲକ୍ଷ ଟଙ୍କା ହେବ ବୋଲି ଆକଳନ କରାଯାଇଛି । ତେଣୁ ରାଜସ୍ୱ ହିସାବରେ ସନ୍ତୁଳନ ଆଣିବା ପରେ ୩୬୮୩ କୋଟି ୩୪ଲକ୍ଷ ଟଙ୍କାର ରାଜସ୍ୱ ବଳକା ହେବ ବୋଲି ଅନୁମାନ କରାଯାଇଛି, ଯାହାକି ସାମଗ୍ରିକ ରାଜ୍ୟ ଘରୋଇ ଉତ୍ପାଦର ୦.୯୬ ପ୍ରତିଶତ ଅଟେ । ବିତ୍ତୀୟ ନିଅଣ୍ଟ ୧୪୫୩୨ କୋଟି ୩୯ ଲକ୍ଷ ଟଙ୍କା ହେବାର ଆକଳନ କରାଯାଇଛି, ଯାହାକି ସାମଗ୍ରିକ ରାଜ୍ୟ ଘରୋଇ ଉତ୍ପାଦର ୩.୭୯ ପ୍ରତିଶତ । କିନ୍ତୁ ଯଦି ୟୁଡିଏଓ୍ୱାଇ ଯୋଜନା ପାଇଁ ନିଆଯାଇଥିବା ୧୧୯୬ କୋଟି ୧୮ ଲକ୍ଷ ଟଙ୍କାର ବ୍ୟୟବରାଦକୁ ବାଦ୍ ଦିଆଯାଏ, ତେବେ ବିତ୍ତୀୟ ନିଅଣ୍ଟ ୧୩୩୩୬ କୋଟି ୨୧ ଲକ୍ଷ ଟଙ୍କାକୁ ହ୍ରାସ ପାଇବ, ଯାହାକି ସାମଗ୍ରିକ ରାଜ୍ୟ ଘରୋଇ ଉତ୍ପାଦର ୩.୪୮ ପ୍ରତିଶତ ଅଟେ । ଏହା ବିତ୍ତୀୟ ଉତ୍ତର ଦାୟୀ ଓ ବଜେଟ ପରିଚାଳନା ଆଇନ ଅନ୍ତର୍ଗତ ବିତ୍ତୀୟ ନିଅଣ୍ଟ ପାଇଁ ପ୍ରସ୍ତାବିତ ସୀମା ୩.୫ ପ୍ରତିଶତଠାରୁ କମ୍ ଅଟେ ।

ସାମଗ୍ରିକ ବିକାଶ ଲକ୍ଷ୍ୟ ସୁନିଶ୍ଚିତ କରିବା ଦିଗରେ ୨୦୧୬–୧୭ ବଜେଟ୍ ଆମ ଭାଷା, ସାହିତ୍ୟ, କଳା, ସଂସ୍କୃତି, ଐତିହ୍ୟ, କୃଷି, ଶିକ୍ଷା, ସ୍ୱାସ୍ଥ୍ୟ, ଶିଳ୍ପ ଏବଂ ଗ୍ରାମାଞ୍ଚଳର ମୌଳିକ ଭିତ୍ତିଭୂମି ବିକାଶ ସହ ଗ୍ରାମ୍ୟ ଗୃହ ନିର୍ମାଣ, ଗ୍ରାମୀଣ ଜୀବିକା ନିର୍ବାହ, ଖାଦ୍ୟ ସୁରକ୍ଷା ଏବଂ ଅନୁସୂଚିତ ଜାତି, ଜନଜାତି ଏବଂ ସଂଖ୍ୟାଲଘୁ ବର୍ଗର କଲ୍ୟାଣାର୍ଥେ ଅଭିପ୍ରେତ । ଉକ୍ତ ବଜେଟ୍‌ରେ ପୁଞ୍ଜିନିବେଶକାରୀଙ୍କ ନିମନ୍ତେ ଏକ ଅନୁକୂଳ ବାତାବରଣ ସୃଷ୍ଟି କରିବା ସହ ଦକ୍ଷତା ବୃଦ୍ଧି ଏବଂ ରୋଜଗାର ସୃଷ୍ଟିକୁ ପ୍ରାଧାନ୍ୟ ଦିଆଯାଇଛି । ବାସ୍ତବରେ ଏହି କୃଷି କୈନ୍ଦ୍ରିକ ଲୋକଙ୍କ ବଜେଟ୍ ଏକ ନୂତନ ବିକଶିତ ଓଡ଼ିଶା ଗଠନ ଦିଗରେ ସହାୟକ ହେବ, ଏହା ନିଃସନ୍ଦେହ ।



# ଉତ୍କଳ ଦିବସ – ଏକ ଅନୁଚିନ୍ତା

ଡକ୍ଟର ସରୋଜ କୁମାର ପଟ୍ଟନାୟକ

୧୯୩୬ ମସିହା ଅପ୍ରେଲ ପହିଲା, ଓଡ଼ିଶା ଇତିହାସରେ ଚିର ସ୍ମରଣୀୟ ଓ ଉଲ୍ଲେଖନୀୟ ଦିବସ । ଏହିଦିନ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ଜନ୍ମଲାଭ କରିଥିଲା । ୨୦୧୬ ଅପ୍ରେଲ ପହିଲାରେ ଏହି ପ୍ରଦେଶକୁ ୮୦ ବର୍ଷ ପୂରିଲା । ୨୦୩୬ ମସିହାରେ ଉତ୍କଳ ଦିବସର ଶତବାର୍ଷିକୀ ପାଳନ ପାଇଁ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ପ୍ରାକ୍ ପ୍ରସ୍ତୁତି ଆରମ୍ଭ କରି ଓଡ଼ିଶାବାସୀଙ୍କୁ ଏହି ମହାନ୍ ଦିବସର ମାହାତ୍ମ୍ୟ ବିଷୟରେ ସୂଚାଇ ସାରିଛନ୍ତି ।

ସ୍ୱାଧୀନତା ଲାଭ ପରେ ଓଡ଼ିଶା ଗଡ଼ଜାତଗୁଡ଼ିକ ୧୯୩୬ରେ ଗଠିତ ଓଡ଼ିଶା ପ୍ରଦେଶରେ ମିଶିଯିବାପରେ ଏହାର ପରିସର, ଲୋକସଂଖ୍ୟା ଓ ପ୍ରାକୃତିକ ସମ୍ପଦର ଅଭିବୃଦ୍ଧି ଘଟିଥିଲା ।

୧୯୧୯ ଉତ୍କଳ ସମ୍ମିଳନୀରେ ସଭାପତି ପଣ୍ଡିତ ଗୋପବନ୍ଧୁ ଦାସ 'ଓଡ଼ିଆ ଜାତି କିଏ' ? ଶୀର୍ଷକର ଉତ୍ତର ଦେବାକୁ ଯାଇ କହିଥିଲେ –

'ପୃଥିବୀରେ ସ୍ଥାନ ଅନୁସାରେ ଜାତିର ନାମକରଣ ପ୍ରାୟ ସର୍ବତ୍ର ଦେଖାଯାଏ । ଏକ ସ୍ଥାନରେ ବାସ କରୁଥିବା ଲୋକମାନଙ୍କ ମଧ୍ୟରେ ସ୍ୱତଃ ମାୟା ମମତା ଜନ୍ମେ । ସେମାନଙ୍କର ଆଶା, ଅଭିପ୍ରାୟ, ଭାଗ୍ୟ ଓ ଭବିଷ୍ୟତ ଏକ ଶ୍ରେୟ–ସ୍ୱାର୍ଥରେ ଆବଦ୍ଧ । ସେମାନଙ୍କର କର୍ମଭୂମି ଏକ ଓ ଅଭିନ୍ନ । ସେହି ଭୂମି ସେମାନଙ୍କ ପକ୍ଷରେ ପବିତ୍ର ଏବଂ ପ୍ରେମମୟ କ୍ଷେତ୍ର । ଏହା ସେମାନଙ୍କର ଜନ୍ମଭୂମି । ସେମାନଙ୍କ ଦୃଷ୍ଟିରେ 'ସ୍ୱର୍ଗାଦପି ଗରୀୟସି' । ସୁତରାଂ ଯେଉଁମାନେ ଏପରି ଏକ ନିର୍ଦ୍ଦିଷ୍ଟ ଭୂଖଣ୍ଡରେ ବାସ କରନ୍ତି ସେମାନେ ଏକ ଜାତି ଏବଂ ସେହି ଭୂଖଣ୍ଡ ନାମାନୁସାରେ ନାମିତ ହୁଅନ୍ତି । ଏହି ପ୍ରାକୃତିକ ବିଧାନରେ ଯେଉଁମାନେ ଉତ୍କଳ ବା ଓଡ଼ିଶାର ସମାନ ଆଶା ଓ ଆକାଂକ୍ଷା ଧରି ଜନ୍ମ ମରଣରେ ସମାନ ଶ୍ରେୟ–ସ୍ୱାର୍ଥରେ ବିଜଡ଼ିତ, ସେମାନେ ସମସ୍ତେ ଓଡ଼ିଆ ଜାତି ।'

ବର୍ତ୍ତମାନ ଯୁଗରେ ଗୋଟିଏ ସ୍ଥାନରେ ଯେ ଗୋଟିଏ ପ୍ରକାରର ଲୋକ ରହିବେ ତାହା ଅସମ୍ଭବ । ପୃଥିବୀରେ ଏପରି କୌଣସି ସ୍ଥାନ ନାହିଁ ଯେଉଁଠାରେ ଭିନ୍ନ ଭିନ୍ନ ଜାତି ବା ସମାଜର ଲୋକ ଏକତ୍ର ବାସ କରୁନାହାନ୍ତି । ସେମାନେ କାଳକ୍ରମେ ଏକୀଭୂତ ହୋଇଯାଇଛନ୍ତି ସ୍ୱାଭାବିକ ପ୍ରକ୍ରିୟାରେ । ଯୁକ୍ତରାଷ୍ଟ୍ର ଆମେରିକା ଏହି ଜାତୀୟତା ଗଠନର ଜ୍ୱଳନ୍ତ ଉଦାହରଣ ।

୧୯୩୬ ମସିହାରୁ ଓଡ଼ିଶା ପ୍ରଦେଶ ଗଠିତ ହୋଇଥିଲେ ମଧ୍ୟ ସ୍ୱତନ୍ତ୍ର ଉତ୍କଳ ଦିବସ ସରକାରୀ କାହିଁକି ବେସରକାରୀ ଭାବେ ମଧ୍ୟ ପାଳିତ ହେଉନଥିଲା । ୧୯୬୧ରେ ରଜତ ଜୟନ୍ତୀ ପାଳନ ବେଳେ ଓଡ଼ିଶାରେ ରାଷ୍ଟ୍ରପତି ଶାସନ ଥିଲା । ୧୯୬୧ ଫେବୃଆରୀ ୨୦ରେ ହରେକୃଷ୍ଣ ମହତାବଙ୍କ ମନ୍ତ୍ରିମଣ୍ଡଳ ଇସ୍ତଫା ଦେଇଥିଲେ ଏବଂ ଜୁନ ମାସରେ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲା । ସେସମୟର ରାଜ୍ୟପାଳ ଯଶୋବନ୍ତ ନାରାୟଣ ସୁକ୍‌ଠନ୍‌କରଙ୍କର ନିର୍ଦ୍ଦେଶରେ ରାଜ୍ୟର ଚତୁର୍ଦ୍ଦିଗରେ ଉତ୍ସବ ପାଳିତ ହେଲା । ସେତେବେଳେ ଏହି ଦିନଟି ଛୁଟି ଘୋଷଣା ହେଉନଥିବାରୁ ବିଶେଷ କରି ବିଦ୍ୟାଳୟ ଓ ମହାବିଦ୍ୟାଳୟର ଛାତ୍ରଛାତ୍ରୀ, ଶିକ୍ଷକ, ଅଧ୍ୟକ୍ଷକ ଏବଂ ସରକାରୀ ବେସରକାରୀ କର୍ମଚାରୀମାନେ ଏଥିରେ ଭାଗ

ନେଇପାରୁନଥିଲେ । ଏହାର ଠିକ୍ ୧୦ ବର୍ଷ ପରେ ୧୯୭୧ ମସିହା ଏପ୍ରିଲ ପହିଲା ବେଳକୁ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ମନ୍ତ୍ରିମଣ୍ଡଳ ଜାନୁଆରୀ ୧୧ରେ ଇସ୍ତଫା ପ୍ରଦାନ କରିଥିଲେ ଏବଂ ବିଶ୍ୱନାଥ ଦାଶଙ୍କର ମୁଖ୍ୟମନ୍ତ୍ରିତ୍ୱରେ ମନ୍ତ୍ରିମଣ୍ଡଳ ଗଠନ ହୋଇନଥିଲା । ତତ୍କାଳୀନ ରାଜ୍ୟପାଳ ସୌକୁତୁଲ୍ଲା ଶାହା ଆନସାରୀଙ୍କ ହୁକୁମ ଅନୁସାରେ ସେହି ବର୍ଷଠାରୁ ଏହି ଦିବସଟି ଛୁଟି ଦିବସ ରୂପେ ପାଳିତ ହୋଇଆସୁଛି ।

୧୯୦୩ ମସିହାରେ ଉତ୍କଳ ସମ୍ମିଳନୀ ଗଠିତ ହୋଇଥିଲା । ସେହିଦିନଠାରୁ ଉତ୍କଳ ସମ୍ମିଳନୀ ହିଁ ଓଡ଼ିଶା ଦେଶ ମିଶ୍ରଣ ଓ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠନ ପାଇଁ ଅଭୁତପୂର୍ବ ନିଷ୍ଠା ଓ ଏକତାର ସହିତ ଲଢେଇ କରି ଆସିଥିଲା । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠନ ସେମାନଙ୍କର ସାଧନାର ଫଳ । ସେହିଦିନଠାରୁ ଇଂରେଜ ଶାସନର ଅବିମୃଶ୍ୟକାରିତା ଯୋଗୁଁ ସମ୍ବଲପୁର ଓ ପାର୍ଶ୍ୱବର୍ତ୍ତୀ ୧୦ଟି ଗଡ଼ଜାତ ଓଡ଼ିଆ ଭାଷାଭାଷୀ ଜିଲ୍ଲା ସହିତ ମିଶିଲା ନାହିଁ । ୧୯୧୨ରେ ବଙ୍ଗପ୍ରଦେଶରୁ ବିଚ୍ଛିନ୍ନ ହୋଇ ବିହାର ଓ ଓଡ଼ିଶା ପ୍ରଦେଶ ଗଠିତ ହେଲା, ଯେଉଁଥିରେ ଓଡ଼ିଶା ୫ଗୋଟି ଡ଼ିଭିଜନରୁ ଗୋଟିଏ ଡ଼ିଭିଜନ ହୋଇ ସେଥିରେ ୫ଟି ଜିଲ୍ଲା ରହିଲା । ସେଗୁଡ଼ିକ ହେଲା କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁର ଓ ଅନୁଗୁଳ । ସେସମୟରେ ଆମେ ସବୁଦିନ ପାଇଁ ମେଦିନୀପୁରଠାରୁ ଅଲଗା ହୋଇଗଲୁ । ୧୯୧୮ ମସିହାରେ ମଣ୍ଟେଗୁ-ଚେମସ୍‌ଫୋର୍ଡ଼ ମିଶନ ଅନୁସନ୍ଧାନବେଳେ ଓଡ଼ିଶାକୁ ବିହାରର ଏକ ଉପପ୍ରଦେଶ ରୂପେ ରଖିବାକୁ ପ୍ରସ୍ତାବ ହୋଇଥିଲା । କିନ୍ତୁ ଏହାର ସାମ୍ବିଧାନିକ ରୂପରେଖ ଜଣାନଥିବାରୁ ଏହାକୁ ଗ୍ରହଣ କରାଯାଇନଥିଲା । ୧୯୨୧ରେ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି ଗଠିତ ହୋଇଥିଲା ଏବଂ ବିହାରର ସିଂହଭୂମ ଜିଲ୍ଲା ଏହି କମିଟିର ଅନ୍ତର୍ଭୁକ୍ତ ଥିଲା । କିନ୍ତୁ ସେତେବେଳେ ଡ଼ଃ ରାଜେନ୍ଦ୍ର ପ୍ରସାଦଙ୍କର ଉଦ୍ୟମରେ ସିଂହଭୂମ ଆଉ ଓଡ଼ିଶା ପ୍ରାଦେଶିକ କମିଟି ଅଧୀନରେ ରହିଲା ନାହିଁ । ଫଳରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠନ ପାଇଁ ଉଦ୍ଦିଷ୍ଟ 'ଓଡ଼ନେଲ କମିଟି' ସିଂହଭୂମ ଜିଲ୍ଲାକୁ ଓଡ଼ିଶା ପ୍ରଦେଶରେ ମିଶାଇବାକୁ ସୁପାରିଶ କଲେ ନାହିଁ । ପରବର୍ତ୍ତୀ ଅବସ୍ଥାରେ ସଂଲଗ୍ନ ଷଢେଇକଳା ଓ ଖରସୁଆଁ ଗଡ଼ଜାତ ଦୁଇଟି ୧୯୪୭ରେ ସର୍ଦ୍ଦାର ପଟେଲ ଓଡ଼ିଶାକୁ ଦେଇଥିଲେ ମଧ୍ୟ ରାଜେନ୍ଦ୍ର ପ୍ରସାଦଙ୍କ ଯୋଗୁଁ ୧୯୪୮ ମେ ମାସ ୧୫ ଦିନ ଆମ ହାତରୁ ଚାଲିଗଲା । ସେହିପରି ଦକ୍ଷିଣରେ ଜୟପୁର ଓ ପାରଳାଖେମୁଣ୍ଡି ମଧ୍ୟ ଆମକୁ ମିଳୁ ନଥିଲା । ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଦେବ ଏବଂ ସୁବିଖ୍ୟାତ ଆଇନଜୀବୀ ଲିଙ୍ଗରାଜ ପାଣିଗ୍ରାହୀଙ୍କୁ ସାଙ୍ଗରେ ନେଇ ଇଂଲଣ୍ଡ ଯାଇନଥିଲେ ଏବଂ ସଂସଦୀୟ କମିଟି ଆଗରେ ସାକ୍ଷ୍ୟ ଦେଇ ଆମର ଦାବି ଠିକ୍ ଭାବେ ଉପସ୍ଥାପିତ କରି ନଥିଲେ ଏବଂ କମିଟିର ଅଧକ୍ଷ ଭାବୀ ବଡ଼ଲାଟ ଲର୍ଡ଼ ଲିନ୍‌ଲିଥିଗୋଙ୍କ ସହ ତାଙ୍କର ବ୍ୟକ୍ତିଗତ ବନ୍ଧୁତା ନଥିଲେ ଆମେ ଜୟପୁର ଓ ପାରଳାଖେମୁଣ୍ଡିକୁ ମଧ୍ୟ ହରାଇଥାନ୍ତେ ।

ଐତିହାସିକ ତୃତୀୟ ଗୋଲଟେବୁଲ ବୈଠକରେ ପାରଳାଖେମୁଣ୍ଡିର ସ୍ୱର୍ଗୀୟ ମହାରାଜା, ଖଲିକୋଟର ସ୍ୱର୍ଗୀୟ ରାଜା ବାହାଦୁର, ଭୁବନାନନ୍ଦ ଦାସ, ଲିଙ୍ଗରାଜ ପାଣିଗ୍ରାହୀ ପ୍ରଭୃତି ଉତ୍କଳ ସମ୍ମିଳନୀର ନେତୃବୃନ୍ଦଙ୍କ ପ୍ରମୁଖ ଉଦ୍ୟମ ଏବଂ ସେତେବେଳର ଭାରତ ମନ୍ତ୍ରୀ ସାର୍ ସାମୁଏଲ ହୋର୍, ଭାରତର ବଡ଼ଲାଟ ଓ ସର୍ବୋପରି 'ଓଡ଼ନେଲ କମିଟିର' ସୁପାରିଶକ୍ରମେ ଓଡ଼ିଶା ପ୍ରଦେଶ ଗଠିତ ହୋଇଥିଲା । ଏହି 'ଓଡ଼ନେଲ କମିଟିରେ' ଓଡ଼ିଶାର କର୍ମବୀର ପାରଳାଖେମୁଣ୍ଡି ମହାରାଜା, ବିହାରର ବିଶିଷ୍ଟ ଜନନେତା ଡଃ ସଚ୍ଚିଦାନନ୍ଦ ସିଂହ, ଆସାମର ଶ୍ରୀ ତରୁଣରାମ ଫୁକନ ଏବଂ ବମ୍ବେର ଶ୍ରୀ ଏଚ.ଏନ୍. ମେହେଟ୍ଟା ସଦସ୍ୟ ଥିଲେ ।

ଓଡ଼ନେଲ କମିଟି ତାଙ୍କ ରିପୋର୍ଟର ପ୍ରଥମ ଭାଗରେ ବିଶାଖାପାଟଣା ମାଳ ଅଞ୍ଚଳ ଏବଂ ସିଂହଭୂମ ଓ ଅନ୍ୟାନ୍ୟ ଅଞ୍ଚଳ ଓଡ଼ିଶା ସହିତ ମିଶିବା ଉଚିତ ବୋଲି ପ୍ରାମାଣିକ ତଥ୍ୟ ସହ ଉଲ୍ଲେଖ କରିଥିଲେ ସୁଦ୍ଧା ତାହା କାର୍ଯ୍ୟକାରୀ ହୋଇପାରିନଥିଲା ।

ଏକ ଭାଷାଭାଷୀ ଯେଉଁ ସବୁ ଅଂଚଳ ନିରବଚ୍ଛିନ୍ନ ହୋଇ ଭୌଗଳିକ ଭାବରେ ପରସ୍ପର ସହିତ ସଂଯୁକ୍ତ ସେମାନେ ଏକ ରାଜ୍ୟର ଅନ୍ତର୍ଭୁକ୍ତ ହେବା କଥା । କିନ୍ତୁ ଓଡ଼ିଶା ପ୍ରଦେଶ ଏକ ଅପ୍ରାକୃତିକ ବିଧାନରେ ଗଠିତ । ହିମାଳୟରୁ ଚେନାଏ, କୁମାରୀକାରୁ ଚେନାଏ, ବମ୍ବେରୁ ଚେନାଏ ନେଇ ରାଜ୍ୟ ଗଢିଲେ ଯାହା ହୋଇଥାନ୍ତା ଓଡ଼ିଶାର ସେ ମୁଣ୍ଡେ ସମ୍ବଲପୁର, ଏମୁଣ୍ଡେ କଟକ, ଏମୁଣ୍ଡେ ଅନୁଗୁଳ, ସେ ମୁଣ୍ଡେ ଜୟପୁରକୁ ନେଇ

ନୂତନ ପ୍ରବେଶ ସୃଷ୍ଟି ମଧ୍ୟ ସେହିପରି । ସେତେବେଳେ ପ୍ରାୟ ୨୦ ରୁ ୨୫ ଲକ୍ଷ ଓଡ଼ିଆ ଭାଷୀ ଲୋକ ତାଙ୍କ ମାତୃଭୂମି ଓଡ଼ିଶାରୁ ବିଚ୍ଛିନ୍ନ ହୋଇଗଲେ । ଏବେ ସେମାନେ କେତେ କୋଟିରେ ପହଞ୍ଚିସାରିଲେଣି ଜଣାନାହିଁ । ସେମାନଙ୍କର ମାତୃଭାଷା ଲୋପ ପାଇବାକୁ ବସିଲାଣି । ସେଅଞ୍ଚଳରେ ଓଡ଼ିଆ ମାତୃଭାଷାର ପୁନରୁଦ୍ଧାର ପାଇଁ ଓଡ଼ିଶା ସରକାରଙ୍କର ପ୍ରଚେଷ୍ଟା ଓ ପ୍ରୋତ୍ସାହନ ଜାରି ରହିଥିଲେ ସୁଦ୍ଧା ତାହା ସମୁଦ୍ରକୁ ଶଙ୍ଖେ ପାଣି ପରି । ଏହା ବିଧିର ଏକ ବିଡ଼ମ୍ବନା ଯେ ଅତୀତରେ ଯେଉଁ ଓଡ଼ିଆଜାତି ଜାଭା, ସୁମାତ୍ରା, ବାର୍ଲିରେ ସାମ୍ରାଜ୍ୟ ପ୍ରତିଷ୍ଠା କରିଥିଲା ସେ ଜାତି ଛିନ୍ନ ବାହୁ, ଛିନ୍ନ ପାଦ ହୋଇ ରହିଗଲା ।

ତୃତୀୟ ଗୋଲଟେବୁଲ ସମ୍ମିଳନୀର ଶେଷ ଦିନ ଭାରତ ସଚିବ ସାର୍ ସାମୁଏଲ ହୋର ବର୍ତ୍ତମାନ ଓଡ଼ିଶାର ପାରଳାଖେମୁଣ୍ଡି ଓ ଜୟପୁର ଜମିଦାରୀକୁ ବାଦ୍ ଦେଇ ଓଡ଼ିଆମାନଙ୍କ ପାଇଁ ଏକ ସ୍ୱତନ୍ତ୍ର ପ୍ରଦେଶ ପୋଷଣା କଲେ । ୧୯୩୩ ମସିହା ଜାନୁଆରୀ ୧୩ ତାରିଖରେ ପାରଳାଖେମଣ୍ଡିର ରାଜା ସାହେବ ସ୍ୱର୍ଗତ କୃଷ୍ଣଚନ୍ଦ୍ର ଗଜପତି ଦେବ ଭାରତ ସଚିବ ଓ ଗୋଲଟେବୁଲ ବୈଠକ ସମ୍ମିଳନୀର ସଦସ୍ୟମାନଙ୍କୁ ଗୋଟିଏ ରାତ୍ରିଭୋଜନରେ ଆପ୍ୟାୟିତ କରିବା ପରିପ୍ରେକ୍ଷୀରେ ଓଡ଼ିଶା ପ୍ରଦେଶର ସୀମା ମଧ୍ୟରେ ପାରଳାଖେମୁଣ୍ଡି ଓ ଜୟପୁର ଜମିଦାରୀକୁ ବାଦ୍ ଦିଆଯାଇଥିବାରୁ ଗଭୀର କ୍ଷୋଭ ଓ ପ୍ରତିକ୍ରିୟା ପ୍ରକାଶ କରିଥିଲେ । ଅବଶ୍ୟ ସାର୍ ସାମୁଏଲ ହୋର୍ ପାରଳା ମହାରାଜାଙ୍କ ପ୍ରତି ସହାନୁଭୂତିଶୀଳ ହୋଇଥିଲେ । ସେହି ଘୋଷଣା ଯୋଗୁଁ ଆନ୍ଧ୍ର ଏବଂ ଓଡ଼ିଶା ଲୋକମାନଙ୍କ ମଧ୍ୟରେ ତୀବ୍ର ପ୍ରତିକ୍ରିୟା ପ୍ରକାଶ ପାଇଥିଲା । ଘୋଷିତ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶରୁ ବ୍ରହ୍ମପୁରକୁ ବାଦ୍ ନଦେବା ପାଇଁ ଏବଂ ଜୟପୁର ଓ ପାରଳାଖେମୁଣ୍ଡି ଜମିଦାରୀକୁ ସେଥିରେ ମିଶାଇବା ପାଇଁ ଓଡ଼ିଆମାନଙ୍କର ପକ୍ଷରୁ ହୋଇଥିବା ଉଦ୍ୟମ ବିରୁଦ୍ଧରେ ଆନ୍ଧ୍ରରେ ତୀବ୍ର ଆନ୍ଦୋଳନ ହୋଇଥିଲା । ଏପଟେ ଓଡ଼ିଆମାନଙ୍କ ତରଫରୁ ପାରଳାଖେମୁଣ୍ଡି ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଘୋଷିତ ସୀମାର ପରିବର୍ତ୍ତନ ପାଇଁ ପ୍ରବଳ ଆନ୍ଦୋଳନ ମାଧ୍ୟମରେ ଭାରତ ସରକାର, ମାନ୍ଦ୍ରାଜ ସରକାର ଓ ଲଣ୍ଡନସ୍ଥିତ ଭାରତ ସଚିବଙ୍କ ନିକଟରେ ଦୃଢ଼ଦାବୀ ଜଣାଇଲେ । ତାଙ୍କୁ ଜୟପୁରର ମହାରାଜା ସ୍ୱର୍ଗୀୟ ବିକ୍ରମଦେବ ବର୍ମା ଏବଂ ଗଞ୍ଜାମ ଓ କୋରାପୁଟର ଜନସାଧାରଣ ଜନମତ ନିର୍ବିଶେଷରେ ସମସ୍ତ ଭେଦଭାବ ଭୁଲି ସକ୍ରିୟ ସାହାଯ୍ୟ କରିଥିଲେ । ପାରଳାଖେମୁଣ୍ଡିର ଗଜପତି ମହାରାଜାଙ୍କର ଏକାନ୍ତ ବଳିଷ୍ଠ ଉଦ୍ୟମ ଯୋଗୁଁ ତୃତୀୟ ଗୋଲଟେବୁଲ ବୈଠକର ଶେଷ ଦିନରେ ଘୋଷିତ ଉପରୋକ୍ତ ସ୍ୱତନ୍ତ୍ର ଓଡ଼ିଆ ପ୍ରଦେଶର ରୂପରେଖକୁ ପୁନର୍ବିଚାର କରିବା ପାଇଁ ଭାରତ ସଚିବ ସାର୍ ସାମୁଏଲ ହୋର୍ ନିମ୍ନଲିଖିତ ସଦସ୍ୟମାନଙ୍କୁ ନେଇ ଗୋଟିଏ ଜଏଣ୍ଟ ପାର୍ଲାମେଣ୍ଟାରୀ କମିଟି ଗଠନ କରିଥିଲେ । ସେହି କମିଟିରେ ସାର୍ ସାମୁଏଲ ହୋର୍ (ଚେୟାରମ୍ୟାନ) ଲର୍ଡ଼ ଲେଥିଆନ୍, ଲର୍ଡ଼ ଜେଟ୍‌ଲ୍ୟାଣ୍ଡ, ଲର୍ଡ଼ ଡ଼ର୍ବି, ମେଜର ସି.ଆର୍. ଆଟଲି, ମି.ଆର୍.ଏ. ବଟଲର୍, ସାର୍ ପି.ଏସ୍.ସେଥିନା, ମିଃ. ଜାଫରୁଲ୍ଲା ଖାନ୍ ସଦସ୍ୟ ରହିଥିଲେ । ଉକ୍ତ କମିଟି ସମକ୍ଷରେ ନିଜ ନିଜର ଦାବୀ ଉପସ୍ଥାପନ କରିବା ପାଇଁ ଓଡ଼ିଶା ଓ ଆନ୍ଧ୍ର ପକ୍ଷରୁ ପ୍ରତିନିଧି ଦଳ ମଧ୍ୟ ଲଣ୍ଡନ ଯାତ୍ରା କରିଥିଲେ । ଓଡ଼ିଆମାନଙ୍କ ପକ୍ଷରୁ ପାରଳାଖେମୁଣ୍ଡି ମହାରାଜା କୃଷ୍ଣଚନ୍ଦ୍ର ଗଜପତି, ଖଲ୍ଲିକୋଟ ରାଜା ରାମଚନ୍ଦ୍ର ମର୍ଦ୍ଦରାଜ, ମିଃ ଲିଙ୍ଗରାଜ ପାଣିଗ୍ରାହୀ, ଆଡ଼ଭୋକେଟ ଶ୍ୟାମସୁନ୍ଦର ଗନ୍ତାୟତ ମିଃ. କେ.ଏସ୍. ନାଇଡୁ, ମିଃ ଜଗମୋହନ ପଟ୍ଟନାୟକ ଏବଂ ମିଃ ବି. ଦାସ୍ ଏବଂ ଆନ୍ଧ୍ର ପ୍ରତିନିଧି ଦଳରେ ସାର୍ କେ.ବି. ରେଡ଼ି ରାଓ ସାହେବ ଡବ୍ୟୁ. ଭି.ବି ରାମଲିଙ୍ଗମ୍ ମିଃ ଜି.ବି. ସୀତାପତି ମିଃ ପି.ନାରାୟଣ ରାଓ ମିଃ ଭି.ବି ନାରାୟଣ ରାଓ ଓ ମିଃ. ଏ.ଭି. ସୁବାରାଓ ଲଣ୍ଡନ ଯାତ୍ରା କରିଥିଲେ । ଓଡ଼ିଶାର ପ୍ରତିନିଧିଦଳ ତା ୦୩.୦୭.୩୩ ରେ ଏବଂ ଆନ୍ଧ୍ର ପ୍ରଦେଶ ଦଳ ତା ୧୦.୦୭.୧୯୩୩ରେ ଉକ୍ତ ସିଲେକ୍ଟ କମିଟି ସମକ୍ଷରେ ଯୁକ୍ତି, ସାକ୍ଷ୍ୟ ଓ ସ୍ମାରକପତ୍ର ପ୍ରଦାନ କରି ନିଜର ଦୃଢ଼ ଦାବୀ ଉପସ୍ଥାପିତ କରିଥିଲେ । ଉକ୍ତ ମିଳିତ ପାର୍ଲାମେଣ୍ଟାରୀ ସିଲେକ୍ଟ୍ କମିଟି ଉଭୟ ପ୍ରତିନିଧିଦଳର ଦାବୀ, ମାନ୍ଦ୍ରାଜ ସରକାର ଓ ଭାରତ ସରକାରଙ୍କର ଅଭିମତକୁ ବିଚାରକୁ ନେଇ ଜୟପୁର ଓ ପାରଳାଖେମୁଣ୍ଡି ଜମିଦାରୀର କେତେକାଂଶ ଓ ପାରଳାଖେମୁଣ୍ଡି ମାଳ ଅଞ୍ଚଳକୁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶରେ ଅନ୍ତର୍ଭୁକ୍ତ କରିବା ପାଇଁ ନିଷ୍ପତ୍ତି ଘୋଷଣା କରିଥିଲେ ଏବଂ ବ୍ରହ୍ମପୁର ସହରକୁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶରୁ ବାଦ ଦେବା ପାଇଁ ଆନ୍ଧ୍ର ପ୍ରତିନିଧି ଦଳରୁ ଦାବୀକୁ ଅଗ୍ରାହ୍ୟ କରିଦେଇଥିଲେ ।

ମାନ୍ଦ୍ରାଜ, ମଧ୍ୟପ୍ରଦେଶ ଓ ବିହାର-ଓଡ଼ିଶାର ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ନେଇ ନୂତନ ଓଡ଼ିଶା ପ୍ରଦେଶ ଏପ୍ରିଲ

୧, ୧୯୩୨ ରେ ଗଠିତ ହୋଇଥିଲା । ଏହି ନୂତନ ପ୍ରଦେଶ ଗଠନର ଅବ୍ୟବହିତ ପୂର୍ବରୁ ଓଡ଼ିଶା ତଥା ଓଡ଼ିଆ ଜାତିର ସର୍ବାଙ୍ଗୀନ ଉନ୍ନତି ଓ ସାଫଲ୍ୟ କାମନା କରି ତତ୍‌କାଳୀନ ବ୍ରିଟିଶ୍ ସମ୍ରାଟ ମହାମାନ୍ୟ ଅଷ୍ଟମ ଏଡ୍‌ଓ୍ୱାର୍ଡ଼ ଶୁଭେଚ୍ଛା ବାର୍ତ୍ତା ଦେଇ କହିଥିଲେ – 'ବହୁ ବର୍ଷ ଧରି ଅନ୍ୟ ଶାସନାଧୀନରେ ଥିବା ଓଡ଼ିଆ ଭାଷୀଅଞ୍ଚଳର ଏକତ୍ରିକରଣ ପାଇଁ ଓଡ଼ିଆ ଲୋକଙ୍କର ଯେଉଁ ଚିର ଆକାଂକ୍ଷିତ ଅଭିଳାଷ ଥିଲା ତାହା ଆଜି ପୂରଣ ହୋଇଛି । ମୋର ଆଶା ଓ ବିଶ୍ୱାସ ଏହି ନୂତନ ପ୍ରଦେଶଟି ତା'ର ଗୌରବମୟ ଅତୀତ ଘଟଣାବଳୀରୁ ପ୍ରେରଣା ପାଇ ପବିତ୍ର ଓଡ଼ିଶାର ଐତିହାସିକ ପରମ୍ପରାକୁ ବିଦାୟ ରଖିବାରେ ସମର୍ଥ ହେବ ।'

ଏହି ବାର୍ତ୍ତାରେ କିନ୍ତୁ କଥା ଅକୁହା ହୋଇ ରହିଗଲା । ସତେ ଯେପରି ଆଉ ସବୁ ପ୍ରଦେଶରେ ଓଡ଼ିଆ ଅଞ୍ଚଳ ଆଉ ନଥିଲା । ଯାହା ଥିଲା ସବୁ ଆସିଗଲା । ମେଦିନୀପୁର, ସିଂହଭୂମ, ଫୁଲଝର, ତରଳ । ପ୍ରଭୃତି ଚାରିଆଡ଼କୁ ଚାହିଁଲେ କେବଳ ସେମାନଙ୍କ ଆଖିରେ ଲୁହ । ଆମେ ଖାଲି ଭାବପ୍ରବଣ ନହୋଇ ଅନ୍ତର୍ଦୃଷ୍ଟିରେ ଦେଖିଲେ ଏହି ସବୁ ବିଛିନ୍ନ ଓଡ଼ିଆ ଅଞ୍ଚଳର ଅବସ୍ଥା ଏବେ ବି ସଙ୍କଟାପନ୍ନ ।

ଏହି ଦିବସଟି ଓଡ଼ିଶା ଇତିହାସ କାହିଁକି ଇଂରେଜ ଶାସନ ଇତିହାସରେ ମଧ୍ୟ ଲିପିବଦ୍ଧ ହୋଇ ରହିବ । ସାର୍ ଜନ୍ ହବାକ୍, ଯେକି ଓଡ଼ିଶାର ପ୍ରଥମ ବଡ଼ଲାଟ୍ ହେଲେ ସେ ପୂର୍ବରୁ ଓଡ଼ିଶାର କମିଶନର ଥିଲେ । ସେ ବ୍ୟାଙ୍କ ଇନ୍‌କ୍ୱାରୀ କମିଟିର ସଭାପତି ରୂପେ ଓଡ଼ିଶା ଲୋକଙ୍କର ଉକ୍‌ଟ ଦାରିଦ୍ର୍ୟ, ଭୀଷଣ ଋଣଭାର ଓ ଶୋଚନୀୟ ଅବସ୍ଥାର ଚିତ୍ର ତାଙ୍କ ରିପୋର୍ଟରେ ପୂର୍ବରୁ ଉଲ୍ଲେଖ କରିଥିଲେ । ତେଣୁ ତାଙ୍କର ଓଡ଼ିଶା ସଂଗେ ପରିଚୟ ଟିକିଏ ନିବିଡ଼ ଥିବାରୁ ଲୋକମାନେ ଆଶାନ୍ୱିତ ହେବା ଏବଂ ସେ ଏହାର ପ୍ରତିବିଧାନ କରିବେ ବୋଲି ଭାବିବା ସ୍ୱାଭାବିକ । ବାସ୍ତବିକ ଉକ୍‌ଟ ଦୁଃଖକୁ ଲୋକ ଯେ ଅପୂର୍ବ ସୁଖ ରୂପେ ଚିତ୍ର କରିପାରେ, ଅଙ୍ଗଚ୍ଛେଦକୁ ଲୋକ ଯେ ଅବୟବ ପ୍ରାପ୍ତି ବୋଲି ଜ୍ଞାନ କରିପାରେ ଏ ବୈଚିତ୍ର୍ୟ ଇଂରେଜ ବର୍ଷର ଅପ୍ରେଲ ପହିଲା ଛଡ଼ା ଅନ୍ୟକୌଣସି ଦିବସରେ ସଂଭବପର ହୋଇପାରନ୍ତା ନାହିଁ । ସେଇଥିପାଇଁ ବୋଧ ହୁଏ ଘଟଣାଚକ୍ରରେ ବା ଦୈବୀ ରଂଗିତରେ ଇଂରେଜମାନେ ଏପ୍ରିଲ ପହିଲାକୁ ବାଛିନେଲେ ।

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନବେଳେ ଦୁଇଜଣ ବିରାଟ ବ୍ୟକ୍ତିଙ୍କର ସ୍ମୃତି ସ୍ୱତଃ ମନକୁ ଆନ୍ଦୋଳିତ କରେ । ସେମାନେ ହେଲେ ଉତ୍କଳଗୌରବ ମଧୁସୂଦନ ଦାସ ଏବଂ ଉତ୍କଳମଣି ଗୋପବନ୍ଧୁ ଦାସ । ମଧୁବାବୁ ୧୯୦୩ ରୁ ୧୯୨୦ ପର୍ଯ୍ୟନ୍ତ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକ ଶାସନାଧୀନ କରିବା ପାଇଁ ନେତୃତ୍ୱ ନେଇଥିଲେ । ୧୯୨୦ରେ ନାଗପୁର ଅଧିବେଶନରେ ଭାଷା ସୂତ୍ରରେ ପ୍ରଦେଶ ଗଠନ ନିଷ୍ପତ୍ତି ହେବାପରେ ଓଡ଼ିଆଙ୍କର ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଦାବୀ ଦୃଢ଼ତର ହୋଇଥିଲା । ଏହାର ନେତୃତ୍ୱ ନେଇଥିଲେ ଉତ୍କଳମଣି ଗୋପବନ୍ଧୁ ଦାସ । ମଧୁବାବୁଙ୍କର ବଳିଷ୍ଠ ସମର୍ଥନ ତାଙ୍କ ପୃଷ୍ଠ ଦେଶରେ ଥିଲା । ବିଧିର ବିଧାନ ବିଚିତ୍ର । ସାଇମନ୍ କମିଶନଙ୍କର ଅଟ୍‌ଲୀ ସବ୍‌କମିଟି ଓଡ଼ିଶାକୁ ସ୍ୱତନ୍ତ୍ର ପ୍ରଦେଶ କରିବା ବେଳକୁ ଗୋପବନ୍ଧୁ ଇହଧାମରେ ନଥିଲେ ଏବଂ ଓଡ଼ନେଲ କମିଟି ସ୍ୱତନ୍ତ୍ର ଉତ୍କଳ ପ୍ରଦେଶର ସୀମା ନିର୍ଦ୍ଧାରଣ କରିବା ବେଳକୁ ମଧୁବାବୁ ବାର୍ଦ୍ଧକ୍ୟଯୋଗୁଁ ସକ୍ରିୟ ରାଜନୀତିଠାରୁ ଦୂରେଇ ଯାଇଥିଲେ । କିନ୍ତୁ ୧୯୩୪ରେ ତାଙ୍କର ମୃତ୍ୟୁବରଣ ପୂର୍ବରୁ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ହେବବୋଲି ସେ ଜାଣିଥିଲେ । ଓଡ଼ନେଲ କମିଟି ମଧରେ ସାକ୍ଷ୍ୟ ପ୍ରଦାନର ଗୁରୁଦାୟିତ୍ୱ ସତ୍ୟବାଦୀ ଗୋଷ୍ଠୀର ପଣ୍ଡିତ ନୀଳକଣ୍ଠ ଦାସ ଏବଂ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ଉପରେ ନ୍ୟସ୍ତ ହୋଇଥିଲା । ସେମାନଙ୍କୁ ସାହାଯ୍ୟ କରିଥିଲେ ପାରଳାଖେମୁଣ୍ଡିର ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଦେବ, ଜୟପୁରର ମହାରାଜା ସାର୍ ବିକ୍ରମଦେବ ବର୍ମା, ଯଦୁମଣି ମଙ୍ଗରାଜ ଏବଂ ଗଂଜାମର ଶଶିଭୂଷଣ ରଥ, ହରିହର ମିଶ୍ର ଏବଂ ନିରନ ପଟ୍ଟନାୟକ ।

ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବା ବେଳକୁ ବିହାର–ଓଡ଼ିଶା ପ୍ରଦେଶରେ ଓଡ଼ିଶା ଡ଼ିଭିଜନରେ ୫ଟି ପୁରୁଣା ଜିଲ୍ଲା ଯଥା କଟକ, ପୁରୀ, ବାଲେଶ୍ୱର, ଅନୁଗୁଳ ଓ ସମ୍ବଲପୁରକୁ ଭଙ୍ଗାଯାଇ ୬ଟି ନୂତନ ଜିଲ୍ଲା କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁର, ଗାମ ଓ କୋରାପୁଟ ଗଠନ କରାଗଲା । ନବଗଠିତ ଏହି ପ୍ରଦେଶର କ୍ଷେତ୍ରଫଳ ହେଲା ୩୨, ୬୯୫ ବର୍ଗ ମାଇଲ ଓ ଲୋକସଂଖ୍ୟା ଥିଲା ୮୦ ଲକ୍ଷ ୪୩ ହଜାର ୬୮୧ । ଏହାପରେ ୧୯୪୭ ଓ ୧୯୪୯ ମସିହାରେ ପୂର୍ବତନ ଦେଶୀୟ ରାଜ୍ୟଗୁଡ଼ିକର ଓଡ଼ିଶା ପ୍ରଦେଶ ସହିତ ମିଶ୍ରଣ ଘଟି ଏହାର ଜିଲ୍ଲା ସଂଖ୍ୟା ତେରକୁ ବୃଦ୍ଧି ପାଇଥିଲା । ଏହାର କ୍ଷେତ୍ର

ଫଳ ୧୫୫, ୭୦୭ ବର୍ଗ କିଲୋମିଟର ଏବଂ ଲୋକସଂଖ୍ୟା ୨ କୋଟି ୨୩ ଲକ୍ଷ ୭୦ ହଜାର ୨୭୨ ହେଲା । ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଶାସନ କାଳରେ ୧୯୯୩ ମସିହାରେ ଜିଲ୍ଲା ସଂଖ୍ୟା ୧୩ ରୁ ୩୦ କୁ ବୃଦ୍ଧି ପାଇଥିଲା ।

ନୂତନ ଉତ୍କଳ ପ୍ରଦେଶର ପ୍ରଥମ ଲାଟ୍ ସାର୍ ଜନ୍ ଅଷ୍ଟିନ୍ ହବାକ୍ ପ୍ରାୟ ଏକବର୍ଷ ପର୍ଯ୍ୟନ୍ତ ଲାଟ୍ ଶାସନ ଚାଲୁ ରଖିଥିଲେ । ଅବଶ୍ୟ ତାଙ୍କୁ ପରାମର୍ଶ ଦେବା ପାଇଁ ଗୋଟିଏ ଉପଦେଷ୍ଟା ପରିଷଦ ଥିଲା । ସେତେବେଳେ ଏହାର ବୈଠକ ପୁରୀଠାରେ ବସୁଥିଲା । ସେତେବେଳର କଟକ ସିଟି ହସ୍ପିଟାଲରେ ସଚିବାଳୟର କାର୍ଯ୍ୟ ଆରମ୍ଭ ହୋଇଥିଲା । ଏଥିରେ ଜଣେ ଚିଫ୍ ସେକ୍ରେଟେରୀ, ୪ ଜଣ ସେକ୍ରେଟାରୀ, ଜଣେ ଅଣ୍ଡର ସେକ୍ରେଟାରୀ ଓ ୪ ଜଣ ଆସିଷ୍ଟାଣ୍ଟ ସେକେଟ୍ରାରୀ କାର୍ଯ୍ୟ କରୁଥିଲେ । ସରକାରଙ୍କର ବଜେଟ୍ ଥିଲା ୧ ଲକ୍ଷ ୮୭ ହଜାର ଟଙ୍କା ।

୧୯୩୫ ଭାରତ ଶାସନ ଆଇନ ଅନୁସାରେ ୧୯୩୬ ମସିହା ଶେଷ ଆଡ଼କୁ ନିର୍ବାଚନ ଆରମ୍ଭ ହେଲା । ୧୯୩୭ ମସିହା ଜାନୁଆରୀ ୧୮ରୁ ୨୩ ମଧ୍ୟରେ ଭୋଟ ଗ୍ରହଣ କରାଗଲା । ସେତେବେଳେ ଲାଟ ସଭା ସଦସ୍ୟ ସଂଖ୍ୟା ଥିଲା ୬୦ । ସେଥିରୁ ୫୬ ଜଣ ନିର୍ବାଚିତ ଓ ୪ ଜଣ ମନୋନୀତ ସଦସ୍ୟ । ମୋଟ ଭୋଟର ସଂଖ୍ୟା ଥିଲା ୫ ଲକ୍ଷ ୨୦ ହଜାର ୫୮୪ । ୧୯୩୭ ମସିହା ମାର୍ଚ୍ଚ ୨୪ ତାରିଖରେ ମାନ୍ୟବର ଲାଟ ମନ୍ତ୍ରୀପରିଷଦ ଗଠନ ପାଇଁ ସଂଖ୍ୟା ଗରିଷ୍ଠ କଂଗ୍ରେସ ଦଳର ନେତାଙ୍କୁ ନିମନ୍ତ୍ରଣ ଜଣାଇଲେ । କିନ୍ତୁ ପରେ ନିଜର ସ୍ୱତନ୍ତ୍ର କ୍ଷମତା ବଳରେ ମନା କରିଦେଲେ । ଲାଟ ସାହେବଙ୍କର ଆହ୍ୱାନକ୍ରମେ ପାରଳାଖେମୁଣ୍ଡି ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ, ମାନ୍ଧାତା ଗୋରାଚାନ୍ଦ ପଟ୍ଟନାୟକ ଓ ଲତିଫୁର ରହେମାନଙ୍କୁ ନେଇ ୧୯୩୭ ମସିହା ଏପ୍ରିଲ ପହିଲା ଦିନ ଏକ ମନ୍ତ୍ରିମଣ୍ଡଳ ଗଢିଲେ, ଯାହା ଖୁବ୍ କ୍ଷଣସ୍ଥାୟୀ ଥିଲା । ତତ୍କାଳୀନ ବଡ଼ଲାଟ ଲିନ୍‌ଲିଥ୍‌ଗୋଙ୍କ ପ୍ରତିଶ୍ରୁତି ମୁତାବକ ମନ୍ତ୍ରୀମାନଙ୍କ ପରାମର୍ଶକ୍ରମେ ପ୍ରାଦେଶିକ ଲାଟମାନେ ସମସ୍ତ କାର୍ଯ୍ୟ କରୁଥିଲେ, ଯାହାକି ପରବର୍ତ୍ତୀ ଅବସ୍ଥାରେ ରାଜ୍ୟମାନଙ୍କ ପାଇଁ ଲାଗୁ କରାଗଲା । ଏହି ପରିପ୍ରେକ୍ଷୀରେ ୧୯୩୭ ମସିହା ଜୁଲାଇ ୧୯ ତାରିଖରେ ଶ୍ରୀ ବିଶ୍ୱନାଥ ଦାଶଙ୍କର ନେତୃତ୍ୱରେ ପ୍ରଥମ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠିତ ହେଲା । ସେ ଘରୋଇ ଓ ଅର୍ଥ ବିଭାଗ ଦାୟିତ୍ୱରେ ରହିଲେ ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ ରାଜସ୍ୱ ପୂର୍ତ୍ତ ଓ ବିକାଶ ବିଭାଗ, ଶ୍ରୀ ବୋଧିରାମ ଦୁବେ ଶିକ୍ଷା, ଆଇନ ଓ ସ୍ୱାୟତ୍ତଶାସନ ମନ୍ତ୍ରୀ ରହିଲେ । ସେମାନଙ୍କୁ ସାହାଯ୍ୟ କରିବା ପାଇଁ ଶ୍ରୀ ଯଦୁମଣି ମଙ୍ଗରାଜ, ଶ୍ରୀ ଜଗନ୍ନାଥ ମିଶ୍ର, ଶ୍ରୀ ରାଜକୃଷ୍ଣ ବୋଷ ଓ ଶ୍ରୀ ରାଧାକୃଷ୍ଣ ବିଶ୍ୱାସରାୟଙ୍କୁ ପାର୍ଲାମେଣ୍ଟାରୀ ସେକ୍ରେଟାରୀ ରୂପେ ନିଯୁକ୍ତି ଦିଆଯାଇଥିଲା । ଓଡ଼ିଶା ବିଧାନ ସଭାର ପ୍ରଥମ ଅଧିବେଶନ ଓ ବାଚସ୍ପତି ନିର୍ବାଚନ ୧୯୩୭ ମସିହା ଅଗଷ୍ଟ ୩୦ ତାରିଖ ଦିନ କଟକର ରେଭେନ୍ସା କଲେଜ ହଲ୍‌ରେ ଆରମ୍ଭ ହୋଇଥିଲା । ସର୍ବସମ୍ମତିକ୍ରମେ ମୁକୁନ୍ଦ ପ୍ରସାଦ ଦାସ ବାଚସ୍ପତି ଓ ଶ୍ରୀ ନନ୍ଦକିଶୋର ଦାସ ଉପବାଚସ୍ପତି ନିର୍ବାଚନ ହୋଇଥିଲେ । ଏହି ମନ୍ତ୍ରିମଣ୍ଡଳ ପ୍ରାୟ ୨ ବର୍ଷ କାର୍ଯ୍ୟ କରି ବହୁ ଲୋକହିତକର କାର୍ଯ୍ୟ ଓ ଲୋକପ୍ରିୟତା ହାସଲ କରିଥିଲା ।

ଦୀର୍ଘ ୮୦ ବର୍ଷ ପରେ ମଧୁବାବୁଙ୍କ ଛିନ୍ନମସ୍ତା ଉତ୍କଳ ଏବେ ବି ଅସଂପୂର୍ଣ୍ଣ । ଆମେ ଆହୁରି ଆଗକୁ ଯିବାକୁ ପଡ଼ିବ । ଉତ୍କଳ ଦିବସ ଜାକଜମକରେ ହେଉ, ମହୋତ୍ସବ ହେଉ ଛଉନାଚ, ଘୋଡ଼ାନାଚ, ଦଣ୍ଡନାଚ ସମସ୍ତେ ଉପଭୋଗ କରନ୍ତୁ । କିନ୍ତୁ ଯେଉଁ ଓଡ଼ିଆମାନେ ବିଚ୍ଛିନ୍ନାଞ୍ଚଳରେ ରହିଗଲେ ସେମାନଙ୍କ କଥା ସଂପୂର୍ଣ୍ଣ ଭୁଲିଗଲେ ହେବନାହିଁ । ସେଥିପାଇଁ ବିଚ୍ଛିନ୍ନାଞ୍ଚଳର ଓଡ଼ିଆ ଭାଷା ଓ ଶିକ୍ଷାର ସୁରକ୍ଷା ଲାଗି ସରକାରୀ ଓ ବେସରକାରୀ ସ୍ତରରେ ସମସ୍ତ ଉଦ୍ୟମ କରାଯାଉଛି । ସେଥିପାଇଁ ସ୍ୱତନ୍ତ୍ର ପାଣ୍ଠି ଗଠନ କରି ତାର ଏକ ଅଂଶ ହିସାବରେ ବିଲୁପ୍ତ ଭାଗବତ, ପୁରାଣ, ଓଷା ବ୍ରତ କଥା ସବୁ ମୁଦ୍ରଣ କରି ସେହି ଅଞ୍ଚଳରେ ବଣ୍ଟନ କରାଗଲେ, ସର୍ବପୁରାତନ ସହର କଟକ ବା ରାଜଧାନୀରେ ଗୋଟିଏ ଚିତ୍ରଶାଳା ନିର୍ମାଣ କରି ଦେଶ ମିଶ୍ରଣ ଆନ୍ଦୋଳନର ପ୍ରତ୍ୟୁଷଯଶା ଦଶରଥଙ୍କଠାରୁ ଆରମ୍ଭ କରି ଗୁଣ୍ଡୁଚି ମୃଷା ପର୍ଯ୍ୟନ୍ତ ନେତା ଓ କର୍ମୀମାନଙ୍କର ଚିତ୍ରପଟ ଓ ଜୀବନୀ ସଂରକ୍ଷିତ କରାଯାଇ ଜନସାଧାରଣଙ୍କ ପାଇଁ ଉନ୍ମୁକ୍ତ ରଖାଗଲେ, ଓଡ଼ିଶାର ଅର୍ଥନୈତିକ, ରାଜନୈତିକ, ସାଂସ୍କୃତିକ ଦୃଶ୍ୟପଟର ପୂର୍ଣ୍ଣାଙ୍ଗ ଇତିହାସକୁ ଏକ ପୂର୍ଣ୍ଣାଙ୍ଗ ଭାଷାକୋଷ ମାଧ୍ୟମରେ ସାଧାରଣ ଲୋକଙ୍କର ଅବଗତି ନିମନ୍ତେ ପ୍ରସ୍ତୁତ କରିବାର ପ୍ରୟାସ କରିପାରିଲେ ସମସ୍ତ ଓଡ଼ିଶାବାସୀଙ୍କୁ ଉଦ୍‌ବୁଦ୍ଧ କରାଯାଇପାରନ୍ତା ।

◆◆◆

ସାଧୁତା, ନିର୍ମଳତା, ଜାତୀୟତା, ଏକତା, ଉଦାରତାର ସହିତ ସମସ୍ତଙ୍କୁ ସାଙ୍ଗରେ ନେଇ ଆମକୁ ଏ ରାଜ୍ୟର ଅଗ୍ରଗତିରେ ସାଂଗଠନିକ ଓ ପ୍ରଶାସନିକ କ୍ଷେତ୍ରରେ ପ୍ରେରଣା ମିଳୁ । ଏହା ହିଁ ଆଜିର ଆହ୍ୱାନ ।

କିଛି ପଥ ଅତିକ୍ରାନ୍ତ । ମାତ୍ର ବହୁ ପଥ ଅତିକ୍ରମ କରିବାକୁ ବାକି ଅଛି । ଓଡ଼ିଶାର ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ବଳିଷ୍ଠ ନେତୃତ୍ୱ ଓ ଦିଗ୍‌ଦର୍ଶନର ଆଧାରରେ ଦାରିଦ୍ର୍ୟ ଓ ଅନଗ୍ରସରତା କବଳରୁ ମୁକ୍ତ କରି ଓଡ଼ିଶାକୁ ପ୍ରଗତି ଓ ସମୃଦ୍ଧିର ଏକ ନୂତନ ଦିଗନ୍ତ ଆଡ଼କୁ ଆଗେଇ ନେବା ଦିଗରେ 'ଓଡ଼ିଶା ଦିବସ' ଓଡ଼ିଶାବାସୀଙ୍କ ପାଇଁ ଏକ ସଂକଳ୍ପର ଦିବସ ହେଉ ଏହା ହିଁ କାମନା । 'ସ୍ୱତନ୍ତ୍ର ଉତ୍କଳ' ଦୀର୍ଘ ଜିବୀ ହେଉ ।

୬୪ଏ, କଳ୍ପନା ଏରିଆ, ଭୁବନେଶ୍ୱର

# କଳିଙ୍ଗର ବରପୁତ୍ର

**ମହେଶ୍ୱର ବରାଡ**

କଳିଙ୍ଗ ପୁତ୍ର ପ୍ରବାଦ ପୁରୁଷ ବିଜୁବାବୁ ହେ ମହାନ୍
ତୁମରି ଜନ୍ମ ଶତବାର୍ଷିକୀରେ ଜଣାଉ ପ୍ରଣତି ଘେନ ।

ତୁମେ ସ୍ୱାଧୀନ ହେ ଭାରତବର୍ଷର ଅଗ୍ରୀମ ସନ୍ତାନ
ଭୂମିରୁ ଆକାଶ ବିମାନ ଉଡାଣ ଅଗ୍ରଣୀ ପ୍ରାକ୍ତନ ।

ଗାଁକୁ କାମ, ମା'କୁ ସମ୍ମାନ ତୁମ ଜୀବନର ମନ୍ତ୍ର
ପଞ୍ଚାୟତ ଜନେ ପହଞ୍ଚାଇ ଅଛ ଶାସନର ଲୋକତନ୍ତ୍ର ।

ମହାଭାରତୀୟ ଚିନ୍ତା ଚେତନା ତୁମରି କାର୍ଯ୍ୟ କୀର୍ତ୍ତି
ନିଖିଳ ଉତ୍କଳ କଳିଙ୍ଗ ଭୂମିର ଛାପିଛ ବୀରତ୍ୱ ଭିତ୍ତି ।

ଶକ୍ତି ସାହସ ସ୍ୱାଭିମାନ ଦେଇ ଆଣିଛ ବିଜୟ ବାର୍ତ୍ତା ।
ପ୍ରଗତି ବିକାଶ ନବ ଜାଗୃତିର ଅଟ ତୁମେ ସିନା କର୍ତ୍ତା ।

ଦିଗ୍ ବିଜୟର ବୈଜୟନ୍ତୀ ଉଡେ ଇତିହାସେ ଫରଫର
ହେ ଚିର ଅମର ଆଜି ତୁମ ନାମେ ଲିପିବଦ୍ଧ ସ୍ୱର୍ଣ୍ଣାକ୍ଷର ।

ନୂଆ ଓଡ଼ିଶାର ନବନିର୍ମାତା ହେ କୁଶଳୀ ବିଶ୍ୱକର୍ମା
ତୁମକୁ ଝୁରୁଛି ଆଜି ଏହି ମାଟି ବାଲିଦ୍ୱୀପ ଆଉ ବର୍ମା ।

ଜନ୍ମ ହୁଅ ତୁମେ ପୁଣି ଆଜି ଅଖଣ୍ଡ ଭାରତ ଭୂମେ
ଘୁମୁସର ନୂଆ ଇତିହାସ ଜାଳେ ପ୍ରଦୀପ ତୁମରି ନାମେ ।

ଗ୍ରାମ: ଡାନିଘର
ମର୍ଦ୍ଦକୋଟ, ଭାୟା–କୋଦଳା
ଜିଲ୍ଲା– ଗଞ୍ଜାମ



# ଶାସ୍ତ୍ରୀୟ ଓଡ଼ିଆର ସ୍ୱପ୍ନ ଓ ସମ୍ଭାବନା

ଡକ୍ଟର ସୁବ୍ରତ କୁମାର ପୃଷ୍ଟି

ମାନବ ସଭ୍ୟତାରେ ଏକ ଉନ୍ନତ ଜାତିର ପରିଚୟ ହେଉଛି ସେହି ଜାତିର ଅଧିବାସୀଙ୍କ ମୁଖରେ ଉଚ୍ଚାରିତ ହେଉଥିବା ଭାଷା। ଆମେ ସେହି ଜାତିକୁ ସେତେ ଉନ୍ନତ ବୋଲି କହିବା, ଯେଉଁ ଜାତିର ଭାଷା ସମାଜର ସବୁ ପ୍ରକାର ଆବଶ୍ୟକତା ପୂରଣ କରିବାରେ ସାହାଯ୍ୟ କରିଥାଏ। ଭାଷା ମଧ୍ୟ ମଣିଷ ଭଳି ଗତିଶୀଳ, ଚଳଚଞ୍ଚଳ। ପ୍ରବହମାନ ନଦୀଧାରା ଭଳି ସ୍ୱଚ୍ଛ, ମନୋହର ଓ ଲାଳିତ୍ୟପୂର୍ଣ୍ଣ। ପୁଣି ଭାଷାକୁ ଜୀବିତ ରଖେ ଏହାର ବ୍ୟାବହାରିକ ଦିଗ। ଅର୍ଥାତ୍ ଗୋଟିଏ ଭାଷାକୁ ଯେତେ ବ୍ୟବହାର କରାଯିବ ସେ ଭାଷା ସେତେ ସ୍ୱଚ୍ଛ, ସତେଜ ଓ ଦୀର୍ଘଜୀବୀ ହୋଇ ରହିବ।

କେବଳ ଉଚ୍ଚାରଣ ନୁହେଁ, ଆଚରଣରେ ମଧ୍ୟ ଭାଷା ବଞ୍ଚିଥାଏ। ମଣିଷ ସମାଜର ଦୈନନ୍ଦିନ ଆବଶ୍ୟକତା ଯଥା– ବିଜ୍ଞାନ, କାରିଗରୀ, ଚିକିତ୍ସା, ନ୍ୟାୟ, ପ୍ରଶାସନ କ୍ଷେତ୍ର ହିଁ ଏହି ଆଚରଣର ଗୋଟିଏ ଗୋଟିଏ ବିନ୍ଦୁ। ଯଦି ଆଚରଣରେ ଭାଷାର ପ୍ରୟୋଗ ନ ରହେ, ତେବେ ସେ ଭାଷା ଯେତେ ଉନ୍ନତ ହୋଇଥିଲେ ମଧ୍ୟ ତାହାର ମୃତ୍ୟୁ ଅବଶ୍ୟମ୍ଭାବୀ। ପୁଣି ଯଦି ଗୋଟିଏ ଭାଷାଭାଷୀଙ୍କ ମଧ୍ୟରେ ସ୍ୱାଭିମାନର ବୀଜ ଅଙ୍କୁରିତ ହୋଇଉଠେ, ତେବେ ସେ ଭାଷା ମୃତ ହୋଇ ମଧ୍ୟ ପୁନଃ ଜାଗରିତ ହୋଇ ଉଠିବ। ଦୃଷ୍ଟାନ୍ତ ରୂପେ ବିଶ୍ୱର ଦୁଇ ପ୍ରାଚୀନ ଭାଷା– ସଂସ୍କୃତ ଓ ହିବ୍ରୁକୁ ନେଇପାରିବା। ବୈଦିକ କାଳରୁ ଆରମ୍ଭ ହୋଇଥିବା ସଂସ୍କୃତ ଭାଷା ପ୍ରଥମ ଶତାବ୍ଦୀ ବେଳକୁ କୁଶାଣ ଶାସନ କାଳରେ ବୌଦ୍ଧଧର୍ମର ପ୍ରଚାର ଓ ପ୍ରସାରର ଭାଷା ଭାବରେ ଗୃହୀତ ହେଲା। ମାତ୍ର ଚତୁର୍ଥ ଶତାବ୍ଦୀ ବେଳକୁ ଗୁପ୍ତବଂଶୀ ଶାସକଙ୍କ ପ୍ରୋତ୍ସାହନରେ ଏହାର ସାଂସ୍କୃତିକ ବିକାଶ ଘଟି ଚିକିତ୍ସା, ବିଜ୍ଞାନ, ଗଣିତ, ଭୂଗୋଳ, ସାହିତ୍ୟ, ସଂସ୍କୃତି, କାରିଗରୀ ବିଦ୍ୟା, ନ୍ୟାୟ, ପ୍ରଶାସନରେ ବହୁଳ ବ୍ୟବହାର ଘଟିଥିଲା। ପରବର୍ତ୍ତୀ କାଳରେ ଶାସନଗତ ବିଶୃଙ୍ଖଳାର ସୁଯୋଗ ନେଇ ବିଦେଶୀଙ୍କଦ୍ୱାରା ଦୀର୍ଘଦିନ ଧରି ଭାରତ ଶାସିତ ହେଲା। ଶାସନ କ୍ଷେତ୍ରରେ ପାର୍ଶୀ ଓ ଇଂରାଜୀ ଭାଷାର ବିପୁଳ ବ୍ୟବହାର ଆଜି ସଂସ୍କୃତ ଭାଷାର ଅସ୍ତିତ୍ୱକୁ ସଂକଟାପନ୍ନ ଅବସ୍ଥାରେ ପକାଇଛି।

ଠିକ୍ ସେହିପରି ହିବ୍ରୁ ଭାଷା। ପ୍ରାଚୀନ ବାଇବେଲ ଲେଖାଯାଇଥିବା ଏହିଭାଷା ଖ୍ରୀଷ୍ଟପୂର୍ବ ଏକାଦଶ ଶତାବ୍ଦୀ ବେଳକୁ ବିକଶିତ ହୋଇଥିଲେ ମଧ୍ୟ ପରବର୍ତ୍ତୀ କାଳରେ ବାରମ୍ବାର ବିଦେଶୀ ଆକ୍ରମଣର ଶିକାର ହେବାଦ୍ୱାରା ଏହା ସଂପୂର୍ଣ୍ଣ ଭାବରେ ଲୋପ ପାଇଯାଇଥିଲା। ମାତ୍ର ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଇହୁଦୀ ଜାତି ଏକତ୍ରୀକରଣ ଘଟିବାରୁ ନିଜ ପାଇଁ ଇସ୍ରାଏଲ୍ ନାମକ ନୂତନ ଦେଶ ଗଠନ କଲେ। ଏହାପରେ ଅତୀତର ସେହି ଗୌରବମୟ ମାତୃଭାଷା ହିବ୍ରୁକୁ ପୁନରୁଦ୍ଧାର କରିବାକୁ ଇହୁଦୀ ଜାତି ଆଗେଇ ଆସି ଏହାକୁ ନିଜର ରାଷ୍ଟ୍ରଭାଷା ଭାବେ ଗ୍ରହଣ କଲେ। ଏବେ ଏହାର ଲିପି କ୍ଷେତ୍ରରେ ସାମାନ୍ୟ ପରିବର୍ତ୍ତନ କରି ୧୯୨୬ ମସିହାରୁ ଆରବୀ ବଦଳରେ ରୋମାନ ଲିପିକୁ ଗ୍ରହଣ କରିନେଇଛନ୍ତି। ଅତୀତର ଏହି ସମୃଦ୍ଧ ଭାଷା ସଂପୂର୍ଣ୍ଣ ଲୋପ ପାଇଯାଇଥିଲା। ମାତ୍ର ଇହୁଦୀ ଜାତିଠାରେ ସ୍ୱାଭିମାନ ଜାଗରିତ ହେବାରୁ ବର୍ତ୍ତମାନ ତାହା ଜୀବନଲାଭ ସହିତ ଇସ୍ରାଏଲ୍ ଭଳି ପ୍ରାକୃତିକ ସମ୍ବଳହୀନ ଏକ ବାଲୁକାପୂର୍ଣ୍ଣ ଗରିବ ରାଷ୍ଟ୍ରକୁ ସମୃଦ୍ଧଶାଳୀ ରାଷ୍ଟ୍ର ଭାବେ ବିଶ୍ୱ ମାନ୍ୟତା ପ୍ରଦାନ କରିବାରେ ସହାୟକ ହୋଇଛି।

ଏହି ପରିପ୍ରେକ୍ଷୀରେ ଆଉ ଦୁଇଟି ଭାଷା ଗ୍ରୀକ୍ ଓ ଇଂରାଜୀକୁ ଦୃଷ୍ଟାନ୍ତ ରୂପେ ନିଆଯାଇପାରେ। ପୃଥିବୀ ଇତିହାସରେ ସମୃଦ୍ଧ ନଗର ଭାବେ ବିଖ୍ୟାତ ଛୋଟିଆ ଗ୍ରୀସ୍‌ଦେଶର ମାତୃଭାଷା 'ଗ୍ରୀକ୍'ରେ ହିଁ ବିଶ୍ୱର ଦୁଇ ପ୍ରାଚୀନ ମହାକାବ୍ୟ 'ଇଲିଆଡ୍' ଓ 'ଓଡ଼େଶୀ' ରଚିତ ହୋଇଥିଲା। ଦିନଥିଲା ଏହା କେବଳ ସମଗ୍ର ୟୁରୋପ ମହାଦେଶରେ ନୁହେଁ, ବରଂ ଆଲେକଜାଣ୍ଡାରଙ୍କ ଯୋଗୁଁ ଏହି ଭାଷା ଭାରତ ପର୍ଯ୍ୟନ୍ତ ବିସ୍ତୃତ ଥିଲା। ବାଇବେଲର ନିଉଟେଷ୍ଟାମେଣ୍ଟ ଏହି ଭାଷାରେ ଲିଖିତ। ତେବେ ଗ୍ରୀକ୍‌ମାନଙ୍କ ରାଜନୈତିକ କ୍ଷମତା ହ୍ରାସହେବା ସହିତ ସେମାନଙ୍କ ସାମ୍ରାଜ୍ୟ ଓ ଭାଷାର ସୀମା ମଧ୍ୟ ସଂକୁଚିତ ହୋଇଗଲା। ବର୍ତ୍ତମାନ ଗ୍ରୀକ୍‌ଭାଷା ଗ୍ରୀସ୍‌ଦେଶ ମଧ୍ୟରେ ସୀମାବଦ୍ଧ। ସେହିଭଳି ମଧ୍ୟ ଜର୍ମାନ୍ ଭାଷା ପରିବାରର ଇଂଲିଶ–ଫ୍ରିଜିଆନ୍ ଭାଷା ଅନ୍ତର୍ଭୁକ୍ତ ଇଂରାଜୀ ଭାଷା ଷୋଡ଼ଶ ଶତାବ୍ଦୀରୁ ବିକଶିତ ହେବା ଆରମ୍ଭ କରି ଏବେ ସମଗ୍ର ବିଶ୍ୱ ଭାଷା ହେବାରେ ଗୌରବ ଲାଭ କରିଛି।

ପ୍ରାଦେଶିକ ଭାଷା ମଧ୍ୟରେ ଆମ ପଡ଼ୋଶୀ ବଙ୍ଗଳା ଭାଷା ଏକ ଭିନ୍ନ ଉଦାହରଣ ସୃଷ୍ଟି କରିଛି। ତିନିଶହ ବର୍ଷ ତଳେ ବଙ୍ଗଳା ଭାଷାର ଅସ୍ତିତ୍ୱ ନ ଥିଲା। ଦୀର୍ଘ ଦିନର ମୁସଲମାନ ଶାସନ ଯୋଗୁଁ ତଥା ପଡ଼ୋଶୀ ଆସାମ ଓ ଓଡ଼ିଶାର ସୁଦୃଢ଼ ହିନ୍ଦୁ ଶାସନ ଯୋଗୁଁ ହୁଗୁଳିଠାରୁ କାଳାଦନ ନଦୀ ମଧ୍ୟସ୍ଥ ବିସ୍ତୀର୍ଣ୍ଣ ଭୂଖଣ୍ଡରେ ପାର୍ଶୀ, ଉର୍ଦ୍ଦୁ, ଓଡ଼ିଆ, ଅସମିୟା ମିଶା ବିକୃତ ବଙ୍ଗଳା ଭାଷା କଥିତ ହେଉଥିଲା। ବିଭିନ୍ନ ଅଞ୍ଚଳରେ ଭିନ୍ନଭିନ୍ନ ଢଙ୍ଗରେ ଏହାସବୁ ଉଚ୍ଚାରିତ ହେଉଥିଲା। ଯେମିତି ଢାକା, ସିଲହଟ, ଅଗରତାଲା, କୁଚବିହାର, ବର୍ଦ୍ଧମାନ, ହୁଗୁଳି, ମଇମନସିଂହ, ପୁରୁଲିଆ ଆଦି ଅଞ୍ଚଳର ଲୋକେ ଅନ୍ୟ ଅଞ୍ଚଳର କଥା କହିପାରୁ ନ ଥିଲେ କିମ୍ବା ବୁଝିପାରୁ ନ ଥିଲେ। ଏହି ଭାଷାଗୁଡ଼ିକ ଅନିର୍ଦ୍ଦିଷ୍ଟ ଭାବରେ ଘୂରି ବୁଲୁଥିଲା ନିଜନିଜ ଅଞ୍ଚଳରେ। ସେତେବେଳକୁ ଓଡ଼ିଆ ଓ ଆସାମ ଭାଷା ସମୃଦ୍ଧ ହୋଇ ସାରିଲେଣି। ବଙ୍ଗଳା କେବଳ କଥିତ ଭାଷା ରୂପେ ଆତ୍ମପରିଚୟ ଖୋଜିବାରେ ବ୍ୟସ୍ତ ଥିଲା। ଯଦି ଏହି ସମୟରେ ଅସମିୟା ଓ ଓଡ଼ିଆ ଭାଷା ବଙ୍ଗଳାର ଏହି ଉପଭାଷାଗୁଡ଼ିକୁ ପ୍ରଭାବିତ କରି ନିଜ ନିୟନ୍ତ୍ରଣରେ ରଖିପାରିଥାନ୍ତେ, ତେବେ ବଙ୍ଗଳା ଭାଷା ସୃଷ୍ଟି ହୋଇ ନ ଥାନ୍ତା। କିନ୍ତୁ ଇଂରେଜ ଉପନିବେଶ ସାମ୍ରାଜ୍ୟ କଲିକତାଠାରେ ସୃଷ୍ଟି ହେବାଦ୍ୱାରା ଏହି ନଗରୀରେ ଆତ୍ମପ୍ରକାଶ କଲା ଏକ ଶିକ୍ଷିତ, ମଧ୍ୟବିତ୍ତ ବଙ୍ଗାଳୀ ଗୋଷ୍ଠୀ। ଏମାନେ ନିଜ ପରିଚୟ ଖୋଜିବାକୁ ଯାଇ ନିଜକୁ ବଙ୍ଗାଳୀ ଓ ନିଜର ଭାଷା ବଙ୍ଗଳା ବୋଲି ଘୋଷଣା କଲେ। ଇଂରାଜୀ ସାହିତ୍ୟ ଢାଞ୍ଚାରେ ଏହି ଭାଷାରେ ସୃଷ୍ଟି କଲେ ସାହିତ୍ୟ। ଏହା ହେଲା ବଙ୍ଗ ଶିକ୍ଷାଦାନ ବ୍ୟବସ୍ଥାର ମାଧ୍ୟମ। ପ୍ରଥମ କରି ବଙ୍ଗଳା ସମାଜର କେନ୍ଦ୍ରବିନ୍ଦୁ କଲିକତାଠାରେ ସ୍ଥାପିତ ହୁଏ, ଯାହା ଆଡ଼କୁ ଆକର୍ଷିତ ହୋଇ ଆସନ୍ତି ତଥାକଥିତ ସେହି ଖେଚୁଡ଼ି ବଙ୍ଗ ଉପଭାଷାଗୁଡ଼ିକ। ଫଳରେ କଲିକତି ବଙ୍ଗଳା ଭାଷାର ମର୍ଯ୍ୟାଦା ବଢ଼ିଲା। ତଦନୁସାରେ ଆୟତନ ମଧ୍ୟ ବଢ଼ିଲା। ଯିଏ ଯେଉଁ ଅଞ୍ଚଳର ହୋଇଥାଉନା କାହିଁକି କଲିକତାର ମାନକ ବଙ୍ଗଳା ଭାଷାକୁ ସମ୍ମାନ ଦେବାକୁ ହେବ – ଏହି ଚିନ୍ତାଧାରାଦ୍ୱାରା ବଙ୍ଗଳା ଜାତିରେ ଯେଉଁ ସାମାଜିକ ଅଙ୍ଗୀକାରବଦ୍ଧତା ସୃଷ୍ଟି ହେଲା, ତଦ୍ୱାରା ସର୍ବଭାରତୀୟ ସ୍ତରରେ ସେମାନଙ୍କର ଆତ୍ମମର୍ଯ୍ୟାଦା ବୃଦ୍ଧି ହେବା ସହିତ ଏକ ସ୍ୱାଭିମାନୀ ଶିକ୍ଷିତ ଜାତି ଭାବରେ ନିଜର ନୂତନ ପରିଚୟ ସୃଷ୍ଟି କଲେ। ସେମାନଙ୍କୁ ବେଶି ଭାବପ୍ରବଣ କରି ଆହୁରି ମର୍ଯ୍ୟାଦାବନ୍ତ କରିଥିଲା ବଙ୍ଗଭଙ୍ଗ ଆନ୍ଦୋଳନ। ଏପରିକି ଧାର୍ମିକ ବିଭେଦରୁ ପୂର୍ବବଙ୍ଗ ବିଚ୍ଛିନ୍ନ ହୋଇଗଲେ ମଧ୍ୟ ବଙ୍ଗଳା ଭାଷା ପ୍ରତି ଅନୁରକ୍ତି କମି ନ ଥିଲା। ପୂର୍ବବଙ୍ଗ ମୁସଲମାନଙ୍କ ଓଠରୁ ଯେତେବେଳେ ବଙ୍ଗଳା ଭାଷାକୁ ଛଡ଼ାଇ ଉର୍ଦ୍ଦୁଭାଷା ପ୍ରଚଳନ ପାଇଁ ପାକିସ୍ତାନ ସରକାର ୨୧ ମାର୍ଚ୍ଚ ୧୯୪୮ରେ ଘୋଷଣା କଲେ, ଏହାର ଦୃଢ଼ ପ୍ରତିବାଦ କରି ମୃତ୍ୟୁକୁ ଆଲିଙ୍ଗନ କରିବାକୁ ସହସ୍ର ସଂଖ୍ୟାର ପୂର୍ବ ବଙ୍ଗବାସୀ ମୁସଲମାନ–ବଙ୍ଗାଳୀ ପଛାଇଲେ ନାହିଁ। ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଭାଷା ପ୍ରତି ବଙ୍ଗାଳୀଙ୍କର ଏହି ମୋହ ହିଁ ମାତ୍ର ଦୁଇଶହ ବର୍ଷ ଭିତରେ ବିଶ୍ୱର ପ୍ରମୁଖ ଭାଷା ମାନ୍ୟତା ପାଇପାରିବା ସହ ୨୧ ଫେବୃଆରୀ ୧୯୫୨ରେ ଢାକା ବିଶ୍ୱବିଦ୍ୟାଳୟ ପରିସର ମଧ୍ୟରେ ପାକିସ୍ତାନୀ ପୋଲିସଙ୍କ ଗୁଳିଚାଳନାରେ ମୃତ୍ୟୁଲାଭ କରିଥିବା ଶହୀଦଙ୍କ ପ୍ରତି ସମ୍ମାନ ଜଣାଇ ମାତୃଭାଷା ପାଇଁ ଜୀବନ ଦେଇଥିବା ମୁସଲମାନ ବଙ୍ଗବାସୀଙ୍କ ସ୍ମୃତିରେ ଏହି ଦିବସକୁ ବିଶ୍ୱ ମାତୃଭାଷା ଦିବସ ଭାବେ ପାଳନ କରିବାକୁ ଜାତିସଂଘ ଘୋଷଣା କରିଛି। ଏତିକିରେ ବଙ୍ଗଭାଷୀ ସନ୍ତୁଷ୍ଟ ହୋଇନାହାନ୍ତି। ବଙ୍ଗଳା ଭାଷାକୁ ଜାତିସଂଘର ଭାଷା ଭାବରେ ଗ୍ରହଣ କରାଯିବା ପାଇଁ ଦାବି କରିବା ସହ ଏହା କିପରି କାର୍ଯ୍ୟକାରୀ ହେବ, ସେହି ପ୍ରୟାସ

ଆରମ୍ଭ କଲେଣି ବଙ୍ଗଳା ଦେଶର ବଙ୍ଗଭାଷୀଗଣ। ଅଥଚ ଭାରତର ବଙ୍ଗବାସୀ ନିଜର ଏହି ଗୌରବକୁ ଗୁରୁତ୍ୱ ନ ଦେଇ ଇଂରାଜୀ ମୋହରେ ଆମଭଳି ପୀଡ଼ିତ ଅଛନ୍ତି।

ଆଉ ଏକ ସମୃଦ୍ଧ ଅର୍ଥାତ୍ ବର୍ତ୍ତମାନ ମୃତ ଅବସ୍ଥାରେ ପଡ଼ି ରହିଥିବା 'ମୈଥିଳୀ' ଭାଷା ସଂପର୍କରେ ଆଲୋଚନା କରାଯାଇପାରେ। ବର୍ତ୍ତମାନର ବିହାର ରାଜ୍ୟ ଅନ୍ତର୍ଭୁକ୍ତ ମିଥିଳା ଅଞ୍ଚଳରେ ବାସ କରୁଥିବା ଏହି ଜାତିର ମାତୃଭାଷା ହେଉଛି 'ମୈଥିଳୀ'। ଏହା ଓଡ଼ିଆ ଭାଷା ସହ ବହୁ ପରିମାଣରେ ମିଶିଯାଏ। ଚତୁର୍ଦ୍ଦଶ ଶତାବ୍ଦୀର ମୈଥିଳୀ କବି ଜ୍ୟୋତିରିଶ୍ୱର କବି ଶେଖରାଚାର୍ଯ୍ୟଙ୍କ 'ବର୍ଣ୍ଣ ରତ୍ନାକର' ଗ୍ରନ୍ଥରେ ଲିଖିତ ବହୁ ଶବ୍ଦ, ଯଥା– ହାଡ଼ି, ତେଲି, ଚମାର, ଏସନ, ମୁହଁ, ହାଥ, ଭଣ୍ଡାରୀ, ବାରିକ, ମୁଖିଆ, ମାଣ୍ଡି, ଚାଉଳ, ଖିରିସା, ବୋଡ଼ି, ପଣ, କାହାଣ, ପରିଡ଼ା, ରାଉଳ, ଢୋଲ, ଧାମସା, ଅନ୍ଧାର ଆଦି ଅସଂଖ୍ୟ ଶବ୍ଦ ଏବେ ମଧ୍ୟ ଓଡ଼ିଆଙ୍କ ଓଠରେ ଉଚ୍ଚାରିତ। ଏହି ଭାଷାର କବି ବିଦ୍ୟାପତିଙ୍କ ରଚିତ 'ପଦାବଳୀ' ସତେ ଯେପରି ଓଡ଼ିଆ ଭାଷାରେ ଲେଖାଯାଇଛି। ମୈଥିଳୀ ଓ ଓଡ଼ିଆ ଭାଷାର ଏହି ସମାନତା ପାଇଁ ବୋଧହୁଏ ମଧ୍ୟଯୁଗୀୟ ବହୁ ଓଡ଼ିଆ କବି ମୈଥିଳୀ ଓ ଭୋଜପୁରୀ ଭାଷାରେ ପ୍ରଚୁର କାବ୍ୟକବିତା ସୃଷ୍ଟି କରିଯାଇଛନ୍ତି। ଓଡ଼ିଆ ପରି ଏହାର ଅଛି ସମୃଦ୍ଧ ଭାଷା ଓ ସାହିତ୍ୟର ବିଭବ, ଥିଲା ମଧ୍ୟ ଏକ ସ୍ୱତନ୍ତ୍ର ଲିପି। ମଧ୍ୟଯୁଗୀୟ ମୁସଲମାନ ଶାସନ ପରେ ଏହାର ରାଜନୈତିକ ସୀମା ଲୋପ ପାଇଥିଲା। ଇଂରେଜ ଶାସନବେଳେ ଏହାର ସାମାଜିକ ଓ ସାଂସ୍କୃତିକ ସୀମା ଲୋପ ପାଇଗଲା। ଇଂରେଜ ଶାସନ ବେଳକୁ ନୂଆ ଚେହେରାରେ ଆତ୍ମପ୍ରକାଶ କରୁଥିବା ଅପରିଚିତ ବଙ୍ଗଳାଭାଷା ଏହାର ଲିପି ଅଧିକାର କରି ନିଜର ବୋଲି ଦାବି କଲେ। ଯାହା ଏବେ ବଙ୍ଗଳା ଲିପି ଭାବେ ଚିହ୍ନିତ। ଆମେ ଓଡ଼ିଆଏ ବର୍ତ୍ତମାନ ଯେପରି ଓଡ଼ିଆ ବ୍ୟାକରଣ ନାମରେ ସଂସ୍କୃତ ବ୍ୟାକରଣ ପଢୁଛୁ, ଠିକ୍ ସେହିପରି ଏହି ମୈଥିଳୀ ଭାଷୀ ହିନ୍ଦୀ ବ୍ୟାକରଣ ପଢୁଛନ୍ତି। ହିନ୍ଦୀ ରାଷ୍ଟ୍ରଭାଷା ମାନ୍ୟତା ପାଇବାର ବ୍ୟାପକ ପ୍ରଚାର ମାଧ୍ୟମରେ ଏମାନଙ୍କୁ ରୋଜଗାର ଯୋଗାଇ ଦେବାର ଲୋଭ ଦେଖାଇ ଉତ୍ତର ଭାରତର ୪୬ଟି ସମୃଦ୍ଧ ଭାଷା ସହିତ ମୈଥିଳୀ ଭାଷା ନିଜକୁ ହିନ୍ଦୀ ଭିତରେ ହଜାଇ ଦେଇଛି। ଏପରିକି ଏହାର ଦୁଇଟି ଉପଭାଷା 'ଅଙ୍ଗିକା' ଓ 'ବଜ୍ଜିକା' ମୈଥିଳୀ ଭାଷା ସହ ପରିଚୟ ଛିଣ୍ଡାଇ ଆମ ସମ୍ବଲପୁର ଭାଷା ଭଳି ସ୍ୱତନ୍ତ୍ର ମାନ୍ୟତା ଦାବି କଲେଣି। ଏହାର ଏକମାତ୍ର କାରଣ ହେଉଛି ମୈଥିଳୀ ଭାଷା ବର୍ତ୍ତମାନ ସମୟରେ ରୋଜଗାର ଦେଇପାରୁ ନ ଥିବାରୁ ଆଜିର ମିଥିଳା ଶିଶୁ ନିଜ ମାତୃଭାଷାକୁ ଘୃଣା କରୁଛି। ଏହା ବ୍ୟତୀତ ଏହି କୋମଳମତି ମୈଥିଳୀ ଶିଶୁଗଣଙ୍କୁ କିପରି ନିଜ ମାତୃଭାଷାରେ ଶିକ୍ଷା ଦିଆ ନ ଯିବ ସେହି ପରିସ୍ଥିତି ସୃଷ୍ଟି କଲେଣି ହିନ୍ଦୀ ଭାଷୀ। ନିଜଭାଷାରେ ଶିକ୍ଷା ନ ପାଇବାରୁ, ରୋଜଗାରର ମାଧ୍ୟମ ନିଜ ମାତୃଭାଷା ନ ହେବାରୁ ବିଭିନ୍ନ ପ୍ରଲୋଭନ ଭିତରେ ଜଡ଼ ପାଲଟି ଯାଇଥିବା ମିଥିଳା ଶିଶୁ ନିଜ ମାତୃଭାଷା ମୈଥିଳୀ ଉପରୁ ଆସ୍ଥା ହରାଇ ବସିଛି। ତେଣୁ ଓଡ଼ିଆ ଭାଷା ସହିତ ସମକାଳରେ ବିକାଶ ଲାଭ କରି ପ୍ରଚୁର ଉନ୍ନତ ସାହିତ୍ୟ ସୃଷ୍ଟି କରିଥିବା ମୈଥିଳୀ ଭାଷା ଯୁଗୋପଯୋଗୀ ହୋଇ ରୋଜଗାରର ମାଧ୍ୟମ ନ ପାଲଟିବାରୁ ଆଜି ନିଜର ଭୂମି, ଲିପି, ବ୍ୟାକରଣ ଏବଂ ଶେଷରେ ନିଜର ସତ୍ତାକୁ ହରାଇ ବସିଛି ନିଜ ଉତ୍ତରପୁରୁଷଙ୍କ ଦ୍ୱାରା। ଫଳରେ ଏକ ଉନ୍ନତ ବଳିଷ୍ଠ ଭାଷାରୁ ମୈଥିଳୀ ଉପଭାଷାରେ ପହଞ୍ଚି ଏବେ ମୃତଭାଷା ଘୋଷଣା ହେବାକୁ କେତୋଟି ବର୍ଷର ଅପେକ୍ଷାରେ ଅଛି।

ଏହି ଛଅଟି ଭାଷା ଦୃଷ୍ଟାନ୍ତରୁ ଜଣାପଡ଼େ ଭାଷା ଯେତେ ଉନ୍ନତ ଓ ବୈଜ୍ଞାନିକ ପଦ୍ଧତିଯୁକ୍ତ ହୋଇଥିଲେ ମଧ୍ୟ ଯଦି ବ୍ୟାବହାରିକ କାର୍ଯ୍ୟରେ ନ ଲାଗିବ, ସେ ଭାଷା ନିଶ୍ଚିତ ଭାବରେ ଲୋପ ପାଇଯିବ। ଅଥଚ ଗୋଟିଏ ଭାଷା ବିଜ୍ଞାନସମ୍ମତ ହୋଇ ନ ଥିଲେ ମଧ୍ୟ, ଯଦି ଶାସକୀୟ ପୃଷ୍ଠପୋଷକତା ପାଇ ସାଧାରଣ ଜନତାଙ୍କ ବ୍ୟବହାର ଉପଯୋଗୀ ହୁଏ ତେବେ ସେ ଭାଷା ଗତିଶୀଳ, ଜୀବନ୍ତ ତଥା ଜନସାଧାରଣରେ ଆଦୃତ ହୋଇପାରିବ।

ଦୁଃଖର କଥା, ଗୋଟିଏ ଜାତିର ଉତ୍‌ଥାନ ଓ ପତନରେ ମାତୃଭାଷାର ମୁଖ୍ୟ ଭୂମିକା ଥିବାବେଳେ ଆମେ ଓଡ଼ିଶାବାସୀ ଏ ପର୍ଯ୍ୟନ୍ତ ଏହି ସତ୍ୟଠାରୁ ବହୁ ଦୂରରେ ଅଛୁ। ଶୋଷକ ବଣିକ ଇଂରେଜ ଜାତି ଆମ ମାଟି ଛାଡ଼ି ଚାଲିଗଲେ ମଧ୍ୟ ସେମାନଙ୍କ ଶାସନପଦ୍ଧତିକୁ ଅନୁସରଣ କରୁଥିବା ଆମ ପ୍ରଶାସନିକ ବ୍ୟବସ୍ଥା ଏ ପର୍ଯ୍ୟନ୍ତ ସେମାନଙ୍କ ଭାଷା ଇଂରାଜୀକୁ ଜାବୁଡ଼ି ଧରିଛି। ସବୁଠାରୁ ଦୁଃଖର ବିଷୟ ଭାରତ ସମ୍ବିଧାନର ଅଷ୍ଟମ ପରିଚ୍ଛେଦରେ ଦିଆଯାଇଥିବା ୨୨ଟି ଭାରତୀୟ ଭାଷା

ତାଲିକାରେ ଓଡିଆ ଭାଷା ଥିବାବେଳେ ଇଂରାଜୀ ଭାଷାର ନାମ ନାହିଁ। ସମଗ୍ର ଭାରତବର୍ଷର ସଂଘୀୟ ବ୍ୟବସ୍ଥା ଅନ୍ତର୍ଭୁକ୍ତ ରାଜ୍ୟଗଣ ନିଜନିଜ ରାଜ୍ୟରେ ମାତୃଭାଷାକୁ ପ୍ରାଥମିକଠାରୁ ଉଚ୍ଚଶିକ୍ଷା ପର୍ଯ୍ୟନ୍ତ ସମଗ୍ର ଶିକ୍ଷା କ୍ଷେତ୍ରରେ ପ୍ରଚଳନ କରିବା ସହ ବିଭିନ୍ନ ସରକାରୀ ଓ ବେସରକାରୀ ନିଯୁକ୍ତି କ୍ଷେତ୍ରରେ ମାତୃଭାଷାକୁ ଗୁରୁତ୍ୱ ଦେଉଛନ୍ତି। ଗତବର୍ଷ କର୍ଣ୍ଣାଟକ ସରକାର କର୍ଣ୍ଣାଟକରେ ବାସ କରୁଥିବା ସମସ୍ତ ପିଲା ଦଶମ ପର୍ଯ୍ୟନ୍ତ କନ୍ନଡ ଭାଷା ପଢିବା ବାଧ୍ୟତାମୂଳକ କରିଥିବାବେଳେ ଗତ ମାସରେ ମହାରାଷ୍ଟ୍ର ସରକାର ଏହି ପଦାଙ୍କ ଅନୁସରଣ କରି ମରାଠୀ ଶିକ୍ଷାକୁ ବାଧ୍ୟତାମୂଳକ କରିଛନ୍ତି। ଏପରିକି କେନ୍ଦ୍ର ସରକାର ମଧ୍ୟ ସର୍ବଭାରତୀୟ ନିଯୁକ୍ତି କ୍ଷେତ୍ରରେ ମାତୃଭାଷାକୁ ପ୍ରାଥମିକତା ଭାବେ ଗ୍ରହଣ କରିଛନ୍ତି।

ଭାଷାକୁ ନେଇ ସ୍ୱତନ୍ତ୍ର ପ୍ରଦେଶ ଗଠନ ହେବା, ବାର୍ଷିକ ବଜେଟ୍ ଓଡ଼ିଆ ଭାଷାରେ ପ୍ରସ୍ତୁତ କରିବା, ମାତୃଭାଷାକୁ ରାଜ୍ୟଭାଷା ଭାବେ ସରକାରୀ ସ୍ତରରେ ଘୋଷଣା କରିବା ଭଳି ଦୃଷ୍ଟାନ୍ତ ସର୍ବଭାରତୀୟ ସ୍ତରରେ ଓଡ଼ିଆ ଜାତି ପ୍ରଥମ କରି ସୃଷ୍ଟି କରିଥିଲା। ଏବେ ରାଜ୍ୟ ସରକାର ଆଉ ଏକ ଐତିହାସିକ ପଦକ୍ଷେପ ନେବାକୁ ଯାଉଛନ୍ତି। ତାହା ହେଉଛି ଯିଏ ଓଡିଆରେ କାମ ନ କରିବ ତାଙ୍କ ବିରୁଦ୍ଧରେ ଦୃଷ୍ଟାନ୍ତମୂଳକ କଠୋର କାର୍ଯ୍ୟାନୁଷ୍ଠାନ ସରକାରଙ୍କ ପକ୍ଷରୁ ନିଆଯିବ ବୋଲି ରାଜ୍ୟ ସରକାର ଓଡିଆ ସରକାରୀ କାର୍ଯ୍ୟାଳୟ ଭାଷା ଆଇନ୍– ୧୯୫୪ ସଂଶୋଧନ ପ୍ରସ୍ତାବ ସହ ଏହାର କାର୍ଯ୍ୟକାରିତା ପାଇଁ ଏକ ନୂତନ ଆଇନ୍ ପ୍ରଣୟନ କରିବାକୁ ଯାଉଛନ୍ତି। ଆଶା ରହିଛି କିଛି ମାସ ଭିତରେ ଏହା ବିଧାନସଭାରେ ଗୃହୀତ ହୋଇ ଆଇନ୍‌ରେ ପରିଣତ ହୋଇପାରିବ। ଏହା ହେଲେ ଭାରତର ପ୍ରଥମ ରାଜ୍ୟ ଭାବରେ ଭାଷାକୁ ଅବହେଳା କରୁଥିବା ବ୍ୟକ୍ତି ବିରୁଦ୍ଧରେ ଆଇନଗତ ପଦକ୍ଷେପ ନେବାରେ ଓଡିଶା ରାଜ୍ୟ ପ୍ରଥମ ତଥା ପୁନର୍ବାର ପଥପ୍ରଦର୍ଶକ ହୋଇପାରିବ। ମାତ୍ର ଏହି ମହତ କାର୍ଯ୍ୟକୁ ରୂପାୟନ କରିବାରେ ବାଧକ ସାଜିଛନ୍ତି କିଛି ହାତଗଣତି ଧନାଢ୍ୟ ଶିକ୍ଷା ବ୍ୟବସାୟୀ ଓ ପ୍ରଶାସନିକ ଅଧିକାରୀ। ଶିକ୍ଷା ବ୍ୟବସାୟୀଙ୍କ ହୀନ ଚକ୍ରାନ୍ତ ସହିତ ପ୍ରଶାସନିକ ଅଧିକାରୀଗଣ ନିଜ ପିଲାଙ୍କୁ ଅନ୍ୟମାନଙ୍କଠାରୁ ପୃଥକ ତଥା ସ୍ୱତନ୍ତ୍ର ଭାବରେ ପରିଚିତ କରିବା ପାଇଁ ଇଂରାଜୀ ମାଧ୍ୟମ ବିଦ୍ୟାଳୟରେ ପଢାଇବା ସହିତ ସେମାନଙ୍କ ପ୍ରଶାସନିକ ଆଧିପତ୍ୟକୁ ବଜାୟ ରଖିବା ପାଇଁ ରାଜ୍ୟର ନିଯୁକ୍ତିଭିତ୍ତିକ ପରୀକ୍ଷା ରାଜ୍ୟଭାଷା ଓଡିଆ ବଦଳରେ ୭୦ବର୍ଷ ତଳର ବିତାଡିତ ଇଂରେଜମାନଙ୍କ କଥିତଭାଷା ଇଂରାଜୀରେ କରାଯାଉଛି। କେବଳ ସେତିକି ନୁହେଁ, ଏମାନଙ୍କ ସ୍ଥୂଳବୁଦ୍ଧି ଯୋଗୁଁ କଥା କହି ଶିଖି ନ ଥିବା ଅଜ୍ଞାନ ଶିଶୁ ଖେଳିବା ବୟସରେ ଇଂରାଜୀ, ହିନ୍ଦୀ, ସଂସ୍କୃତ ଭଳି ଆଉ ତିନୋଟି ଭାଷା ଶିଖିବା ପାଇଁ ବାଧ୍ୟ କରାଯାଇ ପ୍ରଥମରୁ ମାତୃଭାଷା ଶିକ୍ଷା ଆଗ୍ରହକୁ ହତ୍ୟା କରିଦିଆଯାଉଛି।

ଶିଶୁଟି ଗୋଟିଏ ଭାଷା କହୁଥିବାବେଳେ ଆଉ ଗୋଟିଏ ଭାଷାରେ ଶିକ୍ଷାଗ୍ରହଣ କରିବାଦ୍ୱାରା ତା'ର ମାନସିକ ସନ୍ତୁଳନ ରହି ନ ଥାଏ। ସେ କହୁଥିବା ତା'ର ମାତୃଭାଷାକୁ ଅଯଥା ବୋଝ ବୋଲି ଭାବେ। ସେ ଅନୁଭବ କରେ ଏହି ଭାଷାରେ ଗେଲ କରାଯାଇପାରେ, ମାତ୍ର ଶିକ୍ଷାଲାଭ କରିହୁଏ ନାହିଁ କିମ୍ବା କୌଣସି ଗୁରୁତ୍ୱପୂର୍ଣ୍ଣ ଚର୍ଚ୍ଚା ହୁଏନାହିଁ। ଏହି କାରଣରୁ ମାତୃଭାଷା ଶିକ୍ଷାପ୍ରତି ଥିବା ମମତା ଆପେଆପେ ତା'ଠାରୁ ଅନ୍ତର୍ହିତ ହୋଇଯାଉଛି। ଆତ୍ମବିଶ୍ୱାସ ସ୍ୱତଃ ଭାଙ୍ଗି ଯାଉଥିବାରୁ ଭାଷା ପ୍ରତି ତା'ର ଥିବା ଆବେଗ ଧୀରେଧୀରେ ଲୋପ ପାଇଯାଉଛି। ଆଜିର ଓଡ଼ିଆ ପିଲାମାନେ ଓଡ଼ିଆ ସଂଖ୍ୟା ଗଣି ପାରିବେ ନାହିଁ, ଓଡ଼ିଆ ମାସ, ଋତୁ, ଗ୍ରହ ଓ ନକ୍ଷତ୍ରର ନାମ କହିପାରିବେ ନାହିଁ, ଦଶଟି ଫୁଲ, ପାଞ୍ଚଟି ମାଛ, କୋଡ଼ିଏଟି ଗଛ କିମ୍ବା ସାତଟି ରଙ୍ଗର ନାମ ଚଟ୍‌କରି କହିପାରିବେ ନାହିଁ। ଏମାନଙ୍କ ଭିତରୁ କେତେକ ଭଲ ଇଂରାଜୀ କହିପାରନ୍ତି, ତେଲୁଗୁ, ତାମିଲ, ବଙ୍ଗଳା ବି କହିପାରନ୍ତି ମାତ୍ର ଏହିଭାଷା ମଧ୍ୟରେ ଥିବା ପ୍ରଭେଦ ଜାଣନ୍ତି ନାହିଁ। ପିଲାଟିବେଳରୁ ଓଡ଼ିଆ ଭାଷା ପ୍ରତି ତା'ର ଚାରିପଟେ ଘୂରି ବୁଲୁଥିବା ମାତା ପିତା, ସାଙ୍ଗସାଥି, ଶିକ୍ଷକ ଶିକ୍ଷୟିତ୍ରୀଙ୍କ ଉଦାସୀନ ଓ ଉପହାସିତ ଭାବ ଦେଖି ସେ ଶଙ୍କିତ ହୋଇପଡ଼େ। ମା'ର ଭାଷା ପ୍ରତି ଆଗ୍ରହ, ଅନୁରକ୍ତି ଥିଲେ ମଧ୍ୟ ତା'ର ମନରେ ଦୃଢ଼ ଧାରଣା ସୃଷ୍ଟି ହୁଏ ଯେ ନିଜ ମାତୃଭାଷା ବଳରେ ସେ ମଣିଷ ହୋଇପାରିବ ନାହିଁ। ରୋଜଗାର ମିଳିବ ନାହିଁ। ଏଥିପାଇଁ ସେ ଅନ୍ୟର ଭାଷା ଶିଖିବାକୁ ହେବ। ଇଂରାଜୀ ବିଶ୍ୱ ଭାଷା ହୋଇଥିବାରୁ ବିଶ୍ୱସ୍ତରରେ ନିଜ ପାଇଁ ସ୍ଥାନ ସୁରକ୍ଷିତ ରଖିପାରିବ। ଆଉ ହିନ୍ଦୀ ଭାରତର ରାଷ୍ଟ୍ରଭାଷା (ନିକଟରେ

ଗୁଜୁରାଟ ଉଚ୍ଚନ୍ୟାୟାଳୟ ରାୟ ଦେଇଛନ୍ତି ଯେ ହିନ୍ଦୀ ରାଷ୍ଟ୍ରଭାଷା ନୁହେଁ, ଏହା ସର୍ବଭାରତସ୍ତରୀୟ କାର୍ଯ୍ୟାଳୟର ଭାଷା। ଏହା ଭାରତର ପ୍ରମୁଖ ୨୨ଟି ଭାଷା ମଧ୍ୟରୁ ଅନ୍ୟତମ। ତେବେ ସବୁ ଭାଷାଭାଷୀ ରାଜି ହେଲେ ଏହା ରାଷ୍ଟ୍ରଭାଷାର ମାନ୍ୟତା ପାଇବ) ହୋଇଥିବାରୁ ବିଶାଳ ଭାରତ ଭୂଖଣ୍ଡରେ ନିଯୁକ୍ତିର ଅସୁବିଧା ନାହିଁ କିନ୍ତୁ ଓଡ଼ିଆରେ ପଢ଼ିଲେ ଓଡ଼ିଶାରେ ମଧ୍ୟ କୌଣସି ନିଯୁକ୍ତି ମିଳିବ ନାହିଁ। ତେଣୁ ସଂସ୍କାର ପାଇଁ ସଂସ୍କୃତ, ମା'ର ଭାଷା ଓଡ଼ିଆ, ଦେଶର ଭାଷା ହିନ୍ଦୀ ଆଉ ରୋଜଗାରର ଭାଷା ଇଂରାଜୀ – ଏହି ଚାରିଟି ଭାଷାକୁ ଶିଶୁଟି ଶିଖିବା ପରେ ଯେଉଁ ଖେଚୁଡ଼ି ବାକ୍ୟ ପରଷୁଛି, ତାହା କୌଣସି ଭାଷାର ମୂଳ ମଂଜକୁ ତ ଧାରଣ କରିପାରୁ ନାହିଁ, ଭାଷାଦ୍ୱାରା ଅନ୍ୟ ବିଷୟ ଯଥା– ବିଜ୍ଞାନ, ଗଣିତ ଓ ଇତିହାସ, ଭୂଗୋଳ ଭଳି ସମାଜବିଜ୍ଞାନକୁ ମଧ୍ୟ ଠିକ୍ ଭାବରେ ଉପସ୍ଥାପନ କରି ନ ପାରି ସର୍ବଭାରତୀୟ ପ୍ରତିଯୋଗିତା କ୍ଷେତ୍ରରେ ପଛରେ ପଡ଼ିଯାଉଛି। ଫଳରେ ପ୍ରଚୁର ପ୍ରାକୃତିକ ସଂପଦ ଥାଇ ଧନରେ ଗରିବ ହୋଇଥିବା ଏହି ରାଜ୍ୟ ଜ୍ଞାନରେ ମଧ୍ୟ ଗରିବ ହୋଇ ରହିବାକୁ ବାଧ୍ୟ ହେଉଛି।

ଆଜିର ଦୁନିଆରେ ଆମ ପାଇଁ ସବୁ ଭାଷାର ଗୁରୁତ୍ୱ ରହିଛି। ସହଜ ଭାବରେ ଉପଲବ୍ଧ ଉପନିବେଶିକ ଭାଷା ଇଂରାଜୀର ଦ୍ୱାହି ଦେଇ ଆମେ ଜର୍ମାନୀ, ମାଣ୍ଡାରିନ, କୋରିଆ, ଋଷିଆ ଭାଷାକୁ ଅବହେଳା କରିପାରିବା ନାହିଁ। କାରଣ ଗବେଷଣା, ନିଯୁକ୍ତି ଓ ବ୍ୟବସାୟ ପାଇଁ ଏହି ୪ଟି ଭାଷା ଶିକ୍ଷା କରିବାର ଯଥେଷ୍ଟ ଆବଶ୍ୟକ ରହିଛି। ତେବେ ସୁଖର କଥା, ଅତ୍ୟାଧୁନିକ ଟେକ୍ନୋଲୋଜିଦ୍ୱାରା ଇଂରାଜୀ ସମେତ ପୃଥିବୀର ଯେକୌଣସି ଭାଷା ମାତ୍ର ୩ ମାସ ମଧ୍ୟରେ ଅତି ପ୍ରାଞ୍ଜଳ ଭାବରେ ଶିକ୍ଷା କରାଯାଇପାରିବ। ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଇଂରେଜ ଉପନିବେଶ ଶାସନର ଲୋପ ହେବା ଯୋଗୁଁ ଇଂରାଜୀ ଭାଷା ବିଶ୍ୱଭାଷାର ପରିଚୟ ହରାଇ ବର୍ତ୍ତମାନ କେବଳ ୧୧ଟି ରାଷ୍ଟ୍ରର ଭାଷା ଭାବେ ସୀମାବଦ୍ଧ, ତାହା ପୁଣି ଆମେରିକାନ ଇଂଲିଶ, ଅଷ୍ଟ୍ରେଲିଆନ ଇଂଲିଶ, ବ୍ରିଟିଶ ଇଂଲିଶ ଭାବରେ ବହୁଧା ବିଭକ୍ତ। ଜି–୮ ଭାବରେ ପରିଚିତ ବିଶ୍ୱର ଶ୍ରେଷ୍ଠ ଧନଶାଳୀ ଦେଶ ଇଂରାଜୀ ବଦଳରେ ନିଜ ନିଜର ରାଷ୍ଟ୍ରଭାଷାରେ ଶିକ୍ଷା, ଶାସନ, ନ୍ୟାୟ ଆଦି ସବୁକିଛି ବ୍ୟବସ୍ଥା ଚଳାଇଥାନ୍ତି। ଏପରିକି କମ୍ପ୍ୟୁଟରର ଭାଷା ହୋଇ ମଧ୍ୟ ତଥା ପ୍ରତିବର୍ଷ ସର୍ବାଧିକ ନୋବେଲ ପାଉଥିବା ଦେଶ ଆମେରିକା ପ୍ରତିରକ୍ଷା କ୍ଷେତ୍ରରେ ଋଷଠାରୁ ଅଟୋମୋବାଇଲ ବା ମୋଟରଯାନ ନିର୍ମାଣ କୌଶଳରେ ଜର୍ମାନୀଠାରୁ, ଉଡାଜାହାଜ ନିର୍ମାଣ କଳାରେ ଫ୍ରାନ୍ସଠାରୁ, ରୋବଟ ନିର୍ମାଣରେ ଜାପାନଠାରୁ, ବୈଦ୍ୟୁତିକ ଉପକରଣ ନିର୍ମାଣରେ ଚୀନ୍‌ଠାରୁ, ଲୌହ ଉତ୍ପାଦନରେ କୋରିଆଠାରୁ ବହୁ ପଛରେ ପଡି ରହିଛି। ଏହାର ଏକମାତ୍ର କାରଣ ହେଉଛି ଏହିସବୁ ଦେଶ ପ୍ରାରମ୍ଭରୁ ସମସ୍ତ ଜ୍ଞାନକୌଶଳ ନିଜ ଭାଷାରେ କରିଆସୁଥିବାରୁ ଆମେରିକା ଏହାକୁ ଭେଦ କରିପାରୁନାହିଁ। ଅଥଚ ଓଡ଼ିଶାର ଉଚ୍ଚଶିକ୍ଷିତ ବ୍ୟକ୍ତିଗଣ ନିଜର ଏହି ଅଜ୍ଞତାକୁ ଘୋଡ଼ାଇବାକୁ ଯାଇ ଇଂରାଜୀକୁ ବିଶ୍ୱଭାଷାର ଆଖ୍ୟା ଦେବା ସହ ଏହାକୁ ଶିଖିଲେ ଆମ ପିଲାମାନଙ୍କୁ ଚାକିରି ସବୁଠି ମିଳିବ ବୋଲି ମିଛ ଧାରଣା ସୃଷ୍ଟିକରି ମାତୃଭାଷା ଶିକ୍ଷାଠାରୁ ଦୂରେଇ ଦେଉଛନ୍ତି। ସେମାନଙ୍କ ଏହି ଦୂରଦୃଷ୍ଟିବିହୀନ ମନ୍ତବ୍ୟ ଦ୍ୱାରା କେବଳ ବିଦେଶୀ ଉପନିବେଶିକ ଭାଷା ଶିକ୍ଷା କ୍ଷେତ୍ରରେ ନିଜର କାୟା ବିସ୍ତାର କରିବା ସହ ଆମ ଜାତୀୟତାକୁ ହତ୍ୟା କରୁଥିବାବେଳେ ଶୋଷଣ ଓ ଦୁର୍ନୀତି ଆହୁରି ଦୃଢ଼ ହେବାରେ ଲାଗିଛି। ସବୁଠାରୁ ଆଶ୍ଚର୍ଯ୍ୟର କଥା ଏହି ସତ୍ୟକୁ ଆମ ଶିକ୍ଷିତଗଣ ଜାଣି ମଧ୍ୟ ନ ଜାଣିଲା ପରି ଅଭିନୟ କରିବାରେ ଲାଗିଛନ୍ତି ଓ ନିଜ ପିଲାମାନଙ୍କୁ ଏହି ଭୁଲ୍ ପଥର ପଥିକ ସଜାଇ ସେମାନଙ୍କ ମୌଳିକ ସୃଜନଶକ୍ତିକୁ ହତ୍ୟା କରି ଚାଲିଛନ୍ତି। ଏହି ମୁଷ୍ଟିମେୟଙ୍କ ପଦ ଅନୁସରଣ କରିଚାଲିଛନ୍ତି ଅଗଣିତ ସାଧାରଣ ଶ୍ରେଣୀ ବିନା ପ୍ରଶ୍ନରେ, ଅଯଥା ଆନୁଗତ୍ୟରେ। ଏପରି କ୍ଷେତ୍ରରେ ଜାତୀୟତାଭାବ ସୃଷ୍ଟିଦ୍ୱାରା ଜାତିବିକାଶରେ ପ୍ରମୁଖ ଭୂମିକା ନେଉଥିବା ମାତୃଭାଷାକୁ ଯେଉଁ ଜାତି ଅବହେଳା କରୁଛି ସେ ଜାତି କେବେ ମଧ୍ୟ ଉନ୍ନତି କରିପାରିବ ନାହିଁ। ଯାହାର ସର୍ବୋତ୍କୃଷ୍ଟ ପ୍ରମାଣ ଆମ ଓଡ଼ିଶା ରାଜ୍ୟ ଓ ଓଡ଼ିଆ ଜାତି।

ଭାରତରେ ପ୍ରଚଳିତ ଶିକ୍ଷାନୀତି ଉପନିବେଶ ଶିକ୍ଷାନୀତିଦ୍ୱାରା ନିୟନ୍ତ୍ରିତ, ଯାହା ୧୮୩୫ରେ ମାକଲେ ଶିକ୍ଷାକମିଟିଦ୍ୱାରା ପ୍ରଣୟନ କରାଯାଇଥିଲା। ସେତେବେଳେ ସ୍ୱଳ୍ପ ଖର୍ଚ୍ଚରେ ସୁଚାରୁ ରୂପେ ଇଂରେଜ ଶାସନ ପ୍ରତିଷ୍ଠା ପାଇଁ କିଛି ଭାରତୀୟ କିରାଣି ସୃଷ୍ଟି ଉଦ୍ଦେଶ୍ୟରେ ଇଂରାଜୀ ପାଠପଢା ଆରମ୍ଭ ହେଲା। ଆଜି ଆମେ ଯାହାକୁ ଓଡିଆ ମାଧ୍ୟମ ସ୍କୁଲ ବୋଲି କହୁଛୁ, ସେହି ସ୍କୁଲ ପ୍ରଥମ କରି ଇଂରାଜୀ ଶିକ୍ଷା ପାଇଁ ଭାଷା ବିଦ୍ୟାଳୟ ବା ହାଡିଂଜ ସ୍କୁଲ ସ୍ଥାପନ କରାଗଲା ଓ ସମସ୍ତ ବିଷୟ ଓଡିଆରେ ପଢାଗଲାବେଳେ ଇଂରାଜୀ ଭାଷା

ଗୋଟିଏ ବିଷୟ ଭାବରେ ପଢାଗଲା । ଏହି ଶିକ୍ଷା ବ୍ୟବସ୍ଥାରେ ଥିବା ପ୍ରଚୁର ଦୋଷତ୍ରୁଟିକୁ ଜାଣି ମଧ୍ୟ ସ୍ୱାଧୀନତା ପ୍ରାପ୍ତି ପରେ ଏହାର ସଂସ୍କାର କରାଗଲା ନାହିଁ । ବରଂ କାର୍ଯ୍ୟାଳୟର ଭାଷା ଭାବରେ ଏହାକୁ ସ୍ଥାୟୀ ଭାଷାର ମର୍ଯ୍ୟାଦା ମିଳିଗଲା । ବର୍ତ୍ତମାନ ଭାରତର ଶିକ୍ଷିତ ସମ୍ପ୍ରଦାୟ ଇଂରେଜୀ ଭାଷା ମାଧ୍ୟମରେ ଆସୁଥିବା ଜ୍ଞାନକୁ ଆବଶ୍ୟକତା ଭିତ୍ତିରେ ବ୍ୟବହାର ଓ ପ୍ରୟୋଗ ପ୍ରତି ଶ୍ରଦ୍ଧାବାନ ନୁହନ୍ତି । ଅର୍ଥାତ୍ ଆମ ଶିକ୍ଷିତବର୍ଗ ଜ୍ଞାନ ଅର୍ଜନ ଓ ତା'ର ବ୍ୟବହାର ନୁହେଁ, ବରଂ ଶୋଷଣର ମାଧମ ଭାବରେ ଏହାକୁ ଶିକ୍ଷା, ପ୍ରଶାସନ, ଆଇନ, ସ୍ୱାସ୍ଥ୍ୟସେବା ଆଦି ମୌଳିକ ଅଧିକାର ଲୁଣ୍ଠନ ପାଇଁ ଏହାର ବ୍ୟାପକ ପ୍ରଚଳନ ଉପରେ ଗୁରୁତ୍ୱ ଦେଉଛନ୍ତି ।

ଅନ୍ୟ ପକ୍ଷରେ କେନ୍ଦ୍ର ସରକାରଙ୍କ ରେଳବାଇ, ସିଭିଲ ସେବା, କେନ୍ଦ୍ରୀୟ କର୍ମଚାରୀ ନିଯୁକ୍ତି ସେବା ଭଳି ସମସ୍ତ ନିଯୁକ୍ତିଭିତ୍ତିକ ପ୍ରତିଯୋଗିତାମୂଳକ ପରୀକ୍ଷା, ଅଲ୍ ଇଣ୍ଡିଆ ମେଡିକାଲ ଏଣ୍ଟ୍ରାନ୍ସ, ଇଂଜିନିୟରିଂ ପ୍ରବେଶିକା ପରୀକ୍ଷା ଆଦି ପ୍ରାଦେଶିକ ଭାଷାରେ ହେଉଥିବାରୁ ଓଡିଆ ଭାଷାରେ ଉଚ୍ଚଶିକ୍ଷା ବ୍ୟବସ୍ଥା ନ ଥିବା ଫଳରେ ବହୁ ମେଧାବୀ ପିଲା ଓଡିଆରେ ଏହିସବୁ ପରୀକ୍ଷା ଦେଇପାରୁ ନାହାନ୍ତି । ଅଥଚ ଅନ୍ୟ ରାଜ୍ୟର ପିଲାମାନେ ଇଂରାଜୀ ସହିତ ନିଜ ଭାଷାରେ ପରୀକ୍ଷା ଦେଇ ଦୁଇ ପ୍ରକାରର ସଫଳତା ପାଇପାରୁଛନ୍ତି । ଏହାର ଏକମାତ୍ର କାରଣ ହେଉଛି ସେହିସବୁ ରାଜ୍ୟର ଉଚ୍ଚଶିକ୍ଷା ଓ ଗବେଷଣା ନିଜ ଭାଷାରେ କରିବା ପାଇଁ ପ୍ରତିଷ୍ଠା ହୋଇଥିବା ସ୍ୱତନ୍ତ୍ର ଭାଷାଭିତ୍ତିକ ବିଶ୍ୱବିଦ୍ୟାଳୟ । ୧୯୬୨ରେ ସ୍ଥାପିତ ପାବୀ ବିଶ୍ୱବିଦ୍ୟାଳୟ କଳା, ବିଜ୍ଞାନ, ବାଣିଜ୍ୟ, ଚିକିତ୍ସା, ପ୍ରଯୁକ୍ତିବିଦ୍ୟା, ଯାନ୍ତ୍ରିକବିଦ୍ୟା ଆଦି ୬୫ଟି ବିଭାଗ ସ୍ଥାପନ କରି କେବଳ ପାବୀ ଭାଷାରେ ଶିକ୍ଷାଦାନ କରୁଛି । ୬୦୦ଏକର ପରିମିତ ଏହି ବିଶ୍ୱବିଦ୍ୟାଳୟର ମୂଳ ପରିସରରେ ୯୦୦୦ ବିଦ୍ୟାର୍ଥୀ ଓ ୫୦୦ଶିକ୍ଷକ ଥିବାବେଳେ ୫ଟି ଆଞ୍ଚଳିକ କେନ୍ଦ୍ର, ୬ଟି ପଡୋଶୀ କ୍ୟାମ୍ପସ, ୧୬୬ଟି ଅନୁବନ୍ଧିତ କଲେଜ ରହିଛି । ଆଜି ସମସ୍ତେ ସ୍ୱୀକାର କରିବେ ଯେ ଭାରତରୁ ସବୁଠାରୁ ଅଧିକ ଲୋକ ବିଦେଶ ଯାଇଥାନ୍ତି ପାବ ପ୍ରଦେଶରୁ । କାହିଁ ସେଠାରେ ପାବୀ ଭାଷାରେ ଉଚ୍ଚଶିକ୍ଷା ପ୍ରଦାନ ବ୍ୟବସ୍ଥା ତ କୌଣସି ବାଧା ସୃଷ୍ଟି କରିପାରିନାହିଁ ! ସେହିପରି ତାମିଲ, ତେଲୁଗୁ, କନ୍ନଡ, ଗୁଜୁରାଟି, ବଙ୍ଗାଳୀ, ମରାଠୀ, ମାଲାୟାଲମ, ଏପରିକି ହିନ୍ଦୀ ଭାଷାରେ ସ୍ୱତନ୍ତ୍ର ଭାଷାଭିତ୍ତିକ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରାଯାଇ ସେହିସବୁ ରାଜ୍ୟର ଭାଷା, ସଂସ୍କୃତି, ସାହିତ୍ୟ, ଇତିହାସ ଉପରେ ବ୍ୟାପକ ଗବେଷଣା କରାଯିବା ସହିତ ଯୁଗୋପଯୋଗୀ ବିଷୟ ନିଜ ଭାଷାରେ ଶିକ୍ଷା ପ୍ରଦାନ କରାଯାଇ ଇଂରାଜୀ ପ୍ରତିସ୍ପର୍ଦ୍ଧାରେ ଆନ୍ତର୍ଜାତିକ ଭାଷା ଭାବରେ ନିଜକୁ ପ୍ରତିଷ୍ଠିତ କରାଇ ପାରିଛନ୍ତି । ଅଥଚ ଓଡିଆ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପ୍ରସଙ୍ଗ ଉଠିଲାମାତ୍ରେ ଆମ ଆଗ ଧାଡିର ଲୋକେ ନାକ ଟେକିବାକୁ ଭୁଲୁନାହାଁନ୍ତି । ଓଡିଶାରେ ଉଚ୍ଚଶିକ୍ଷା ପାଇଁ ପ୍ରାୟ ୨୦ଟି ସରକାରୀ, ବେସରକାରୀ ବିଶ୍ୱବିଦ୍ୟାଳୟ ତଥା ଜାତୀୟ ସ୍ତରର ଶିକ୍ଷାନୁଷ୍ଠାନ ରହିଛି । ଆଉ କିଛି ବିଶ୍ୱବିଦ୍ୟାଳୟ ମଧ୍ୟ ସ୍ଥାପନ ହେବାକୁ ଯାଉଛି । ଏହିସବୁ ବିଶ୍ୱବିଦ୍ୟାଳୟର ଶିକ୍ଷାମାଧ୍ୟମ ହେଉଛି ଇଂରାଜୀ । ଏହା ମଧ୍ୟ ମାତ୍ର ୧୩% ବିଦ୍ୟାର୍ଥୀଙ୍କୁ ଉଚ୍ଚଶିକ୍ଷା ଦେଇପାରୁଛି । ତନ୍ମଧ୍ୟରୁ ସଫଳ ହେଉଛନ୍ତି ମାତ୍ର ୧% । ଅନ୍ୟମାନେ ବିଫଳ ହେବାର କାରଣ ବିଦେଶୀ ଭାଷାରେ ନିଜର ପାରଙ୍ଗମ ପ୍ରଦର୍ଶନ କରି ନ ପାରିବା । ଅର୍ଥାତ୍ ୯୯ଭାଗ ପିଲା ଉଚ୍ଚଶିକ୍ଷାରୁ ବଞ୍ଚିତ ହେବାର ମୂଳକାରଣ ହେଉଛି ବିଦେଶୀ ଭାଷାର ବୋଝ । ଏହି ବୋଝରୁ ମୁକ୍ତ କରି ଓଡିଶା ପାଇଁ କେବଳ ଉଚ୍ଚ ଶିକ୍ଷିତ ଓଡିଆ ପିଲା ପ୍ରସ୍ତୁତ କରିବା ଉଦ୍ଦେଶ୍ୟରେ ଓଡିଆ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠାକୁ ସରକାର ଗୁରୁତ୍ୱଦେବା ନିଶ୍ଚିତ ଭାବରେ ଆଶ୍ୱାସନାର ବିଷୟ । ସେହିପରି ଶାସ୍ତ୍ରୀୟ ଭାଷା ଓଡିଆର ଚେର କେତେ ଗଭୀରକୁ ଯାଇଛି, ସେ ବିଷୟରେ ଗବେଷଣା କରିବା ପାଇଁ କେନ୍ଦ୍ର ସରକାରଙ୍କ ସଂପୂର୍ଣ୍ଣ ଆର୍ଥିକ ସହଯୋଗରେ କେନ୍ଦ୍ରୀୟ କ୍ଲାସିକାଲ ଓଡିଆ ସଂସ୍ଥା ପ୍ରତିଷ୍ଠା ଆମ ବୁଦ୍ଧିଜୀବୀଙ୍କ ଅଜ୍ଞତାରୁ ସ୍ୱପ୍ନ ମନେହେଲାଣି । ତେଣୁ ସ୍ୱତନ୍ତ୍ର ପ୍ରଦେଶ ଗଠନ ହେବାର ୮୦ବର୍ଷ ତଥା ଶାସ୍ତ୍ରୀୟ ଗୌରବର ୩ ବର୍ଷରେ ପଦାର୍ପଣ କରିଥିବା ଓଡିଆ ଭାଷା ଓ ଏହି ଭାଷାକୁ ନେଇ ନିଜର ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିଥିବା ବିଜ୍ଞ ଓଡିଆମାନେ ବିଶ୍ୱ ସହିତ ନିଜକୁ ସାମିଲ କରିବାକୁ ହେଲେ ଓଡିଆତ୍ୱକୁ ସାମିଲ କରିବାର ଯେ ଆବଶ୍ୟକତା ଅଛି, ତାହା ବୁଝି ନିଜର ଦାୟିତ୍ୱ ଓ କର୍ତ୍ତବ୍ୟ ବିଷୟରେ ସଚେତନ ହେବା ଆବଶ୍ୟକ ।

ସଦସ୍ୟ ସଚିବ, ଓଡିଆ ଅଧ୍ୟୟନ
ଓ ଗବେଷଣା ସଂସ୍ଥା,ଏ-୧୬୪
ସହିଦ୍ ନଗର, ଭୁବନେଶ୍ୱର-୭୫୧୦୦୭

# ଉତ୍କଳଗୌରବ ମଧୁସୂଦନ

ଡକ୍ଟର ସର୍ବେଶ୍ୱର ସେଣ

ଉତ୍କଳଗୌରବ ମଧୁସୂଦନ ଦାସ, ତାଙ୍କ ମହାପ୍ରୟାଣର ଠିକ୍ ପୂର୍ବରୁ ଉତ୍କଳ ସମ୍ମିଳନୀର ଦାୟିତ୍ୱ ନ୍ୟସ୍ତ କଲେ ପଣ୍ଡିତ ନୀଳକଣ୍ଠ ଦାସଙ୍କ ହାତରେ । ଦରଦୀ ଭରା କଥା ପଦୁଟିଏ ବି କହିଦେଲେ ଭାବ ବିହ୍ୱଳ ହୋଇ, ମୁଁ ତ ଯାଉଛି ମନେ ରଖିଥିବ ଜଣେ ଓଡ଼ିଆ ଥିଲା । କୁଳବୃଦ୍ଧଙ୍କ ଏହା ଥିଲା ଆତ୍ମିକ ବାଣୀ । ବାଣୀ ନୁହେଁ ସତେ ଯେପରି ସବୁ ଓଡ଼ିଆଙ୍କ ପାଇଁ ଏହା ମୃତ୍ୟୁ ସଞ୍ଜିବନୀ । ଖାଲି କଥାରେ ନୁହେଁ, ମଧୁବାବୁ ଥିଲେ କାୟ-ମନ-ବାକ୍ୟରେ ଓଡ଼ିଆଟିଏ । କହିବା ବାହୁଲ୍ୟ ଯେ, ଓଡ଼ିଆ-ଭାଷା ଜାତିର ଉନ୍ନତି କଳ୍ପେ ସେ ଉତ୍ସର୍ଗ କରିଯାଇଛନ୍ତି ଆପଣାର ସର୍ବସ୍ୱ । ତାଙ୍କରି ଅକୁଣ୍ଠ ତ୍ୟାଗ, ସଂଗ୍ରାମ, ପ୍ରଚେଷ୍ଟା ଯୋଗୁଁ ଓଡ଼ିଶା ପାଇଥିଲା ତା'ର ସ୍ୱତନ୍ତ୍ର ପରିଚୟ । ୧୯୩୬ ମସିହା, ଏପ୍ରିଲ ୧ ତାରିଖ ସାରା ଓଡ଼ିଶା ଉତ୍ସବ ମୁଖର ମାତ୍ର ନ ଥିଲେ ଓଡ଼ିଆ ମା'ର ଯୋଗ୍ୟତମ ସନ୍ତାନ ମଧୁସୂଦନ ଦାସ । ତଥାପି ଯେତେଦିନ ପର୍ଯ୍ୟନ୍ତ ସୂର୍ଯ୍ୟ, ଚନ୍ଦ୍ର ଥିବେ, ଓଡ଼ିଆ ଜାତି ଥିବ ଓଡ଼ିଶାର ଗର୍ବ ଗୌରବ ମଧୁସୂଦନ ଚିର ବନ୍ଦନୀୟ ହୋଇ ରହିଥିବେ ନିଶ୍ଚୟ !



ଏବେ ଉତ୍କଳ ଦିବସର ମର୍ଯ୍ୟାଦା ସ୍ୱତନ୍ତ୍ର, ନୂତନ ଆଗ୍ରହ, ଉତ୍ସାହ, ଉଦ୍ଦୀପନା ସର୍ବତ୍ର । ବିଳମ୍ବରେ ହେଲେ ମଧ ଓଡ଼ିଆ ଭାଷା ପାଇଛି ଶାସ୍ତ୍ରୀୟ ମାନ୍ୟତା ନଥିଲା ଓଡ଼ିଆ ଥିଲେ ଖାଣ୍ଟି ଓଡ଼ିଆ । ସେମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ମଧୁବାବୁ, ଉତ୍କଳମଣି ଗୋପବନ୍ଧୁ ଦାସ, ପାରଳାରାଜା କୃଷ୍ଣଚନ୍ଦ୍ର ଗଜପତି, ମୟୂରଭଞ୍ଜ ରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ, କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ, ବିଶ୍ୱନାଥ କର, ବ୍ରଜସୁନ୍ଦର ଦାସଙ୍କ ସହ ଆହୁରି ଅନେକ । ଏମାନେ ଭଲ ପାଉଥିଲେ ଆପଣାର ଭିଟାମାଟିକୁ, ଭାଷା ପ୍ରୀତି ସେମାନଙ୍କର ଥିଲା ଶୀର୍ଷରେ, ଜାତୀୟତାବାଦ ସେମାନଙ୍କ ଅସ୍ଥି ମଜ୍ଜାଗତ । ଗୋଟେ ପଟେ ସ୍ୱାଧୀନତା ପାଇଁ ଚାଲିଥିଲା ମହାସଂଗ୍ରାମ ଏ ପଟେ ଖଣ୍ଡବିଖଣ୍ଡିତ ଓଡ଼ିଶାର ଏକତ୍ରିକରଣ ପାଇଁ ପ୍ରଚେଷ୍ଟା । ଏହାର ସୂତ୍ରଧର ଥିଲେ ମଧୁସୂଦନ । ପ୍ରଥମେ ଉତ୍କଳ ସଭା, ପରେ ଉତ୍କଳ ସମ୍ମିଳନୀ ମାଧ୍ୟମରେ ସେ ଓଡ଼ିଶାର ସ୍ୱାଭିମାନ ରକ୍ଷା ପୂର୍ବକ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପାଇଁ ଉଦ୍ୟମ ଜାରି ରଖିଥିଲେ । ଇଂରେଜମାନଙ୍କ ସହାୟତାରେ ଆଞ୍ଚଳିତ ସ୍ୱାର୍ଥ ହାସଲ ମଧୁବାବୁଙ୍କର ଥିଲା ମୂଳ ଉଦ୍ଦେଶ୍ୟ ମାତ୍ର ମହାଭାରତୀୟ ଚେତନା ବୋଧରୁ ସେ ଅଲଗା ନଥିଲେ । ଭାରତୀୟ ଜାତୀୟ କଂଗ୍ରେସର ସେ ସକ୍ରିୟ ସଦସ୍ୟ (୧୮୮୫ ରୁ ୧୯୧୦) ଥିଲେ । ସେ ସମୟରେ ଭାରତ ଭଳି ଏକ

ଉପମହାଦେଶରେ ଓଡ଼ିଶାର ଚିହ୍ନ ବର୍ତ୍ତ ଥିଲା ଅତ୍ୟନ୍ତ ରୁଗ୍ଣ । ଏହା ଗଭୀର ବ୍ୟଥା ଦେଲା ଓଡ଼ିଆ ପୁଅ ମଧୁବାବୁଙ୍କୁ । ଏଣୁ ଓଡ଼ିଶାର ଭୌଗୋଳିକ ସୀମା ନିର୍ଦ୍ଧାରଣ, ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଓଡ଼ିଶା ସହ ମିଶ୍ରଣ ପାଇଁ ସେ ନେଲେ ବଜ୍ର ଶପଥ । ବୀର କେବେ ପଳାୟନପନ୍ଥୀ ହୋଇ ନପାରେ, ଠିକ୍ ସେମିତି ଜାତିର ମହାନାୟକ ମଧୁବାବୁଙ୍କ ଅଭିଧାନରେ ହାର୍ ନଥିଲା ! ତାଙ୍କ ଭଳି ଜଣେ ପ୍ରାଜ୍ଞ, ବିଜ୍ଞ, ବିଚକ୍ଷଣ, ଧୀସମ୍ପନ୍ନ, ଦକ୍ଷ ଆଇନଜୀବୀ, ପୋଖତ ରାଜନୀତିଜ୍ଞଙ୍କ ପକ୍ଷେ ପୂର୍ଣ୍ଣାଙ୍ଗ ଓଡ଼ିଶା ସ୍ୱପ୍ନ ଦେଖିବା ସମ୍ଭବ ହୋଇଥିଲା । ସେହି ସ୍ୱପ୍ନ ଶେଷରେ ସାକାର ହେଲା ।

ବ୍ରିଟିଶ ରାଜତ୍ୱ କାଳରେ ଓଡ଼ିଶାର ରୂପ ବିଭବ ଥିଲା ଅତ୍ୟନ୍ତ ନୈରାଶ୍ୟଜନକ । ଗଞ୍ଜାମ, କୋରାପୁଟ ମାନ୍ଦ୍ରାଜରେ ସମ୍ବଲପୁର ମଧ୍ୟପ୍ରଦେଶରେ, ପୁରୀ, କଟକ, ବାଲେଶ୍ୱର ପଶ୍ଚିମବଙ୍ଗରେ ରହିଥିଲା । ସେଠାରେ ସଂଖ୍ୟାଲଘୁ ଓଡ଼ିଆ ଭାଷାଭାଷୀମାନେ ଏକପ୍ରକାର ଅଣନିଃଶ୍ୱାସ ହୋଇ ଅକଥନୀୟ ମାନସିକ ଯନ୍ତ୍ରଣା ପାଉଥିଲେ । ତାହା ଜାତୀୟତାବାଦୀ ମଧୁବାବୁଙ୍କୁ କରିଥିଲା ମ୍ରିୟମାଣ । ଓଡ଼ିଶାଠାରୁ ଅଲଗା ରହିଥିବା ବିଭିନ୍ନ ଅଞ୍ଚଳକୁ ଏକାଠି କରିବାକୁ ସେ ବିଭିନ୍ନ ପଦକ୍ଷେପ ନେଇଥିଲେ । ସେ ଥିଲେ ଉତ୍କଳ ସମ୍ମିଳନୀର ଜନ୍ମଦାତା, ପ୍ରଥମ ସମ୍ପାଦକ, ପରବର୍ତ୍ତୀ ସମୟରେ ଦୁଇଟି ଅଧିବେଶନର ସଭାପତି । ବିହାର ଓଡ଼ିଶା କାଉନ୍‌ସିଲ ସଭ୍ୟଭାବେ ବଙ୍ଗଳା, ମଧ୍ୟପ୍ରଦେଶ, ମାନ୍ଦ୍ରାଜରେ ଥିବା ଓଡ଼ିଆ ଭାଷା କହୁଥିବା ଅଞ୍ଚଳଗୁଡ଼ିକୁ ବିହାର ଓଡ଼ିଶା ପ୍ରଦେଶର ଓଡ଼ିଶା ଡିଭିଜନ ସହ ମିଶାଇ ଦେବା ପାଇଁ ସେ ଗୋଟେ ପ୍ରସ୍ତାବ ଆଣିଥିଲେ । ସେ ମନ୍ତ୍ରୀ ଥିବା ବେଳେ ବିହାର ଓଡ଼ିଶା କାଉନ୍‌ସିଲ୍‌ରେ ଏହି ପ୍ରସ୍ତାବ ଗୃହୀତ ହୋଇଥିଲା । ଏହାକୁ ଭିତ୍ତିକରି ତତ୍‌କାଳୀନ ଭାରତ ସରକାର ବିଭିନ୍ନ କମିଟିମାନ ଗଠନ କଲେ ବସ୍ତୁତଃ ଓଡ଼ିଶାର ସମସ୍ୟାମାନ ଚର୍ଚ୍ଚାର ବଳୟକୁ ଆସିଲା ।

ମଧୁବାବୁ ଥିଲେ ଏକାନ୍ତ ଜାତିପ୍ରାଣ । ତାଙ୍କର କଥା, କାର୍ଯ୍ୟ, ବକ୍ତବ୍ୟ, କବିତା ପ୍ରତିଟିରେ ଭରପୂର ଥିଲା ଦେଶପ୍ରେମ କଥା, କାହାଣୀ, ସୁପ୍ତ ଓଡ଼ିଆକୁ ଜାଗ୍ରତ କରିବା ପାଇଁ ଏଗୁଡ଼ିକରେ ଥିଲା ଅଭୂତପୂର୍ବ ପ୍ରେରଣା । ଜାତି ପ୍ରେମ ବହ୍ନି ପ୍ରଜ୍ୱଳନ ଏହାର ଥିଲା ଅସଲ ଲକ୍ଷ୍ୟ । ଓଡ଼ିଶା ମାଟିରେ ଜନ୍ମ ହୋଇଥିବାରୁ ମଧୁବାବୁଙ୍କ ଗର୍ବର ପଟ୍ଟାନ୍ତର ନଥିଲା । ଏହି କଥାକୁ ବ୍ୟକ୍ତ କଲାବେଳେ ସେ ହୋଇ ପଡୁଥିଲେ ଭାବ ବିହ୍ୱଳ । ଏମିତି ଘଟଣାଟିଏ, ଉତ୍କଳ ସମ୍ମିଳନୀର ବ୍ରହ୍ମପୁର ଅଧିବେଶନ (୧୯୧୨) । ସମବେତ ଓଡ଼ିଆମାନଙ୍କୁ ସେ କହିଲେ, ମୁଁ ଓଡ଼ିଆ, ଓଡ଼ିଶାରେ ଜନ୍ମ ଗ୍ରହଣ କରିଅଛି ଏବଂ ବାସ କରୁଅଛି । ଉତ୍କଳ ମାତା କୋଳରେ ମୋର ଅସ୍ଥି, ମାଂସ ରହିବ । ଯେଉଁମାନେ କୀର୍ତ୍ତିରଖି ଯାଇଛନ୍ତି ସେମାନେ ମୋ ପୂର୍ବ ପୁରୁଷ । ତାଙ୍କ କୀର୍ତ୍ତି ରକ୍ଷାର ଭାର ମୋ ଉପରେ ନ୍ୟସ୍ତ । ପ୍ରତ୍ୟେକ ଲୋକ ମନରେ ଏହି ଭାବ ସଂଚାର କରିବା ସମ୍ମିଳନୀର ଉଦ୍ଦେଶ୍ୟ । ଏଥିସହ ଓଡ଼ିଆ ଜାତିର ହୃତ ଗୌରବ ଫେରାଇ ଆଣିବା ପାଇଁ ସେ ଆପ୍ରାଣ ଉଦ୍ୟମ କରିଥିଲେ ।

ମଧୁସୂଦନଙ୍କ ଉଦ୍‌ବୋଧନ ଗୀତିକା ଥିଲା ପ୍ରାଣସ୍ପର୍ଶୀ । ସହଜ, ସରଳ, ସାବଲୀଳ ଭାଷା, ଏଗୁଡ଼ିକୁ ଗାଇଲା ବେଳେ ଶ୍ରୋତାଙ୍କ ପ୍ରାଣରେ ସଞ୍ଚରି ଯାଉଥିଲା ଅହେତୁକ ପୁଲକ । ସବୁଥିଲା ଦେଶ–ପ୍ରେମ ମନ୍ଦାକିନୀ ଧାରା ସତେ ଯେମିତି ଏ ମାଟି ଆର୍ଦ୍ର ପାଲଟିଥିଲା ଓଡ଼ିଆ ଜାତୀୟତାବାଦୀ ପୂତ ପୟୋଧି ବାରିରେ !

ଏକଦା ଆଗଙ୍ଗା ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା ଓଡ଼ିଶାର କୀର୍ତ୍ତିରାଜି । ପୁରୀ, କୋଣାର୍କ, ଭୁବନେଶ୍ୱର ଏବେ ବି ଆପଣାର କଳା, ଭାସ୍କର୍ଯ୍ୟକୁ ନେଇ ସଗର୍ବେ ମଥା ଉଚ୍ଚ କରିଛନ୍ତି ବିଶ୍ୱ ଦରବାରରେ । ମାତ୍ର ଏହି ଗୌରବାବହ ଇତିହାସ ଏକ ପ୍ରକାର ବିସ୍ମୃତ ପ୍ରାୟ ହୋଇଥିଲା ଏ ଜାତିର । ଅତୀତ ଓଡ଼ିଶାର ସୁନାମ ଫେରାଇ ଆଣିବାକୁ ପ୍ରଚେଷ୍ଟା ସହିତ ଜାତିର ଗର୍ବ ଗୌରବକୁ ଓଡ଼ିଶାବାସୀଙ୍କ ଆଗରେ ଉପସ୍ଥାପନ କରିଛନ୍ତି ମଧୁବାବୁ, ଉତ୍କଳର ଅସ୍ତମିତ ଗୌରବ ବିଷୟରେ ଥରେ ଚିନ୍ତାକର । ସମସ୍ତେ ଏହି କଥା ଭାବ ଓ ପ୍ରତିଜ୍ଞା କର ଯେ ଯେଉଁ ଉତ୍କଳ ଜନନୀ, ତା' ସକାଶେ ଏହି ସଭାରେ ଦୃଢ଼ ପ୍ରତିଜ୍ଞା କରୁଅଛି କି, ମୁଁ ପ୍ରତିଦିନ ପାଞ୍ଚମିନିଟ୍ ସମୟ ଦେଶର କଥା ଭାବିବି ଏବଂ ସମ୍ମିଳନୀ ସକାଶେ, ଉତ୍କଳ ନିମନ୍ତେ ଓ ଭାରତ ନିମନ୍ତେ ଅନ୍ତତଃ ପାଞ୍ଚ ମିନିଟ୍ ସମୟ ବ୍ୟୟ କରିବି । ଏହି ମନ୍ତ୍ର ସମସ୍ତେ ମୁହଁରେ ପାଟି କରି କହ । ଜଣେ ଅବଧାନ ପରି ସେ ଏହି କଥାକୁ ଉତ୍କଳ ସମ୍ମିଳନୀରେ ପାଠ କରାଇଥିଲେ ।

ଓଡ଼ିଆ ଜାତି, ଭାଷା ପାଇଁ କୁଳବୃଦ୍ଧଙ୍କ ପ୍ରାଣ କାନ୍ଦୁଥିଲା। ନୀଳାଚଳ ନିବାସୀ ଶ୍ରୀଜଗନ୍ନାଥ, ଜଗନ୍ନାଥ ସଂସ୍କୃତିକୁ ସେ ଉଚ୍ଚାସନ ଦେଇଛନ୍ତି। ଏହା କ'ଣ କମ୍ ମହାନୁଭବତାର ନିଦର୍ଶନ? ଏ ସମସ୍ତ ଗୁଣାବଳୀ ସହିତ ମଧୁବାବୁଙ୍କ ତ୍ୟାଗର ପଟ୍ଟାନ୍ତର ନାହିଁ। ଜାତିର ଗାଥା ଗୌରବକୁ ମଧ ସେ ଉଦ୍‌ଘୋଷଣା କରିଛନ୍ତି କବିତା ଛଳରେ । କେବଳ ସେତିତି ନୁହେଁ, ସ୍ୱାର୍ଥ ହିଁ ଜାତି ପ୍ରେମର ବାଧକ, ଏଣୁ ସ୍ୱାର୍ଥମେଧ ଯଜ୍ଞର ସେ ପରିକଳ୍ପନା କରିଛନ୍ତି, ଏହି ପ୍ରସଙ୍ଗଟି ଥିଲା ମଧୁବାବୁଙ୍କ ପ୍ରାଣର କଥା। ସେ ଅନ୍ୟମାନଙ୍କୁ ଏହି ମହାନ ବାଣୀରେ ଅନୁପ୍ରାଣିତ କରିବା ସହ ନିଜକୁ ଏହାର ନଜିର ଭାବେ ଠିଆ କରି ପାରିଥିଲେ। ଓଡ଼ିଶାବାସୀଙ୍କ କଳା, ଶିଳ୍ପ, ଭାସ୍କର୍ଯ୍ୟର ଟେକ ରଖିବାକୁ ଯାଇ ସେ ଦେବାଳିଆ ହୋଇଗଲେ।

ମଧୁସୂଦନ ଜଣେ ମଣିଷ ପରି ମଣିଷ। ଉତ୍କଳମଣିଙ୍କୁ ବାଦ୍ ଦେଲେ ସମ୍ଭବତଃ ତାଙ୍କଠାରୁ ଅଧିକ ଓଡ଼ିଆ ପ୍ରାଣ ଶୁଦ୍ଧପୂତ ମଣିଷଟିଏ ବିରଳ। ଓଡ଼ିଶାର ବିଚ୍ଛିନ୍ନାଞ୍ଚଳ ଏକତ୍ରିକରଣର ସେ ଥିଲେ କର୍ଣ୍ଣଧାର ମାତ୍ର ସେ ସୁଖ ଦେଖିବା ତାଙ୍କ କପାଳରେ ନଥିଲା। ସେଇ ଓଡ଼ିଆଟିକୁ ଇଂରେଜମାନେ କେବଳ ଶ୍ରଦ୍ଧା କରୁନଥିଲେ ସମ୍ମାନ ମଧ ଦେଉଥିଲେ। ତାଙ୍କ ମହାପ୍ରୟାଣରେ ଓଡ଼ିଶା ଡିଭିଜନର କମିଶନର ଇ.ଏସ୍. ହରନଲ ଶୋକ ବାର୍ତ୍ତାଟିଏ ପଠାଇଥିଲେ। ବିଘା ପର୍ବତ ଉପରେ ଠିଆହୋଇ ମୋଜେସ୍ ତାଙ୍କର ଶିଷ୍ୟଙ୍କର ବାସ ଭୂଇଁ ପର୍ବତ ତଳକୁ ପୂର୍ଣ୍ଣ ଦୃଷ୍ଟିରେ ଦେଖୁ ଦେଖୁ ପ୍ରାଣ ତ୍ୟାଗକଲେ, ମଧୁସୂଦନ ସେହିପରି ନୂତନ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ପ୍ରାକ୍ କାଳରେ ଏ ସଂସାରରୁ ବିଦାୟ ନେଇ ଚାଲିଗଲେ। ଏହା ହିଁ ଥିଲା ହରନଲଙ୍କ ଶୋକବାର୍ତ୍ତାର ସାରକଥା। ଖାଣ୍ଟି ଓଡ଼ିଆ ମଧୁବାବୁଙ୍କ ପାଇଁ ଏହା କ'ଣ ଶ୍ରେଷ୍ଠ ସମ୍ମାନବୋଧ ନୁହେଁ କି?

ସମ୍ପ୍ରତି ଓଡ଼ିଆ ପୁଅର ଆଉ ଏକ ବିଜୟ, ତାହାତ ଓଡ଼ିଆ ସ୍ୱାଭିମାନର ନମୁନା। ଏଣିକି ଆମେ ଓଡ଼ିଆ, ଆମ ରାଜ୍ୟ ଓଡ଼ିଶା, ଆଉ ଓରିଆ, ନୁହେଁ। ତାହା ମଧ ଆଇନ୍ ସ୍ୱୀକୃତ। ସାରା ବିଶ୍ୱରେ ଆମର ପ୍ରକୃତ ପରିଚୟ ଏଣିକି 'ଓଡ଼ିଆ'। ସାରା ରାଜ୍ୟ ଚମକିଲା, ବାଣ ନିଶାଣ, ଦିନଟିଏ ଛୁଟି ମଧ ମିଳିଲା, ସେ ଦିନଟି ଓଡ଼ିଆ ପୁଅ ପାଇଁ ନାହିଁ ନଥିବା ପ୍ରତିଶ୍ରୁତି।

ଓଡ଼ିଆ ଭାଷା ସାହିତ୍ୟ କେତେ କେତେ ପ୍ରତିବନ୍ଧକ ନଟପିଛି, ଏବେ ଓଡ଼ିଆରେ କବି ଲେଖକଙ୍କ ସଂଖ୍ୟା ମଧ କମ୍ ନୁହେଁ। ଓଡ଼ିଶାର ମହକିତ ପ୍ରକୃତି, କିଆ କେତକୀର ମହୁଆ ମୋହ, ମଲ୍ଲୀଫୁଲିଆ ଓଡ଼ିଆଣୀର ହସ, ଗଭାଚହଟା ବଉଳ ବେଣୀ, ସାଆଁସାଆଁ କରୁଥିବା ଧାନକ୍ଷେତର ଗୀତ, ସିରିସିରି ପୂବେଇ ବାଆରେ ଚହଲା ପରିବେଶ, ବର୍ଷାରାଣୀର ଚଟୁଳ, ଚପଳ–ଛନ୍ଦ, ବସନ୍ତର ବେସୁରା ରାଗିଣୀର ବାସ୍ନା ଓଡ଼ିଆ ସାହିତ୍ୟରେ ଖୁବ୍ କମ୍ ଦେଖିବାକୁ ମିଳେ।

ସମଗ୍ର ଓଡ଼ିଶାରେ ଆମ ଭାଷା–ସାହିତ୍ୟ, ମା–ମାଟି ପ୍ରୀତି ପାଇଁ ଥିବା ଆମର ଅବ୍ୟବସ୍ଥାକୁ ବ୍ୟବସ୍ଥା କରିବାକୁ ପଡ଼ିବ, ଆପଣାକୁ ସଜାଡ଼ି ଦେଲେ ବହିବ ଜାତି–ପ୍ରେମ–ମନ୍ଦାକିନୀ ଧାରା, ଉଚ୍ଛୁଳି ଯିବ ଆମ ସାଂସ୍କୃତିକ ଜୀବନ। ତାହା ନ ହେଲେ ଓଡ଼ିଆର ଦେହ ତ ବଦଳି ଯାଇଛି, ଆତ୍ମା ବି ବଦଳିଯିବ, ଭାବ–ପୀରତି, ଭାଷା ସାହିତ୍ୟାନୁରାଗ ପୁନଶ୍ଚ ଅବକ୍ଷୟର ସୀମାନ୍ତକୁ ଚାଲିଯିବ। ଆଜି ଉତ୍କଳ ଦିବସରେ ଆମକୁ ଶପଥ ନେବାକୁ ପଡ଼ିବ ।

ଆଜି ପାଳିତ ହେଉଛି ସ୍ୱତନ୍ତ୍ର ଓଡ଼ିଶା ଦିବସ। ଏବେ ସମୟ ସମୁପଗତ। ଉଠ, ଜାଗ୍ରତ ହୁଅ ଉତ୍କଳ ସନ୍ତାନଗଣ। ଭକ୍ତିପୂତ ପ୍ରଣାମ ଜଣାଅ ସେଇ ମହାନ୍ ଓଡ଼ିଆ ଉତ୍କଳ ଗୌରବଙ୍କୁ। ଜାତି, ପ୍ରେମ, ବହ୍ନି ପୁନଃ ପ୍ରଜ୍ୱଳିତ କର, ତାହା ହିଁ ହେବ ସେଇ ମହାନ୍ ଆତ୍ମା ପାଇଁ ସର୍ବଶ୍ରେଷ୍ଠ ସମ୍ମାନ।

ସା/ପୋ– ପୁରୁଷୋତ୍ତମପୁର
କେନ୍ଦ୍ରାପଡ଼ା– ୭୫୪୨୨୩



# ମୋ’ ବାପା

ଗୀତା ମେହେଟ୍ଟା

ଯୋଉଦିନ ସକାଳେ ମୁଁ ଜନ୍ମ ହେଲି, ସେଦିନ ଆମ ଘରେ ଗୋଟେ ପ୍ରକାର ମତୈକ୍ୟ ଗଢି ଉଠିଥିଲା ଯେ ମୋ ନାଁ ଜୋନ୍ ଅଫ୍ ଆର୍କ ରଖାଯିବ । ମାତ୍ର ଏଇ ନାଁଟି ସହ ଭାରତୀୟ ପରିଚିତିର ସମ୍ବନ୍ଧ ରହୁନଥିଲା । ତେଣୁ ମୋ ନାଁ ଦିଆଗଲା ଗୀତା ଅର୍ଥାତ୍ ଗୀତ । ସେସମୟ ଥିଲା ସ୍ୱାଧୀନତା ପାଇଁ ଲଢେଇର ସମୟ ଓ ମୋ ନାଁ ମୁକ୍ତିର ସଙ୍ଗୀତ ରଖାଯିବା କଥା ଉଠିଲା ବେଳେ ସ୍ୱାଧୀନତା ଭାରତର ହାତ ପାଆନ୍ତାରେ ବୋଲି ଏକ ବିଶ୍ୱାସ ଗଢି ଉଠିସାରିଥିଲା । ମାତ୍ର ଏ ପ୍ରକାର ନାମକରଣରୁ ସେମାନଙ୍କର ଅପରିପକ୍ୱ ଆଶାବାଦର ସୂଚନା ହିଁ ମିଳୁଥିଲା । କାରଣ ଏ ଘଟଣାର ଠିକ୍ ତିନି ସପ୍ତାହ ପରେ ଛଅଜଣ ସଶସ୍ତ୍ର କନେଷ୍ଟବଳ ଆମ ‘ଫେରାରମାନଙ୍କ ଅମରାବତୀ’ ଘରେ ପହଂଚିଲେ ଓ ମୋ ବାପାଙ୍କୁ ଧରି ଜେଲ୍‌କୁ ନେଇଗଲେ ।

ମୋ ବାପା ମାଁ ନୂଆଦିଲ୍ଲୀରେ ରହୁଥିଲେ, ଯୋଉ ନୂଆଦିଲ୍ଲୀ ରାଜଧାନୀର ଡିଜାଇନ୍ ପ୍ରସ୍ତୁତ କରିଥିଲେ ଲୁଟିନ୍ସ । ସେତେବେଳେ ସେ ଭାବିଥିଲେ ଯେ ବ୍ରିଟିଶ ସାମ୍ରାଜ୍ୟ ଚିରକାଳ ଭାରତ ମାଟିରେ ଚେର ମାଡି ରହିଥିବ । ମାତ୍ର ଏ ପ୍ରକାର ଧାରଣା ପୋଷଣ କରିବାର କୋଡିଏଟା ବର୍ଷ ଯାଇଛି କି ନାହିଁ ବ୍ରିଟିଶ ଶାସନ ଟଳମଳ ଅବସ୍ଥାକୁ ଆସିଗଲା । ମୋ ବାପା ମାଁ ସେତେବେଳେ ପୁଲିସ ନଜରରୁ ଆତ୍ମଗୋପନ କରିବାକୁ ଚାହୁଁଥିବା ସ୍ୱାଧୀନତା ସଂଗ୍ରାମୀଙ୍କୁ ଅଭୟ ଆଶ୍ରୟ ଦେବାରେ ଲାଗି ପଡିଥାଆନ୍ତି । ଏ କଥା ଜାଣିଥିବା ଜଣେ ବିଦେଶୀ ସ୍ୱାଧୀନତା ସଂଗ୍ରାମୀ ସେଥିପାଇଁ ଆମ ଘରକୁ ‘ଆବସ୍କଣ୍ଡର୍ସ ପାରାଡାଇଜ୍’ ବା ‘ଫେରାର୍‌ମାନଙ୍କ ଅମରାବତୀ’ ବୋଲି ନାଁ ଦେଇଥିଲେ ।

ଯୋଉଦିନ ସକାଳେ ମୁଁ ଜନ୍ମ ହେଲି, ସେଦିନ ଆମ ଘରେ ଗୋଟେ ପ୍ରକାର ମତୈକ୍ୟ ଗଢି ଉଠିଥିଲା ଯେ ମୋ ନାଁ ଜୋନ୍ ଅଫ୍ ଆର୍କ ରଖାଯିବ । ମାତ୍ର ଏଇ ନାଁଟି ସହ ଭାରତୀୟ ପରିଚିତିର ସମ୍ବନ୍ଧ ରହୁନଥିଲା । ତେଣୁ ମୋ ନାଁ ଦିଆଗଲା ଗୀତା ଅର୍ଥାତ୍ ଗୀତ । ସେସମୟ ଥିଲା ସ୍ୱାଧୀନତା ପାଇଁ ଲଢେଇର ସମୟ ଓ ମୋ ନାଁ ମୁକ୍ତିର ସଙ୍ଗୀତ ରଖାଯିବା କଥା ଉଠିଲାବେଳେ ସ୍ୱାଧୀନତା ଭାରତର ହାତ ପାଆନ୍ତାରେ ବୋଲି ଏକ ବିଶ୍ୱାସ ଗଢି ଉଠିସାରିଥିଲା । ମାତ୍ର ଏ ପ୍ରକାର ନାମକରଣରୁ ସେମାନଙ୍କର ଅପରିପକ୍ୱ ଆଶାବାଦର ସୂଚନା ହିଁ ମିଳୁଥିଲା । କାରଣ ଏ ଘଟଣାର ଠିକ୍ ତିନି ସପ୍ତାହ ପରେ ଛଅଜଣ ସଶସ୍ତ୍ର କନେଷ୍ଟବଳ ଆମ ‘ଫେରାରମାନଙ୍କ ଅମରାବତୀ’ ଘରେ ପହଞ୍ଚିଲେ ଓ ମୋ ବାପାଙ୍କୁ ଧରି ଜେଲ୍‌କୁ ନେଇଗଲେ ।

ଏହି ଗିରଫଦାରୀର କାରଣ ଥିଲା ପିସ୍ତଲ । ଗୋଟିଏ ଦଶନ୍ଧି ଧରି ଚାଲି ଆସିଥିବା ଗାନ୍ଧୀଙ୍କ ଅହିଂସା ଆନ୍ଦୋଳନ ବ୍ରିଟିଶମାନଙ୍କୁ ଭାରତରୁ ହଟେଇ ପାରିନଥିଲା । ସେଥିପାଇଁ

ଉଗ୍ର ଜାତୀୟବାଦୀମାନେ, ଯୋଉମାନେ କି ଯୌବନର ଆଦ୍ୟକାଳରେ ହିଁ ପହଞ୍ଚିଥିଲେ, ସେମାନେ ଭାରତୀୟ ସେନାବାହିନୀର ସହାନୁଭୂତିଶୀଳ ଅଧିକାରୀମାନଙ୍କଠାରୁ ଏସବୁ ଅସ୍ତ୍ରଶସ୍ତ୍ର ହାସଲ କରିଥିଲେ ଓ ଦରକାର ବେଳେ ବ୍ରିଟିଶ ହାତରେ ଧରାପଡି ସେମାନଙ୍କ ପାଦତଳେ ପଡିବା ଅପେକ୍ଷା ଠିକଣା ନିଷ୍ପତ୍ତି ନେବା ପାଇଁ ନିଜକୁ ପ୍ରସ୍ତୁତ କରି ରଖୁଥିଲେ । ଏହାର କିଛି ବର୍ଷ ଆଗରୁ ମୋ ବାପାଙ୍କର ଜଣେ ସମ୍ପର୍କୀୟ ଭାଇ, ଉଣେଇଶ ବର୍ଷୀୟ ତରୁଣ କବି ଚିଟାଗଙ୍ଗର ବ୍ରିଟିଶ ଅସ୍ତ୍ରାଗାର ଉପରେ ଚଢଉ କରିଥିଲେ । ମାତ୍ର ବ୍ରିଟିଶ ପୁଲିସ ହାତରେ ଧରାପଡିବା ଅପେକ୍ଷା ମୃତ୍ୟୁ ହିଁ ଶ୍ରେୟସ୍କର ଭାବି ସେ ଗୁଳିବର୍ଷାର ଶିକାର ହୋଇଥିଲେ । ତାଙ୍କର ଆହତ ସାନଭାଇ ପୁଲିସ ହାତରେ ଧରାପଡି କଳାପାଣି ଦଣ୍ଡଭୋଗ କରିଥିଲେ ।

ମୋ ବାପାଙ୍କ ହାତରେ ହାତକଡା ପଡିଲା ପରେ ସେ ମାଆଙ୍କ ପାଖକୁ ଯାଇ ବିଦାୟ ନେବା ଭଙ୍ଗୀରେ ଘରେ ଥିବା ପିସ୍ତଲଗୁଡିକୁ ବାହାରେ ଫିଙ୍ଗିଦେବାକୁ ନିର୍ଦ୍ଦେଶ ଦେଇଥିଲେ । ତାହା ନହେଲେ ବାପାଙ୍କୁ ମଧ୍ୟ କଳାପାଣି ଦଣ୍ଡ ଭୋଗିବାକୁ ପଡିଥାନ୍ତା । କଳାପାଣି ଆଣ୍ଡାମାନ ଦ୍ୱୀପପୁଞ୍ଜର ସେହି ଭୟଙ୍କର କାରଗାରର ନିର୍ଯାତନା ଅବର୍ଣ୍ଣନୀୟ । ମୁଁ ଶୁଣିଛି ଯେ, ମୋ ମାମୁଁଙ୍କ ସାଙ୍ଗରେ ଦଣ୍ଡ ଭୋଗୁଥିବା ସେହି ଜେଲ୍‌ର ଅଧାଅଧି କଏଦୀ ଏ ନିର୍ଯାତନା ସହି ନପାରି ଆତ୍ମହତ୍ୟା କରିଥିଲେ ।

ପିସ୍ତଲଗୁଡିକୁ ବାହାରେ ନେଇ ନିରାପଦରେ କୋଉଠି ପକେଇ ଦେଇ ଆସିବା ମୋ ମା' ପାଇଁ ଗୋଟେ ସମସ୍ୟା ଥିଲା । ଉତ୍ତର ଭାରତର ଆଉ ଆଉ ଝିଅଙ୍କ ପରି ସେ ବି ଅସୂର୍ଯ୍ୟଂପଶ୍ୟା ସଂସ୍କୃତିରେ ବଢିଥିଲା । ନାରୀମାନଙ୍କ ମହଲରେ ଓ ମହିଳା ଶିକ୍ଷକଙ୍କଠାରୁ ତାଲିମ ନେଇ ସେ ତା' ନିଜ ରାଜ୍ୟ କାଶ୍ମୀରର ହ୍ରଦର ଚିତ୍ରଟି ୱାଟରକଲରରେ ଆଙ୍କିବା, ସୀତାରରେ କିଛି ରାଗ ରାଗିଣୀ ବଜେଇବା, ଶାସ୍ତ୍ରୀୟ ସଂସ୍କୃତି ଓ ପାର୍ସୀ କହିବା କାମ ଶିଖିଥିଲା । ମାତ୍ର ଆଧୁନିକ କାଇଦାକାନୁନ ବିଷୟରେ ତା'ର ବେଶୀ କିଛି ଧାରଣା ନଥିଲା । ବାହାଘର ପରେ ପରେ ମୋ ବାପା ମୋ ମାଆର ଏଇସବୁ ନପାରିଲାପଣକୁ ସଜାଡିବାରେ ଲାଗିଗଲେ । ଦୁହିଁଙ୍କ ଉଚ୍ଚତା ଭିତରେ ଥିବା ତାରତମ୍ୟକୁ ଭୁଲି କୋଉ କୋଉ ଜିନିଷ ଆଗେ ହେବା ଦରକାର ସେ ସ୍ଥିର କଲେ । ସେ ମୋ ମାଆଙ୍କୁ ବଲ୍ ଡ୍ୟାନ୍ସ ଓ ବ୍ରିଜ୍ ଖେଳ ଶିଖେଇଲେ । ତା'ପରେ ତାକୁ ସାଇକେଲ୍‌ରେ ଦିନେ ବସେଇ ସେ ନିଜେ ପେଡାଲ ଚଳେଇ ଶିଖିବାଯାଏ ଠେଲି ଚାଲିଲେ ।

ବାପା ନିଜେ ପାଇଲଟ୍ ଥିବାରୁ ମୋ ମାଆକୁ ଉଡାଜାହାଜ ଚଳାଇବା ଶିଖେଇବାକୁ ଚାହୁଁଥିଲେ । ମାତ୍ର ମୋ ମା ମୂଳରୁ ମୋଟର ଚଳେଇବା ଶିଖିନଥିଲା । ତେଣୁ ବାପା ତାକୁ ଆମର ୪ସିଟ୍‌ର ସନବିମ୍ ଟାଇବଟ୍ ଚଳେଇବା ଶିଖେଇଥିଲେ ।

ସେ ଯାହା ହେଉନା କାହିଁକି ମୋ ବାପାଙ୍କୁ ପୋଲିସ ବାନ୍ଧିନେଲା ପରେ ପିସ୍ତଲଗୁଡିକୁ ଗୋଟେଇ ସେଇ ସନବିମ୍ ଟାଇବଟ ଗାଡିରେ ବସିଲା ଓ ବୁଲିଯିବା ବାହାନାରେ ଅନେକ ଦୂରକୁ ଯାଇ ଗୋଟାଏ ଜାଗାରେ ତକିଆ ଖୋଳ ଭିତରେ ଭର୍ତ୍ତି କରିଥିବା ପିସ୍ତଲଗୁଡାକୁ ପକେଇ ଦେଇ ପୁଣି ଫେରିଆସିଲା । ଘରେ ସେତେବେଳେ ମୁଁ ଓ ମୋ ବର୍ଷକର ବଡଭାଇ ଥାଉ ।

ପରଦିନ ମୋ ମା ଜାଣିପାରିଲା ଯେ ସେ ଅନ୍ଧାରରେ ଯୋଉଟିକୁ ନିଭୃତ ସ୍ଥାନ ଭାବି ପିସ୍ତଲଗୁଡିକ ପକେଇ ଦେଇ ଆସିଥିଲା, ତାହା ଥିଲା ପ୍ରକୃତରେ ଚିଫ୍ ଇନ୍ସପେକ୍ଟର ଅଫ୍ ପୋଲିସ୍ ଦପ୍ତରର ପାଚେରୀ କଡ । ସୌଭାଗ୍ୟ ବଶତଃ, ସେପରି ଏକ ନାଟକୀୟ ପରିସ୍ଥିତିରେ ସୁଦ୍ଧା ମୋ ମା ତା'ର ଗୃହିଣୀ ସୁଲଭ କୃପଣ ପଣିଆ ଯୋଗୁଁ ଭଲ ତକିଆ ଖୋଳ (ଯୋଉ ଖୋଳମାନଙ୍କରେ ସେ ମନୋଗ୍ରାମ୍ ବୁଣିଥାଏ) ବ୍ୟବହାର କରିନଥିଲା । ସେଥିପାଇଁ ଆମ ଘର ସହ ପିସ୍ତଲଗୁଡାକର ସମ୍ବନ୍ଧ ସ୍ଥାପିତ ହୋଇପାରିଲା ନାହିଁ ।

ଏ ଘଟଣାର ମାତ୍ର କେଇଟା ଦିନ ଆଗରୁ ମୋ ବାପାଙ୍କୁ ବ୍ରିଟିଶ ସରକାର ସମ୍ମାନିତ କରିଥିଲେ । ଭାଇସରାୟଙ୍କ ପତ୍ନୀ ନିଜେ ତାଙ୍କୁ ମେଡାଲ ପିନ୍ଧେଇ ଦେଇଥିଲେ । କାରଣ ମୋ ବାପା ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଜାପାନୀମାନଙ୍କ ଦ୍ୱାରା ବନ୍ଦୀ ବ୍ରିଟିଶ ପରିବାରଗୁଡିକୁ ମୁକୁଳେଇ ଆଣିଥିଲେ । ତାଙ୍କର ସେହି ଦୁଃସାହସିକ କାର୍ଯ୍ୟକୁ ପରବର୍ତ୍ତୀ ସମୟରେ ଅବଶ୍ୟ

ନାୟକତ୍ୱରେ ଅଭିଷିକ୍ତ କରାଯାଇଛି, ମାତ୍ର ସେତେବେଳେ ସେସବୁ ସେ ସ୍ୱାଭାବିକଭାବେ କରିଥିଲେ ।

କିନ୍ତୁ ସ୍ୱାଧୀନତା ସଂଗ୍ରାମ ସମୟରେ ଭାବପ୍ରବଣତାର ସ୍ଥାନ ନାହିଁ । ବ୍ରିଟିଶ ପରିବାରଗୁଡ଼ିକୁ ସୁରକ୍ଷା ଦେଇଥିବା ମୋ ବାପା ଯେମିତି ସେ ସରକାର ବିରୁଦ୍ଧରେ ପିସ୍ତଲ ରଖିବାକୁ ବିରୋଧାଭାସ ମଣୁନଥିଲେ, ସାହସପାଇଁ କୃତଜ୍ଞତା ଜଣେଇଥିବା ବ୍ରିଟିଶ ପ୍ରଶାସନ ମଧ୍ୟ ସେଇ ଏକା ଲୋକକୁ ଗିରଫ କରିବାବେଳେ କୌଣସି ବିରୋଧାଭାସ ଦେଖିନଥିଲେ ।

ଏ ପ୍ରକାର ନିଷ୍ଠୁରତାକୁ ନେଇ ଜୀବନ ଜୀଇଁବାର ଗୁରୁଦାୟିତ୍ୱ ମୋ ମାଁ ଉପରେ ପଡ଼ିଥିଲା । ପ୍ରାୟ ଚାରିବର୍ଷ ପର୍ଯ୍ୟନ୍ତ ସେ ଦିଇଟି ସାନ ସାନ ପିଲାଙ୍କୁ କୋଳରେ ଧରି ଏ ଜେଲ୍‌ରୁ ସେ ଜେଲ୍ ପର୍ଯ୍ୟନ୍ତ ଧାଇଁଥିଲା ଓ ମୋ ବାପାଙ୍କ ପାଖେ ଗୁପ୍ତ ଚିଠି ସବୁ ପହଁଚେଇ ଦେଉଥିଲା । ବେଳେ ବେଳେ ସେ ଏ ଚିଠିଗୁଡ଼ିକ ମୋ ଭାଇର ଜୋତା ଭିତରେ ଭର୍ତ୍ତି କରି ନେଉଥିଲା ।

ଦୁଇବର୍ଷ ପରେ ମା' ଆମକୁ ଗୋଟେ କନଭେଣ୍ଟରେ ଛାଡ଼ିଲା ଓ ଜେଲ୍ ଡେଇଁ ଖସି ଆସିବା ପାଇଁ ବାପାଙ୍କର ଦୁଃସାହସିକ ଯୋଜନାଗୁଡ଼ିକୁ କେମିତି ହ୍ରାସ କରାଯାଇପାରିବ ସେ ଦିଗରେ ଧ୍ୟାନ ଦେଲା । କିଛି ଦିନପରେ ସେହି ଶୁଭ ମୁହୂର୍ତ୍ତ ଆସିଲା ଯେତେବେଳେ କି ବାପା ଏମିତି ଗୋଟେ ଉଦ୍ୟମ କରି ସଫଳ ହେଲେ, ମାତ୍ର ତାଙ୍କ ହାତଟାକୁ ଭାଙ୍ଗିବସିଲେ । ସେତେବେଳେ ବାପାଙ୍କ ହାତ ଠିକ୍ କରିବା ପାଇଁ ମାଁ ଜଣେ ବିପ୍ଳବୀ ଚିକିତ୍ସକଙ୍କୁ ଅନୁରୋଧ କରିଥିଲେ । ମାସ ମାସ ଧରି ବାପାଙ୍କୁ ଯାନବାହନ ନିୟନ୍ତ୍ରଣ କରୁଥିବା ଟ୍ରାଫିକ ପୋଲିସ ପରି ହାତଟେକି ରହିବାକୁ ପଡ଼ିଥିଲା । କାରଣ ମାଁ ସବୁବେଳେ ଭୟ କରୁଥିଲା ଯେ ତା' ସ୍ୱାମୀର ଉଚ୍ଚତା ଯୋଗୁ ସେ ସହଜରେ ଧରାପଡ଼ିଯିବେ ଓ ଧରାପଡ଼ିଲେ ଜେଲ୍‌ରୁ ଖସି ପଳେଇ ଆସିଥିବା ଅପରାଧରେ ଦେଶାନ୍ତର ଦଣ୍ଡ ଭୋଗ କରିବେ ।

ଜେଲ୍‌ରେ ଥିବାବେଳେ ମୋ ବାପା ତାଙ୍କର ରୋଷେଇ କଳା ଓ ଚେସ୍ ଖେଳର ଦକ୍ଷତା ବଢ଼େଇବାରେ ଲାଗିଥିଲେ । ତା' ସଙ୍ଗେ ସଙ୍ଗେ କୋଉ ଉପାୟରେ ବ୍ରିଟିଶ ସାମ୍ରାଜ୍ୟକୁ ଟଳେଇ ଦେଇହେବ ସେ ଚିନ୍ତା ମଧ୍ୟ କରୁଥିଲେ । ଏହି ଉପାୟ ଚିନ୍ତା କରୁ କରୁ ସେ ଟେକ୍ସଟାଇଲ୍ ମିଲ୍ ମାଲିକ ହେବାର ନିଷ୍ପତ୍ତି ନେଇଥିଲେ । କାରଣ ଟେକ୍ସଟାଇଲ ଫ୍ୟାକ୍ଟ୍ରିଗୁଡ଼ିକ ସେଇ ରଙ୍ଗ ଓ ରାସାୟନିକ ଦ୍ରବ୍ୟ ଆବଶ୍ୟକ କରନ୍ତି ଯାହା ନୋଟ୍ ତିଆରି ପାଇଁ ମଧ୍ୟ ଆବଶ୍ୟକ ହୋଇଥାଏ । ବାପା ଯେମିତି ସ୍ଥିର ନିଶ୍ଚିତ ହୋଇ ଯାଇଥିଲେ ଯେ ସେ ଜେଲ୍‌ରୁ ଖସିବାର ଛଅମାସ ଭିତରେ ପ୍ରଚୁର ଜାଲ୍ ନୋଟ୍ ଛାପି ଉପମହାଦେଶ ସାରା ବିଛେଇ ଦେବେ ଯାହା ଫଳରେ କି ବ୍ରିଟିଶରାଜର ପତନ ଅବଶ୍ୟମ୍ଭାବୀ ହୋଇପଡ଼ିବ... ।



# ବିଜୁବାବୁ: ଓଡ଼ିଆ ସ୍ୱାଭିମାନର ପ୍ରତୀକ

## ( ୨୦୧୬ ମାର୍ଚ୍ଚ ୫ ତାରିଖରେ ବିଜୁବାବୁଙ୍କ ଜୟନ୍ତୀ ଅବସରରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ଦ୍ୱାରା ପ୍ରଦତ୍ତ ଅଭିଭାଷଣ)

ଆଜି ଓଡ଼ିଶା ପାଇଁ ଏକ ଐତିହାସିକ ଦିବସ । ଆଜି ଓଡ଼ିଶା ଜନଗଣଙ୍କର ପ୍ରିୟ ନେତା ବିଜୁବାବୁଙ୍କର ଜନ୍ମ ଦିବସ । ଚଳିତ ବର୍ଷ ମଧ୍ୟ ଆମେ ତାଙ୍କର Birth Centenary ପାଳନ କରୁଛୁ । ଏହି ପବିତ୍ର ଅବସରରେ ମୁଁ ତାଙ୍କ ପ୍ରତି ମୋର ଭକ୍ତିପୂର୍ଣ୍ଣ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ଆଜି ଦେଶ ବିଦେଶରେ ରାଜ୍ୟର ବିଭିନ୍ନ ସ୍ଥାନରେ ଦଳମତ ନିର୍ବିଶେଷରେ ସମସ୍ତେ ବିଜୁବାବୁଙ୍କ ଜନ୍ମ ଦିନକୁ grand scaleରେ ପାଳନ କରୁଛନ୍ତି । ମୁଁ ସେମାନଙ୍କୁ ସମସ୍ତଙ୍କୁ ମୋର ଅଭିନନ୍ଦନ ଜଣାଉଛି ଏବଂ ଉତ୍ସବର ସଫଳତା କାମନା କରୁଛି । ବିଜୁବାବୁ ଥିଲେ ଏକ ବିରାଟ institution. In my view, Biju Babu is an idea in continuity- an idea of realising the dream of progress and prosperity, an idea of Odia self-esteem, selfless service and empowerment. He is an idea that every Odia wants to follow.

ବିଜୁବାବୁ ଥିଲେ ବିଶାଳ ହୃଦୟର ବ୍ୟକ୍ତି । ଏହା ଥିଲା ତାଙ୍କର ଶ୍ରେଷ୍ଠ ପରିଚୟ । ସେ ବଡ କଥା ଚିନ୍ତା କରୁଥିଲେ, ବଡ କାମ କରୁଥିଲେ ଓ ବଡ ସ୍ୱପ୍ନ ମଧ୍ୟ ଦେଖୁଥିଲେ । କିନ୍ତୁ ଗରିବ ଲୋକ କଥା ସେ କେବେ ଭୁଲି ଯାଇ ନଥିଲେ । ସମାଜର ସବୁଠାରୁ ଗରିବ ଲୋକର ବିଜୁବାବୁ ଥିଲେ ସବୁଠାରୁ ବଡ ବନ୍ଧୁ । କୋରାପୁଟର ଆଦିବାସୀ ମହିଳା ହେଉ ବା ଭୁବନେଶ୍ୱରର ରିକ୍ସା ବାଲା । ଗରିବ ଲୋକଙ୍କ ଖୁସି ଥିଲା ତାଙ୍କର ସବୁଠାରୁ ବଡ ସମ୍ପଦ । National politicsର topରେ ଥିଲେ ମଧ୍ୟ ଗରିବ ଲୋକର ଭରସାକୁ ସେ ସମ୍ମାନ ଦେଉଥିଲେ । ସେ ପଞ୍ଚାୟତକୁ ଅଧିକ କ୍ଷମତା ଦେବା ପାଇଁ ଗୁରୁତ୍ୱ ଦେଉଥିଲେ । ମହିଳାମାନଙ୍କ ଦକ୍ଷତା ଓ ପ୍ରତିଭାକୁ ଦେଶରେ ବିକାଶରେ ଲଗାଇବା ପାଇଁ ସେ ସୁଯୋଗ ସୃଷ୍ଟି କରିଥିଲେ । ଭଗୀରଥ ପରି ବିକାଶର ଗଙ୍ଗାକୁ ସେ ଗାଁ ଗାଁରେ ପହଞ୍ଚାଇ ପାରିଥିଲେ । ବିଜୁବାବୁଙ୍କର ସବୁଠାରୁ ବଡ asset ଥିଲା ଆମର ଯୁବ ସମାଜ । ସେ ଜାଣି ଥିଲେ ଯୁବ ସମାଜ ହିଁ ଓଡ଼ିଶାରେ ପରିବର୍ତ୍ତନ ଆଣିପାରିବ ।

ଆଜିଠାରୁ ଏକ ବର୍ଷ ପର୍ଯ୍ୟନ୍ତ ବିଜୁବାବୁଙ୍କ Birth Centenary ପାଳନ କରାଯିବ । ବିଜୁବାବୁ ଥିଲେ ସମସ୍ତଙ୍କର । ସେ ଥିଲେ ଓଡ଼ିଆ ଜାତିର ମୁରବୀ । ତେଣୁ ତାଙ୍କର Birth Centenary ପ୍ରତି ଗାଁ ଗାଁରେ ପାଳନ କରାଯିବ । ସବୁବର୍ଗର ଲୋକଙ୍କୁ ସାମିଲ କରାଯିବ । Publicity ଠାରୁ ସେ ବହୁ ଦୂରରେ ଥିଲେ । ସେ କାମରେ ବିଶ୍ୱାସ କରୁଥିଲେ । ତେଣୁ ତାଙ୍କର ଆଦର୍ଶ ଓ ମୂଲ୍ୟବୋଧ ଗାଁ ଗାଁରେ, ପ୍ରତି ଘରେ, ଯୁବକ, ଛାତ୍ର, ମହିଳା ସମସ୍ତଙ୍କ ପାଖରେ ପହଞ୍ଚିବା ଦରକାର । ସେମାନଙ୍କୁ courage ଓ conviction ସହିତ କାମ କରିବାକୁ inspire କରାଯିବା ଦରକାର । ଓଡ଼ିଶାର resurgent, youth force ଯଦି ଅଙ୍ଗୀକାର ସହିତ କାମ କରିବେ, ତେବେ ଏକ empowered ଓ developed ଓଡ଼ିଶା ଗଠନ ପାଇଁ ବିଜୁବାବୁଙ୍କ ଲକ୍ଷ୍ୟ ପୂରଣ ହୋଇପାରିବ ।

ବିଜୁବାବୁ କ୍ଷମତା ପାଇଁ ରାଜନୀତିକୁ ଆସି ନଥିଲେ । ଓଡ଼ିଶା ମା'ର ସେବା, ଓଡ଼ିଆ ଜାତିର ସେବା ପାଇଁ ସେ ରାଜନୀତିରେ ଯୋଗ ଦେଇଥିଲେ । ଏହି ପବିତ୍ର ଦିବସରେ ମୁଁ ଘୋଷଣା କରୁଛି ଯେ, ଏକ socio-cultural front

ଗଠନ ହେବ । It will fight against superstition and work for spreading social values like voluntary blood donation, service to the sick and elderly persons in every village, panchayat, ward and town. It will also create awareness on women education, child rights and dedicate itself for promotion of local art and culture. Besides, it will help people during natural calamities.

ଓଡ଼ିଶାର ସମ୍ମାନ ଓ ସ୍ୱାଭିମାନ ପାଇଁ ସେ ଯେଉଁ ଲଢେଇ ଆରମ୍ଭ କରିଥିଲେ, ଓଡ଼ିଶାବାସୀଙ୍କ ସହଯୋଗରେ ତାହା ଜାରି ରହିଛି ଓ ଆଗାମୀ ଦିନରେ ମଧ୍ୟ ଜାରି ରହିବ ।

ବିଜୁବାବୁ ଥିଲେ ଭାରତମାତାର ମହାନ୍ ବରପୁତ୍ର । ଓଡ଼ିଶାର ହକ୍ ପାଇଁ ସଂଗ୍ରାମ କରିବା ସହିତ Indian National spiritକୁ ମଧ୍ୟ ସେ ଶକ୍ତିଶାଳୀ କରିଯାଇଛନ୍ତି । He went beyond the limits of regional and National boundaries to reach international height. ବିଜୁବାବୁ ଭାରତ ଇତିହାସର ଏକ ଗୌରବମୟ ଅଧ୍ୟାୟ । ଓଡ଼ିଆ ଜାତିର ସଫଳତା ଏବଂ ଓଡ଼ିଆ ଯୁବ ସମାଜର ସଫଳତା ମଧ୍ୟରେ ସେ ସବୁଦିନ ବଞ୍ଚି ରହିଥିବେ ।



# ସ୍ମୃତିର ଗବାକ୍ଷ

**ଡକ୍ଟର ଗୋପାଳ ଚନ୍ଦ୍ର ବାରିକ**

ଦିବସ ଦିବସ ଉତ୍କଳ ଦିବସ
ନେତ ଉଡେ ଫର ଫର
ଓଡ଼ିଆ ଜାତିର ବାସ୍ନା ମହକାଏ
ଉତ୍କଳ ପ୍ରଦେଶ ମୋର ।
ସେ ଦିନ ଥିଲା ଉଣେଇଶ ଛତିଶ
ଏପ୍ରିଲ ଏକ ତାରିଖ
ଆମେ ପାଇଗଲୁ ଆମ ପରିଚୟ
ଇଏ ସେ ଓଡ଼ିଶା ରାଜ୍ୟ ।
ବଙ୍ଗ ବିହାର ଶାସନକୁ ଭୁଲି
ନୂଆ ହେଲା ଆମ ଇତିହାସ
ଓଡ଼ିଆ ପ୍ରାଣରେ ଉନ୍ମାଦନା ଆଣି
ଆମେ ରଖିଲୁ ଆମରି ଯଶ ।
କେତେ ବୀର ଶୂର ସଂଗ୍ରାମ କରି
ରଚିଲେ ନୂଆ ଜୀବନ
ଆମେ ପାଇଗଲୁ ଆମରି ଭାଷା
ଯାହା ରହିଗଲା ଚିରଦିନ ।

ମହାରାଜା କୃଷ୍ଣ, ଫକୀର ମୋହନ
ମଧୁସୂଦନଙ୍କ ପରି
ଆଉ କେତେ ବୀର ରହିଲେ ଅମର
ଭାଷାକୁ ନିଜର କରି ।
ଭାଷା ଆମର ମାଆ ପରି ଆଜି
ରହିଛି ସେ ପାଖେ ପାଖେ
କେତେ ନୂଆ କଥା ଶିଖାଇ ଦେଉଛି
ନଭାବି କିଛି ପଦେ ।
ସବୁରି ପ୍ରାଣରେ ସବୁରି ମନରେ
ଜାଗି ଉଠୁ ସେ ସନ୍ଦେଶ
ଆମେ ଓଡ଼ିଆ ଭାଷା ଆମ ଓଡ଼ିଆ
ଓଡ଼ିଶା ମୋର ଦେଶ
ଅପ୍ରେଲ ପହିଲା ଆଗତ ହେଲେ
ମନେ ପଡନ୍ତି ସେ ବୀର
ଆସ ମଥାପାତି ପ୍ରଣାମ କରିବା
ରଖିବା ନାମ ଅମର ।

ଶ୍ରୀରାମ ନଗର, ମଧୁପାଟଣା, କଟକ

# ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ

ସ୍ମିତା କର

ସବୁବେଳେ ମାନବ ସେବାକୁ ଜୀବନର ବ୍ରତ ଭାବେ ଗ୍ରହଣ କରିଥିବା ଗୋପବନ୍ଧୁ ନିରାଶ୍ରୟ ଓ ନିଃସହାୟ ବ୍ୟକ୍ତିମାନଙ୍କର ସେବା କରି ନିଜର ସେବା ମନୋବୃତ୍ତିକୁ ଯେଭଳି ଚରିତାର୍ଥ କରିଥିଲେ, ସେଭଳି ଯୁବସମାଜକୁ ଆଦର୍ଶ ମାର୍ଗରେ ଗଢ଼ି ତୋଳିବା ପାଇଁ ସଦା ତତ୍ପର ଥିଲେ । ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ବନ୍ୟା, ବାତ୍ୟା, ମରୁଡ଼ି, ଦୁର୍ବିପାକରେ ନିଃସହାୟ ଜନତାଙ୍କୁ ନିଃସ୍ୱାର୍ଥ ସେବା ସାହାଯ୍ୟ ଯୋଗାଇ ଦେଇ ମାନବୀୟ ଗୁଣ ଏବଂ ନିଜର ଚିନ୍ତା ଚେତନାରେ ଉତ୍କଳୀୟ ଭାବନା ରଖି ଜାତୀୟତାର ନିଚ୍ଛକ ନିଦର୍ଶନ ରଖିଯାଇଛନ୍ତି । ସେ କହିଥିଲେ -



''ଭାରତ ସରସେ ଉତ୍କଳ କମଳ, ତା'ମଧ୍ୟେ କେଶର ପୁଣ୍ୟ ନୀଳାଚଳ ।'' ଗୋପବନ୍ଧୁ ଯାହା ଚିନ୍ତା କରୁଥିଲେ, ତାହା କହୁଥିଲେ, ଯାହା କହୁଥିଲେ ତାହା ଲେଖୁଥିଲେ ଏବଂ କାର୍ଯ୍ୟରେ ମଧ୍ୟ ପରିଣତ କରିବା ପାଇଁ ଆପ୍ରାଣ ଚେଷ୍ଟା କରୁଥିଲେ । ଓଡ଼ିଶା ଥିଲା ତାଙ୍କର ପରିବାର ।

ଯେତେବେଳେ ଇଂରେଜମାନଙ୍କର ଅରାଜକତା, ଅତ୍ୟାଚାର, ଅନୀତି ସାରା ଦେଶକୁ ଗ୍ରାସ କରିଥିଲା, ସେତେବେଳେ ପୁରୀ ଜିଲ୍ଲା ସାକ୍ଷୀଗୋପାଳ ନିକଟସ୍ଥ ସୁଆଣ୍ଡୋ ଗ୍ରାମରେ ୧୮୭୭ ମସିହା ଅକ୍ଟୋବର ମାସ ୯ ତାରିଖ ଦିନ ଜନଜୀବନର ଶ୍ରେଷ୍ଠ ପ୍ରତିନିଧି ଗୋପବନ୍ଧୁ ଦାସ ଭୂମିଷ୍ଠ ହୋଇଥିଲେ । ଉକ୍ତ ସମୟରେ ଧରାପୃଷ୍ଠରେ ଜନ୍ମ ଗ୍ରହଣ କରି ସେ ଜାତୀୟ ଜୀବନକୁ ଅଭୂତପୂର୍ବ କୃତିତ୍ୱର ପରିଚୟ ପ୍ରଦାନ କରିଯାଇଛନ୍ତି । ତାଙ୍କ ପିତାଙ୍କ ନାମ ଦୈତାରୀ ଦାସ । ବିଧାତାର ନିଷ୍ଠୁର ନିର୍ଦ୍ଦେଶ ଏଭଳି ଥିଲା ଯେ ଜନ୍ମର ଅଳ୍ପ କିଛି ଦିନରେ ସେ ତାଙ୍କର ମାତା ସ୍ୱର୍ଣ୍ଣମୟୀ ଦେବୀଙ୍କୁ ହରାଇଥିଲେ । ବାସ୍ତବରେ ତାଙ୍କର ବାଲ୍ୟଜୀବନ ଅତ୍ୟନ୍ତ ଦୁଃଖ ଓ ନୈରାଶ୍ୟ ମଧ୍ୟରେ କଟିଥିଲା । ବିଦ୍ୟାରମ୍ଭ କରିବାର ଖୁବ୍ କମ୍ ଦିନ ମଧ୍ୟରେ ଭାଗବତ ପାଠ ଓ କବିତା ରଚନା କରି ଅବଧାନଙ୍କୁ ସେ ଆଶ୍ଚର୍ଯ୍ୟାନ୍ୱିତ କରି ପକାଇ ଥିଲେ । ପ୍ରତ୍ୟହ ସକାଳ ଓ ସନ୍ଧ୍ୟାରେ ଏକ ନିର୍ଜନ ସ୍ଥାନରେ ଠିଆ ହୋଇ ବକ୍ତୃତା ଦେବା ଅଭ୍ୟାସ କରୁଥିଲେ । ତାଙ୍କର ଏତାଦୃଶ କାର୍ଯ୍ୟକଳାପ ଦେଖି ବହୁ ପିଲା ତାଙ୍କୁ ତାସଲ୍ୟ କରୁଥିଲେ । କିନ୍ତୁ ପରେ ସେହି ଅନୁଭୂତିରୁ ସେ ଯଥେଷ୍ଟ ଶିକ୍ଷା ଲାଭ କରି ଜଣେ ବିଶିଷ୍ଟ ବକ୍ତା ଓ ବ୍ୟବସ୍ଥାପକ ହୋଇପାରିଥିଲେ । ୟୁରୋପୀୟ ଶିକ୍ଷା ପଦ୍ଧତି ପ୍ରତି ତାଙ୍କର ବିତୃଷ୍ଣା ଭାବ ଥିଲା । ଶିକ୍ଷାଲାଭ କରିବା ସମୟରେ

ସେ ବାଙ୍ଗରୁବା (ଗଦାଧରପୁର) ଗ୍ରାମର ବାଲ୍ୟକନ୍ୟା ମୋତି ଦେବୀଙ୍କୁ ବିବାହ କରିଥିଲେ ।

ତା'ପରେ ସେ ରୂପଦେଇପୁର ମାଇନର ସ୍କୁଲରେ ଭର୍ଣ୍ଣାକୁଲାର ଅଧ୍ୟୟନ କରିଥିଲେ । ସେତେବେଳେ ଏଭଳି ଭର୍ଣ୍ଣାକୁଲାର ମାଇନର ସ୍କୁଲରୁ ପାଶ କରିବା ପରେ ସରକାରୀ ସ୍କୁଲରେ ପୁନଶ୍ଚ ସପ୍ତମ ଶ୍ରେଣୀରେ ନାମ ଲେଖାଇବାକୁ ପଡୁଥିଲା । ଗୋପବନ୍ଧୁ ପୁରୀ ଜିଲ୍ଲା ସ୍କୁଲରେ ୭ମ ଶ୍ରେଣୀରେ ନାମ ଲେଖାଇଥିଲେ । ମାଇନର ସ୍କୁଲରେ ପଢୁଥିବା ବେଳେ ଗୋପବନ୍ଧୁ ଓଡ଼ିଆ ସାହିତ୍ୟ ପ୍ରତି ଆକୃଷ୍ଟ ହୋଇଥିଲେ ଓ ହାଇସ୍କୁଲର ଛାତ୍ର ଥିବାବେଳେ ବିଭିନ୍ନ ପତ୍ରପତ୍ରିକାକୁ ଲେଖାଦେବା ଆରମ୍ଭ କରିଥିଲେ ।

ଗୋପବନ୍ଧୁ ୧୮୯୯ ମସିହାରେ ରେଭେନ୍ସା କଲେଜରେ ନାମ ଲେଖାଇଲା ବେଳକୁ ତାଙ୍କ ପିତାଙ୍କର ପରଲୋକ ହୋଇଥିଲା । କଲେଜରେ ପଢ଼ିବା ସମୟରେ ''ଅବକାଶ ଚିନ୍ତା'' ନାମରେ ଏକ ପୁସ୍ତକ (କବିତା) ପ୍ରକାଶ କରାଇଥିଲେ । ତାଙ୍କ ରଚିତ ଗୋ-ମହାତ୍ମ୍ୟ, ନଚିକେତା ଉପାଖ୍ୟାନ, କାରାକବିତା, ଧର୍ମପଦ ଏବଂ ବନ୍ଦୀର ଆତ୍ମକଥା ଆଦି ପୁସ୍ତକ ଓଡ଼ିଆ ସାହିତ୍ୟକୁ ଅନବଦ୍ୟ ଅବଦାନ । ରେଭେନ୍ସା କଲେଜରେ ଅଧ୍ୟୟନ ସମୟରେ ସେ 'କର୍ତ୍ତବ୍ୟବୋଧିନୀ ସମିତି' ନାମରେ ଏକ ସଙ୍ଗଠନ ପ୍ରତିଷ୍ଠା କରି ଏହା ଜରିଆରେ ଲୋକଙ୍କଠାରୁ ଚାନ୍ଦା ସଂଗ୍ରହ କରି ଦରିଦ୍ର ଛାତ୍ରମାନଙ୍କୁ ସାହାଯ୍ୟ କରୁଥିଲେ । ବନ୍ୟାବେଳେ ବିପନ୍ନ ଲୋକଙ୍କ ସାହାଯ୍ୟ ପାଇଁ ଏହି ସମିତି ପକ୍ଷରୁ ଉଦ୍ୟମ ହେଉଥିଲା । ୧୯୦୪ ମସିହାରେ ଗୋପବନ୍ଧୁ ବି.ଏ. ପାଶ୍ କଲେ । ତା'ପରେ ସେ କଲିକତାରେ ଏକ ସମୟରେ ଏମ୍.ଏ. ଏବଂ ବି.ଏଲ୍. ଅଧ୍ୟୟନ ପାଇଁ ନାମ ଲେଖାଇଥିଲେ । ମାତ୍ର କଲିକତାରେ ଓଡ଼ିଆମାନଙ୍କ ମଧ୍ୟରେ ସାକ୍ଷରତା ପ୍ରସାର ଏବଂ ବନ୍ୟା ବିପନ୍ନଙ୍କ ସାହାଯ୍ୟ ପାଇଁ ବାରମ୍ବାର ଓଡ଼ିଶା ଆଗମନ ଯୋଗୁଁ ଏମ୍.ଏ. ପରୀକ୍ଷା ପାଇଁ ସେ ଆଉ ପ୍ରସ୍ତୁତ ହୋଇପାରିଲେ ନାହିଁ । ସେ କେବଳ ବି.ଏଲ୍. ପରୀକ୍ଷା ଦେଲେ ଏବଂ ପାଶ୍ କଲେ । ଗୋପବନ୍ଧୁଙ୍କର ଦୁଇପୁତ୍ର ମଧ୍ୟରୁ ପ୍ରଥମ ପୁତ୍ରର ଅକାଳ ବିୟୋଗ ତାଙ୍କ ଅଧ୍ୟୟନରେ ଘୋର ବାଧା ସୃଷ୍ଟି କରିଥିଲା ଏବଂ ଓକିଲାତି ଆରମ୍ଭରେ ଦ୍ୱିତୀୟ ପୁତ୍ରର ଅକାଳ ବିୟୋଗ ଘଟିଥିଲା । ଗୋପବନ୍ଧୁ ୧୯୦୬ରେ ଆଇନ ପରୀକ୍ଷା ଦେଇ କିଛି ସମୟ ପାଇଁ ନୀଳଗିରିରେ ଶିକ୍ଷକତା କରୁଥିବା ସମୟରେ ପତ୍ନୀ ବିୟୋଗର ଦୁଃସମ୍ବାଦ ପାଇଥିଲେ । ୧୯୦୭ ମସିହାରେ ବ୍ରାହ୍ମଣୀ ଓ ଖରସୁଆଁ ନଦୀର ବଢ଼ିରେ ବୁଲି ବୁଲି ବିପନ୍ନ ଅଞ୍ଚଳରେ ସାହାଯ୍ୟ କରିଥିଲେ । ୧୯୦୯ ମସିହାରେ ସେ ସତ୍ୟବାଦୀ ଏମ୍.ଇ. ସ୍କୁଲ ପ୍ରତିଷ୍ଠା କରିଥିଲେ । ଏହି ସ୍କୁଲ ୧୯୧୨ରେ ହାଇସ୍କୁଲରେ ପରିଣତ ହେଲା । ୧୯୧୭ ମସିହାରେ ସେ ବିହାର ଓଡ଼ିଶା ବ୍ୟବସ୍ଥାପକ ସଭାର ସଭ୍ୟ ହୋଇଥିଲେ ଓ ଚାରିବର୍ଷ ସଭ୍ୟ ରହି ବ୍ୟବସ୍ଥାପକ ଭାବେ ଓଡ଼ିଶାର ବନ୍ୟା, ମରୁଡ଼ି ପ୍ରପୀଡ଼ିତ ଦରିଦ୍ର ଲୋକଙ୍କ ସମସ୍ୟା ଉପସ୍ଥାପିତ କରିଥିଲେ ।

୧୯୦୮ ମସିହାରେ ତାଙ୍କର ରାଜନୈତିକ ଜୀବନ ଆରମ୍ଭ ହୋଇଥିଲା ଉତ୍କଳ ସମ୍ମିଳନୀ ଅନୁଷ୍ଠାନ ମାଧ୍ୟମରେ । ୧୯୧୯ ଅପ୍ରେଲ ମାସରେ ସେ କଟକ ଉତ୍କଳ ସମ୍ମିଳନୀର ସଭାପତି ହୋଇଥିଲେ । ସେ ଉତ୍କଳ ସମ୍ମିଳନୀ ସହିତ ୧୩ ବର୍ଷ ଘନିଷ୍ଠଭାବେ ସମ୍ପୃକ୍ତ ରହି ଓଡ଼ିଆ ଭାଷାଭାଷୀ ଅଞ୍ଚଳମାନଙ୍କର ଏକତ୍ରିକରଣ ଏବଂ ଓଡ଼ିଆଙ୍କ ସ୍ୱାର୍ଥରକ୍ଷା ପାଇଁ ବହୁ ଉଦ୍ୟମ କରିଥିଲେ । ତେଣୁ ସେ ସିଂହଭୂମି ଆଦି ଅଞ୍ଚଳକୁ ବାରମ୍ବାର ଯାଉଥିଲେ । ଉତ୍କଳ ସମ୍ମିଳନୀର କାର୍ଯ୍ୟ କେବଳ ଦେଶ ମିଶ୍ରଣରେ ସୀମିତ ନରଖି ସମ୍ମିଳନୀ ମାଧ୍ୟମରେ ଭାରତର ସ୍ୱରାଜ୍ୟ ପ୍ରାପ୍ତି ପାଇଁ ଗୋପବନ୍ଧୁ ୧୯୨୦ ମସିହା ଚକ୍ରଧରପୁର ସମ୍ମିଳନୀରେ ପ୍ରସ୍ତାବ ଦେଇଥିଲେ ଓ ତାହା ବହୁ ମତରେ ଗୃହୀତ ହୋଇଥିଲା ।

୧୯୨୦ ମସିହାରେ ଓଡ଼ିଶାରେ ଗଠିତ କଂଗ୍ରେସ କମିଟିର ସଭାପତି ହେଲେ ଗୋପବନ୍ଧୁ । ସେହିବର୍ଷ ସେପ୍ଟେମ୍ବର ମାସରେ କଲିକତାରେ ଜାତୀୟ କଂଗ୍ରେସର ବିଶେଷ ଅଧିବେଶନରେ ସେ ଯୋଗଦେଲେ । ସେଠାରୁ ଫେରିଆସି ସେ ଓଡ଼ିଶାରେ ଅସହଯୋଗ ଆନ୍ଦୋଳନ ସଂପର୍କରେ ପ୍ରଚାର ଆରମ୍ଭ କରିଥିଲେ । ଅସହଯୋଗ ଆନ୍ଦୋଳନର ପ୍ରସାର ପାଇଁ ସେ ସମ୍ପୂର୍ଣ୍ଣ ଭାବରେ ନିଜକୁ ଉତ୍ସର୍ଗ କରିଥିଲେ । ବିଭିନ୍ନ ଆନ୍ଦୋଳନରେ ଭାଗନେଇ ଗୋପବନ୍ଧୁ ବହୁବାର କାରାବରଣ କରିଛନ୍ତି । କନିକା ଜମିଦାରୀରେ ପ୍ରଜାଙ୍କ ଉପରେ ଅତ୍ୟାଚାର

ହେବା ଅଭିଯୋଗ କରି ଲେଖା ଛପାଇ ଥିବାରୁ ତାଙ୍କୁ ଗିରଫ କରାଯାଇଥିଲା ।

୧୯୨୫ ମସିହାରେ ଓଡ଼ିଶାର କେତେକ ଜିଲ୍ଲାରେ ବଢ଼ି ହୋଇଥିଲା । ଗୋପବନ୍ଧୁଙ୍କ ଅନୁରୋଧକ୍ରମେ ଆଣ୍ଡ୍ରିଉଜ୍ ସାହେବ ବନ୍ୟାର ଦୁର୍ଗତି ଓ ବିପନ୍ନ ଅଞ୍ଚଳର କରୁଣ ଚିତ୍ର ସ୍ୱଚକ୍ଷୁରେ ଦେଖିବାକୁ ଯାଇଥିଲେ । ଗୋପବନ୍ଧୁ ବନ୍ୟାବିପନ୍ନ ଲୋକମାନଙ୍କୁ ଚୁଡ଼ା, ଚାଉଳ ବାଣ୍ଟିବା ପାଇଁ ଗାଁ ଗାଁ ବୁଲୁଥିଲେ । ଗୋପବନ୍ଧୁ ରିଲିଫ୍ କାର୍ଯ୍ୟ ସହିତ ବିଭିନ୍ନ ଅଞ୍ଚଳରେ ଖଦୀ କାର୍ଯ୍ୟର ପ୍ରସାର ପାଇଁ ମଧ୍ୟ ଉଦ୍ୟମ କରିଥିଲେ ଏବଂ କଂଗ୍ରେସ ସଙ୍ଗଠନ ବିଷୟ ବୁଝୁଥିଲେ । ସେ ଯେଉଁଠାକୁ ଯାଉଥିଲେ ସେଠାରେ ଲୋକଙ୍କ ସେବା ପାଇଁ କର୍ମୀ ମଧ୍ୟ ସଂଗ୍ରହ କରୁଥିଲେ । ଗୋପବନ୍ଧୁଙ୍କ ଅନୁରୋଧରେ ମହାତ୍ମାଜୀ ବନ୍ୟା ପ୍ରତିକାର ବିଶାରଦ ସାର୍ ବିଶ୍ୱେଶ୍ୱରାୟାଙ୍କୁ ଓଡ଼ିଶା ପଠାଇଥିଲେ ଓ ତାଙ୍କ ସୁପାରିଶ ଅନୁସାରେ ଓଡ଼ିଶାରେ ବନ୍ୟା ନିୟନ୍ତ୍ରଣର ପ୍ରତିକାରମାନ ପରିକଳ୍ପିତ ହେଲା । ନଈବଢ଼ି ମନେ ପକାଇ ଦିଏ ପୂଜ୍ୟ ସ୍ୱର୍ଗତଃ ପଣ୍ଡିତ ଗୋପବନ୍ଧୁ ଦାସଙ୍କୁ । ଲାଲା ଲଜପତ ରାୟଙ୍କ ଦ୍ୱାରା ପ୍ରତିଷ୍ଠିତ ଓ ପରିଚାଳିତ ଲୋକ ସେବକ ମଣ୍ଡଳର ଆଜୀବନ ସଭ୍ୟ ଭାବେ ପଣ୍ଡିତ ଗୋପବନ୍ଧୁ ମନୋନୀତ ହୋଇଥିଲେ । ତା'ପରେ ସେ ସତ୍ୟବାଦୀ ପ୍ରେସ୍ ଓ 'ସମାଜ' ଅନୁଷ୍ଠାନକୁ ଲୋକସେବକ ମଣ୍ଡଳକୁ ହସ୍ତାନ୍ତର କରିଥିଲେ ଓ ନିଜେ ଏହି ଅନୁଷ୍ଠାନର ଉପସଭାପତି ହୋଇଥିଲେ । ୧୯୨୮ ଜୁନ ୧୭ ତାରିଖ (ନେତ୍ରୋତ୍ସବ ତିଥି)ରେ ପଣ୍ଡିତ ଗୋପବନ୍ଧୁଙ୍କର ଘଟଣା ବହୁଳ କର୍ମମୟ ଜୀବନର ଅବସାନ ଘଟିଲା, ମାତ୍ର ତାଙ୍କ ନିଜ ଭାଷାରେ–

''ମାନବ ଜୀବନ ନୁହଁଇ କେବଳ<br>
ବର୍ଷ ମାସ ଦିନ ଦଣ୍ଡ<br>
କର୍ମେ ଜୀଏଁ ନର କର୍ମ ଏକା<br>
ତା'ର ଜୀବନର ମାନଦଣ୍ଡ ।''

---

ଡି-୪୪, ବିଜେବି ନଗର<br>
ଭୁବନେଶ୍ୱର



## ଅଧିକାରୀମାନେ ପ୍ରତିଭା ଓ ଦକ୍ଷତା ପ୍ରତିପାଦନ କରନ୍ତୁ : ମନ୍ତ୍ରୀ ଶ୍ରୀ ନାୟକ

ବିଭାଗୀୟ ଅଧିକାରୀମାନେ ପରିବର୍ତ୍ତିତ ପରିବେଶ ସହିତ ସମତାଳରେ ନିଜର ପ୍ରତିଭା ଓ ଦକ୍ଷତା ପ୍ରତିପାଦନ କରିବାକୁ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ, ସୂଚନା ଓ ଲୋକସଂପର୍କ ମନ୍ତ୍ରୀ ଶ୍ରୀ ଅତନୁ ସବ୍ୟସାଚୀ ନାୟକ ପରାମର୍ଶ ଦେଇଛନ୍ତି । ୧୫ ଜଣ ନୂଆ ଉପଖଣ୍ଡ ସୂଚନା ଓ ଲୋକସଂପର୍କ ଅଧିକାରୀଙ୍କୁ ନିଯୁକ୍ତି ପତ୍ର ପ୍ରଦାନ କରି ମନ୍ତ୍ରୀ ଶ୍ରୀ ନାୟକ ଏହି ମର୍ମରେ ବିଭାଗୀୟ ଅଧିକାରୀମାନେ ରାଜ୍ୟରେ ବିକାଶର ବାର୍ତ୍ତାବହ ହେବାକୁ ପରାମର୍ଶ ଦେଇଛନ୍ତି । ସୂଚନା ଓ ଲୋକସଂପର୍କ ବିଭାଗ ସମ୍ମିଳନୀ ପ୍ରକୋଷ୍ଠରେ ଅନୁଷ୍ଠିତ ଏହି କାର୍ଯ୍ୟକ୍ରମରେ ମନ୍ତ୍ରୀ ଶ୍ରୀ ନାୟକ କହିଲେ ଯେ ସୂଚନା ହିଁ ଜଣଙ୍କୁ କ୍ଷମତାପନ୍ନ କରିପାରେ । ସେହି ଦୃଷ୍ଟିରୁ ସୂଚନା ଓ ତଥ୍ୟ ସରବରାହ କ୍ଷେତ୍ରରେ ଉପଲବ୍ଧ ସବୁ ପ୍ରକାର ବୈଷୟିକ କୌଶଳର ପ୍ରୟୋଗରେ ଅଧିକାରୀମାନଙ୍କର ଦକ୍ଷତା ବୃଦ୍ଧି ହେବା ଆବଶ୍ୟକ । ପ୍ରିଣ୍ଟ, ଇଲେକ୍ଟ୍ରୋନିକ୍ ଓ ୱେବ୍ ମିଡିଆ ନିମନ୍ତେ କାର୍ଯ୍ୟ କରିବା ସହିତ ଜନସାଧାରଣ ତଥା ପ୍ରଶାସନ ମଧ୍ୟରେ ସମନ୍ୱୟ ରକ୍ଷା କରି ବୃତ୍ତିଗତ ସଫଳତା ଲାଭ ନିମନ୍ତେ ଅଧିକାରୀମାନେ ଚେଷ୍ଟା କରିବେ ବୋଲି ମନ୍ତ୍ରୀ ଆଶା ପ୍ରକଟ କରିଥିଲେ ।

# ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ

ସାଧନା ମିଶ୍ର

ନବଉତ୍କଳର ନିର୍ମାତା, ବିଚ୍ଛିନ୍ନ ଉତ୍କଳ ଏକତ୍ରୀକରଣର କର୍ଣ୍ଣଧାର, ସାହିତ୍ୟାନୁରାଗୀ, ସୁଶାସକ ତଥା ପ୍ରଜାବତ୍ସଳ ଦାନବୀର ରୂପେ ସର୍ବଜନବିଦିତ ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ଦକ୍ଷିଣ ଓଡ଼ିଶାର ବିଦ୍ୟାନଗରୀ – ପାରଳାଖେମୁଣ୍ଡିରେ ଜନ୍ମ ଗ୍ରହଣ କରିଥିଲେ ମଧ୍ୟ ଉତ୍କଳମାତାର ସେବାରେ ନିଜକୁ ନିୟୋଜିତ କରିଥିଲେ । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କରିବାରେ ତାଙ୍କର ଭୂମିକା ଥିଲା ଉଲ୍ଲେଖନୀୟ ।



୧୮୯୨ ମସିହା ଏପ୍ରିଲ ୨୬ ତାରିଖ (ବୈଶାଖ କୃଷ୍ଣ ଅମାବାସ୍ୟା ତିଥି)ରେ ଗଞ୍ଜାମ ଜିଲ୍ଲାର ପାରଳାଖେମୁଣ୍ଡିର ରାଜପରିବାରରେ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ପିତା ଗୌରଚନ୍ଦ୍ର ଗଜପତି ନାରାୟଣ ଦେବ ଓ ମାତା ରାଧାମଣି ଦେବୀଙ୍କର କୋଳ ମଣ୍ଡନ କରିଥିଲେ । ତୁଳସୀ ଦୁଇପତ୍ରରୁ ବାସିଲା ଭଳି ତାଙ୍କ ଚରିତ୍ର ବାଲ୍ୟ ଜୀବନରୁ ଜଣାପଡ଼ିଥିଲା । ପିତା ଗୌରଚନ୍ଦ୍ର ଗଜପତି ଓ ପିତୃବ୍ୟ ପଦ୍ମନାଭ ଦେବଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁ ଓ ମି. ଏଡମଣ୍ଡ କ୍ୟାଣ୍ଡଲର ଗୃହ ଶିକ୍ଷକଙ୍କ ଦାୟିତ୍ୱରେ ସେ ବାଲ୍ୟଶିକ୍ଷା ସମାପ୍ତ କରିଥିଲେ । ପ୍ରାଥମିକ ଶିକ୍ଷା ଶେଷ ହେବା ପରେ ଉଚ୍ଚ ଶିକ୍ଷା ପାଇଁ ସେ ମାନ୍ଦ୍ରାଜ ଗଲେ । ଅଧ୍ୟକ୍ଷ ମରିସନ୍ ସାହେବ ଓ ଅଧାପକ ମି. ଡି.ଲାହେ, ନିଉଲଣ୍ଡନ କଲେଜରେ ତାଙ୍କର ଶିକ୍ଷକ ଥିଲେ । ମାନ୍ଦ୍ରାଜରେ ଅଧ୍ୟୟନ କରୁଥିବା ସମୟରେ ତାଙ୍କ ପିତା ଗୌରଚନ୍ଦ୍ର ନାରାୟଣ ଦେବଙ୍କର ସ୍ୱର୍ଗବାସ ହୋଇଥିଲା । ପାଠପଢ଼ା ଶେଷ ପରେ କୃଷ୍ଣଚନ୍ଦ୍ର ୧୯୧୩ ମସିହାରେ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରି ଖରସୁଆଁ ରାଜ୍ୟର ରାଜଜେମାଙ୍କୁ ବିବାହ କରିଥିଲେ । ସେହିବର୍ଷ ପ୍ରଥମ ମହାଯୁଦ୍ଧ ହୋଇଥିଲା । ଏହି ମହାସମରର ଘନଘଟା ପୂର୍ବରୁ ସେ ସିଂହାସନ ଆରୋହଣ କରିଥିଲେ । ରାଜ୍ୟାଭିଷେକ ପରେ ସେ ପାଞ୍ଚୋଟି କାର୍ଯ୍ୟ କରିବା ପାଇଁ ଶପଥ ଗ୍ରହଣ କରିଥିଲେ । ୧. ପିତାଙ୍କ ସଂରକ୍ଷିତ ରାଜକୋଷ (୨୫ ଲକ୍ଷ ଟଙ୍କା)ରୁ ନିଜ ସୁଖ ସ୍ୱାଚ୍ଛନ୍ଦ୍ୟ ନିମନ୍ତେ ଖର୍ଚ୍ଚ କରିବେ ନାହିଁ । ସେହି ଗଚ୍ଛିତ ଧନ କେବଳ ଦେଶୋପକାରରେ ଲାଗିବ । ୨. ପୂର୍ବ ପୁରୁଷଙ୍କ ଦ୍ୱାରା ନିର୍ମିତ କୀର୍ତ୍ତିମାଳାର ଉନ୍ନତି ସାଧନ, ୩. ପ୍ରଜାମଙ୍ଗଳ ନିମନ୍ତେ ଲୋକହିତକର କାର୍ଯ୍ୟ କରିବା, ୪. ପଦବ୍ରଜରେ ଯାଇ ବ୍ରହ୍ମକପାଳରେ ପିତା ଓ ପ୍ରପିତାମହଙ୍କୁ ପିଣ୍ଡ ଦେବେ ଓ

୫. ସ୍କଟଲାଣ୍ଡର ବନାନୀ ମଧ୍ୟରେ ପଶୁ ଶିକାର କରିବେ ।

ପରବର୍ତ୍ତୀ ଜୀବନରେ ଏହି ସର୍ତ୍ତଗୁଡ଼ିକ ପାଳନ କରିଥିବା ଯୋଗୁଁ ସେ ପରମ ଶାନ୍ତି ଓ ଆଶ୍ୱସ୍ତି ଲାଭ କରିଥିଲେ । କୃଷ୍ଣଚନ୍ଦ୍ର ଦେବଙ୍କର ଦୁଇ ଗୋଟି ପୁତ୍ର ଥିଲେ । ମାତ୍ର ବୈବାହିକ ଜୀବନ ତାଙ୍କର ଦୀର୍ଘକାଳ ସ୍ଥାୟୀ ହୋଇ ନଥିଲା । ''ପ୍ରଜା ପାଇଁ ରାଜାର ଜନ୍ମ'' – ସତ୍ୟକୁ ଆଧାର କରି ପ୍ରଜାନୁରଞ୍ଜନ ନିମନ୍ତେ ଜୀବନ ଉତ୍ସର୍ଗ କରିଥିଲେ । ସେସମୟରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ବିଭିନ୍ନ ପ୍ରଶାସନିକ ଅଧୀନରେ ରହିଥିଲା । ସମସ୍ତ ଓଡ଼ିଆ ଭାଷାଭାଷୀ ଲୋକେ ଗୋଟିଏ ଅଞ୍ଚଳରେ ରହିଲେ, ଉନ୍ନତି ସମ୍ଭବ ବୋଲି କୃଷ୍ଣଚନ୍ଦ୍ର ଦେବ ହୃଦୟଙ୍ଗମ କରିପାରିଥିଲେ । ତଦନୁସାରେ ସମସ୍ତ ଓଡ଼ିଆଭାଷୀ ଅଞ୍ଚଳର ଏକତ୍ରୀକରଣ କାର୍ଯ୍ୟ କରିବାକୁ ସେ ଶପଥ ଗ୍ରହଣ କରିଥିଲେ । ଉତ୍କଳ ସମ୍ମିଳନୀର ଦଶମ ଅଧିବେଶନ ୧୯୧୪ ମସିହା ଡିସେମ୍ବର ମାସରେ ପାରଳାଖେମୁଣ୍ଡିଠାରେ ଅନୁଷ୍ଠିତ ହୋଇଥିଲା । ଏହା କୃଷ୍ଣଚନ୍ଦ୍ର ଗଜପତିଙ୍କୁ ବିଶେଷ ପ୍ରଭାବିତ କରିଥିଲା । ଏହି ସମ୍ମିଳନୀର ପ୍ରାରମ୍ଭରେ କୃଷ୍ଣଚନ୍ଦ୍ର ଗଜପତି ଦୃଢ଼ତାର ସହିତ ପ୍ରସ୍ତାବ ଦେଇ କହିଲେ, ''ଓଡ଼ିଆ ଭାଷାଭାଷୀଙ୍କୁ ଏକ ଶାସନାଧୀନ କରିବା ପାଇଁ କେବଳ ଦାବି ନ କରି ସମଗ୍ର ବିଚ୍ଛିନ୍ନ ଓଡ଼ିଆ ଅଞ୍ଚଳକୁ ଏକତ୍ରୀତ କରି ଏକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଦାବି କରିବା ସମ୍ପୂର୍ଣ୍ଣ ଯୁକ୍ତିଯୁକ୍ତ ।'' କୃଷ୍ଣଚନ୍ଦ୍ରଙ୍କର ଏଇଭଳି ବଳିଷ୍ଠ ଓ ଅକାଟ୍ୟ ଯୁକ୍ତି ସମ୍ମିଳନୀର ନେତୃବର୍ଗ, ଏପରିକି ବୟୋଜ୍ୟେଷ୍ଠ ନେତା ମଧୁବାବୁଙ୍କୁ ମଧ୍ୟ ଚକିତ କରି ଦେଇଥିଲା ଏବଂ ଗଜପତିଙ୍କର ଏହି ବଜ୍ର ନିର୍ଘୋଷ ନିନାଦ ଗୋପବନ୍ଧୁ ଦାସ, ଫକୀର ମୋହନ ସେନାପତି, ଶଶିଭୂଷଣ ରଥ ଓ ମଧୁସୂଦନ ଦାସ ଇତ୍ୟାଦିଙ୍କର ସମର୍ଥନ ପାଇ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ଏକ ପ୍ରସ୍ତାବ ଭାବରେ ଉତ୍କଳ ସମ୍ମିଳନୀରେ ଗୃହୀତ ହେଲା । ୧୯୧୭ ମସିହାରେ ମଣ୍ଟେଗୁ–ଚେମସ୍ ଫୋର୍ଡ଼ କମିଟି ଭାଷାଭିତ୍ତିକ ପ୍ରଦେଶ ଗଠନ ସପକ୍ଷରେ ମତ ପ୍ରକାଶ କରିଥିଲେ । ଏ ସଂପର୍କରେ ଉତ୍କଳର ସଦସ୍ୟଭାବେ କୃଷ୍ଣଚନ୍ଦ୍ର ଦିଲ୍ଲୀଠାରେ ମଣ୍ଟେଗୁଙ୍କ ସହିତ ସାକ୍ଷାତ କରିଥିଲେ । ୧୯୨୨ ମସିହାରେ ବିହାର–ଓଡ଼ିଶା ବ୍ୟବସ୍ଥାପକ ସଭାରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ମିଶ୍ରଣ ପାଇଁ ଏକ ସ୍ୱତନ୍ତ୍ର ପ୍ରସ୍ତାବ ଗୃହୀତ ହୋଇଥିଲା । ଫିଲିପ୍ ଡଫ୍ କମିଟି ବିଶାଖାପାଟଣା ଓ ଗଂଜାମ ଗସ୍ତ ବେଳେ ଗଜପତିଙ୍କ ସହିତ ସାକ୍ଷାତ କରିଥିଲେ । ୧୯୨୭ ମସିହାରେ ଭାରତରେ ଶାସନ ସଂସ୍କାର ପାଇଁ ବ୍ରିଟିଶ୍ ସରକାର ସାଇମନ୍ କମିଶନ୍ ନିଯୁକ୍ତି କରିଥିଲେ । ସମଗ୍ର ଦେଶ ସେତେବେଳେ ସାଇମନ୍ କମିଶନ୍‌ଙ୍କୁ ବାସନ୍ଦ କରିଥିଲେ । କିନ୍ତୁ ଓଡ଼ିଶାର ସ୍ୱାର୍ଥ ନିମନ୍ତେ ଗଜପତି ଅଣ୍ଟାଭିଡ଼ି ସାଇମନ୍ କମିଶନ୍‌ଙ୍କ ସହିତ କଥାବାର୍ତ୍ତା କରିବା ପାଇଁ ଆଗେଇ ଆସିଥିଲେ । ଯା' ଫଳରେ ଓଡ଼ିଶା କଥା ବିଚାର କରିବା ପାଇଁ ଅଟଲିଙ୍କ ଅଧ୍ୟକ୍ଷତାରେ ଏକ ସବ୍‌କମିଟି ଗଠନ କରାଗଲା ଓ ସେହି କମିଟି ଓଡ଼ିଶା ପାଇଁ ଅନୁକୂଳ ମତ ପ୍ରକାଶ କଲେ । ପ୍ରଥମ ଗୋଲ ଟେବୁଲ ବୈଠକ ଲଣ୍ଡନଠାରେ ଅନୁଷ୍ଠିତ ହେଲା । ବିହାର ଓ ଓଡ଼ିଶା ସରକାରଙ୍କ ତରଫରୁ କୃଷ୍ଣଚନ୍ଦ୍ର ଗଜପତି ମନୋନୀତ ସଭ୍ୟଭାବେ ଗୋଲ ଟେବୁଲ ବୈଠକରେ ଓଡ଼ିଶାର ଦାବି ଉତ୍ଥାପନ କରି ଏକ ଐତିହାସିକ ଭାଷଣ ଦେଇ ବିଟ୍ରିଶ୍ ସରକାରଙ୍କ ଦୃଷ୍ଟି ଆକର୍ଷଣ କରି କହିଥିଲେ, ''ଆମେ ଚାହୁଁ ଭାଷା ଓ ଜାତି ସୂତ୍ରରେ ପ୍ରଦେଶ ଗଠନ । ଏକ କୋଟି ଓଡ଼ିଆଙ୍କ ନିମନ୍ତେ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ ପାଇଁ ଅନୁମତି ନଦେଇ ଆପଣମାନେ ଭାରତରେ ନୂତନ ଶାସନ ସଂସ୍କାର କରିପାରିବେ ନାହିଁ ।'' ଏହି ମନୀଷୀଙ୍କ ଯୁକ୍ତିଯୁକ୍ତ ବକ୍ତବ୍ୟ ଶୁଣି ଗୋଲଟେବୁଲ ବୈଠକରେ ଉପସ୍ଥିତ ବ୍ରିଟିଶ୍ ସରକାରଙ୍କ ପ୍ରତିନିଧିମାନେ ସ୍ତବ୍ଧ ହୋଇଯାଇଥିଲେ ।

ବିଲାତ ସରକାର ୧୯୩୧ ମସିହାରେ ଓଡ଼ନେଲ କମିଟି ବସାଇଲେ ଓ ଏହି କମିଟି ମୁଖ୍ୟତଃ ତିନୋଟି ବିଷୟ ପ୍ରତି ଧ୍ୟାନ ଦେଇଥିଲେ । ତନ୍ମଧ୍ୟରୁ ଗୋଟିଏ ଥିଲା ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ସୀମା ନିର୍ଦ୍ଧାରଣ । ୧୯୩୨ ମସିହାରେ ଓଡ଼ନେଲ କମିଟି ରିପୋର୍ଟ ପ୍ରକାଶ ପାଇଲା । ଫିଲିପ୍ ଡଫ୍ କମିଟିର ଅନୁମୋଦନ ଲାଭ କରି ୧୯୩୩ ମସିହାରେ ଏହି ବିଷୟ ଶ୍ୱେତପତ୍ରରେ ପ୍ରକାଶ ପାଇଲା । ଏହି ଶ୍ୱେତପତ୍ର ନୈରାଶ୍ୟଜନକ ଥିଲା । କାରଣ ପାରଳାଖେମୁଣ୍ଡି ଓ ଜୟପୁର ଜମିଦାରୀ ଏଥିରୁ ବାଦ୍ ପଡ଼ିଥିଲା । ମଧୁବାବୁଙ୍କ ନିବେଦନକ୍ରମେ କୃଷ୍ଣଚନ୍ଦ୍ର ଜଏଣ୍ଟ ସିଲେକ୍ଟ କମିଟି ଆଗରେ ଏହି କଥା ଉପସ୍ଥାପନ କରିବା ନିମନ୍ତେ ବିଲାତ ଗଲେ ଏବଂ ଏହି କମିଟିର ଅଧ୍ୟକ୍ଷ ଲର୍ଡ଼ ଲିନ୍‌ଲିଥିଗୋଙ୍କୁ ପ୍ରଭାବିତ କରିପାରିଥିଲେ । ପରେ ଭାରତର ବଡ଼ଲାଟ ଲର୍ଡ଼ ଉଇଲିଂଡ଼ନ୍‌ଙ୍କୁ

ପ୍ରଭାବିତ କରି ଓଡ଼ିଶା ସହିତ ପାରଳାଖେମୁଣ୍ଡି ଓ ଜୟପୁରକୁ ମିଶାଇବା ପାଇଁ ରାଜି କରାଇ ପାରିଥିଲେ । ପରିଶେଷରେ ୧୯୩୬ ମସିହା ଅପ୍ରେଲ ପହିଲା ଦିନ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ମାନ୍ୟତା ଲାଭ କଲା । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ଠିକ୍ ବର୍ଷକ ପରେ ଅର୍ଥାତ୍ ୧୯୩୭ ମସିହା ଏପ୍ରିଲ ମାସ ୧ ତାରିଖରେ ଓଡ଼ିଶାର ପ୍ରଥମ ଗଭର୍ଣ୍ଣର ସାର୍ ଜନ୍ ଅଷ୍ଟିନ୍ ହବାକ୍ ଗଜପତି କୃଷ୍ଣଚନ୍ଦ୍ର ଦେବଙ୍କୁ ନେତା ରୂପେ ନିର୍ବାଚିତ କରି ପ୍ରଥମ ମନ୍ତ୍ରିମଣ୍ଡଳ ଗଠନ କରିବା ପାଇଁ ନିମନ୍ତ୍ରଣ କଲେ । ତେଣୁ ଗୋରାଚାନ୍ଦ ପଟ୍ଟନାୟକ ଓ ଲତିଫୁର୍ ରହମାନ୍‌ଙ୍କୁ ସଦସ୍ୟ ଭାବରେ ନେଇ ମନ୍ତ୍ରିମଣ୍ଡଳ ଗଠନ କରି ଓଡ଼ିଶାର ପ୍ରଥମ ପ୍ରଧାନମନ୍ତ୍ରୀ ଭାବେ ୧୯୩୭ ମସିହା ଅପ୍ରେଲ ପହିଲାରୁ ଜୁଲାଇ ମାସ ଅଠର ତାରିଖ ପର୍ଯ୍ୟନ୍ତ ଶାସନ କାର୍ଯ୍ୟ ପରିଚାଳନା କଲେ ଏବଂ ପରେ ୧୯୪୧ ମସିହା ଡିସେମ୍ବର ମାସଠାରୁ ୧୯୪୪ ମସିହା ଜୁନ୍ ମାସ ପର୍ଯ୍ୟନ୍ତ ତୃତୀୟ ମନ୍ତ୍ରିମଣ୍ଡଳରେ ପୁନର୍ବାର ପ୍ରଧାନମନ୍ତ୍ରୀ ରୂପେ ଯୋଗ ଦେଇ ଦକ୍ଷତାର ସହ ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି ଏବଂ ଓଡ଼ିଆ ଜାତି ତଥା ଭାଷାସାହିତ୍ୟର ଅଭିବୃଦ୍ଧି ପାଇଁ ନିଷ୍ଠାପର ଭାବରେ ବହୁ ଜନହିତକର ଓ ଉନ୍ନୟନମୂଳକ କାର୍ଯ୍ୟ କରିଥିଲେ । ପରବର୍ତ୍ତୀ ସମୟରେ ସେ ପ୍ରତ୍ୟକ୍ଷ ବିବାଦମାନ ରାଜନୀତିରୁ ଅପସରି ଯାଇ କୃଷି ଓ ଶିଳ୍ପର ଉନ୍ନତି କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ । ସ୍ୱାଧୀନତା ପରବର୍ତ୍ତୀ କାଳରେ ୧୯୫୪ ମସିହାରେ ସେ ହିନ୍ଦୁସ୍ଥାନ୍ ଷ୍ଟିଲ୍ ଲିମିଟେଡ୍‌ର ନିର୍ଦ୍ଦେଶକ ରୂପେ କେନ୍ଦ୍ର ସରକାରଙ୍କ ଦ୍ୱାରା ମନୋନୀତ ହୋଇଥିଲେ ।

ରାଜନୀତି, ଶିଳ୍ପ, ଶିକ୍ଷା, ଗମନାଗମନ ଓ କୃଷି ବ୍ୟତୀତ ସାହିତ୍ୟ କ୍ଷେତ୍ରରେ ମଧ୍ୟ ତାଙ୍କର ଅବଦାନ ଅତୁଳନୀୟ । କୃଷ୍ଣଚନ୍ଦ୍ର ଗଜପତି ଉଚ୍ଚଶିକ୍ଷାର ସୁବିଧା ପାଇଁ କଲେଜ ପ୍ରତିଷ୍ଠା କରିବା ସଂଗେସଂଗେ ଗରିବ ଛାତ୍ରଛାତ୍ରୀଙ୍କୁ ବୃତ୍ତି ପ୍ରଦାନ ବ୍ୟବସ୍ଥା ମଧ୍ୟ କରିଥିଲେ । ମହାରାଜାଙ୍କ ମନ୍ତ୍ରିତ୍ୱ ଥିବାଯାଏଁ ତାଙ୍କର ମାସିକ ଦରମା ଓ ଗସ୍ତଖର୍ଚ୍ଚ ସବୁ ଉତ୍କଳ ବିଶ୍ୱବିଦ୍ୟାଳୟକୁ ଦାନ କରୁଥିଲେ । ପଣ୍ଡିତ ଗୋପୀନାଥ ନନ୍ଦଙ୍କ ''ଓଡ଼ିଆ ଶବ୍ଦତତ୍ତ୍ୱବୋଧ ଅଭିଧାନ''ର ମୁଦ୍ରଣ ଖର୍ଚ୍ଚ, ଗୋପାଳକୃଷ୍ଣ ପଦ୍ୟାବଳୀର ପ୍ରକାଶନ, ଜଗବନ୍ଧୁ ସିଂହଙ୍କ ''ପ୍ରାଚୀନ ଉତ୍କଳ'' ପ୍ରକାଶନ, ସିଂହଭୂମି ଅଞ୍ଚଳରେ ଓଡ଼ିଆ ଭାଷାର ପ୍ରସାର ଓ ପ୍ରଚାର, ''ପୂର୍ଣ୍ଣଚନ୍ଦ୍ର ଭାଷାକୋଷ ୫ମ ଖଣ୍ଡ''ର ମୁଦ୍ରଣ ଓ ବହୁ କାବ୍ୟର ପ୍ରକାଶନ ପାଇଁ ସଂପୂର୍ଣ୍ଣ ଆର୍ଥିକ ସହାୟତା ଯୋଗାଇ ଦେଇ ଗଜପତି ନିଜକୁ ଜଣେ ସାହିତ୍ୟାନୁରାଗୀ ଭାବରେ ପରିଚୟ ଦେଇଥିଲେ । ସେ ତତ୍‌କାଳୀନ ଓଡ଼ିଶାର କୃଷକମାନଙ୍କ ଉନ୍ନତି ପାଇଁ ପାରଳାଖେମୁଣ୍ଡିଠାରେ ଆଦର୍ଶ କୃଷି ଫାର୍ମ ଓ କଟକଠାରେ କେନ୍ଦ୍ରୀୟ ଧାନ ଗବେଷଣା କେନ୍ଦ୍ର ପ୍ରତିଷ୍ଠା କରିଥିଲେ । ଓଡ଼ିଶା ହାଇକୋର୍ଟ ପ୍ରତିଷ୍ଠାର ପ୍ରାରମ୍ଭିକ କାର୍ଯ୍ୟ ମଧ୍ୟ ତାଙ୍କ ସମୟରେ ଆରମ୍ଭ ହୋଇଥିଲା । ସେ ପାରଳାଖେମୁଣ୍ଡିଠାରେ ମଧ୍ୟ ଏକ ଛୋଟ ଇସ୍ପାତ ଶିଳ୍ପ ସଂସ୍ଥା ପ୍ରତିଷ୍ଠା କରି ତାହାକୁ ଟାଟା କମ୍ପାନୀ ସହିତ ଚୁକ୍ତି କରିଥିଲେ । ଓଡ଼ିଶାରେ କଳା ଓ ସଂସ୍କୃତିର ପ୍ରସାର ଓ ପ୍ରଚାର ପାଇଁ ତାଙ୍କର ଅବଦାନ ଅତୁଳନୀୟ । ବିଶେଷ କରି ଲଳିତକଳା, ସାହିତ୍ୟ, ସଙ୍ଗୀତ, ରାଗ ରାଗିଣୀ, ଗୋଟିପୁଅ ନାଚ ବା ଗାନ୍ଧର୍ବ ବିଦ୍ୟାରେ ମହାରାଜାଙ୍କ ଜନ୍ମସ୍ଥାନ ପାରଳାଖେମୁଣ୍ଡି ଥିଲା ଚିର ପ୍ରସିଦ୍ଧ । ଯାହାକି ସହରର ଅବସ୍ଥିତି ସାହିତ୍ୟ ସଙ୍ଗୀତର ଏକ କ୍ଷୁଦ୍ର ସଂସ୍କରଣ ବୋଲି ମନେହୁଏ ।

୧୯୭୪ ମସିହା ମଇ ମାସ ୨୫ ତାରିଖରେ ୮୨ ବର୍ଷ ବୟସରେ ପାରଳାଖେମୁଣ୍ଡି ସହରରେ ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କର କର୍ମମୟ ଜୀବନର ଅବସାନ ଘଟିଲା । ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ନେଇ ଏକ ସ୍ୱତନ୍ତ୍ର ରାଜ୍ୟ ଗଠନ କରିବାରେ ତାଙ୍କର ଅଦମ୍ୟ ପ୍ରଚେଷ୍ଟା ଥିଲା ଅତୁଳନୀୟ । ଜଣେ ବିଚକ୍ଷଣ ରାଜନୀତିଜ୍ଞ, ଦେଶଭକ୍ତ, ଶିକ୍ଷାନୁରାଗୀ ତଥା ସୁଶାସକ ଭାବେ ତାଙ୍କର ନାମ ଚିରଦିନ ପାଇଁ ଓଡ଼ିଶା ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ ।

ପ୍ଲଟ୍–ଏଲ୍.ପି. ୮୨୦
ପ୍ରଶାନ୍ତି ବିହାର, ପଟିଆ, ଭୁବନେଶ୍ୱର



# ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ

**ଦେବାଶିଷ ପଟ୍ଟନାୟକ**

ନବ ଉତ୍କଳର ନିର୍ମାତାମାନଙ୍କ ମଧ୍ୟରୁ ମୟୂରଭଞ୍ଜର ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ ହେଉଛନ୍ତି ଅନ୍ୟତମ । ଖଣ୍ଡବିଖଣ୍ଡିତ ଉତ୍କଳର ଏକୀକରଣ ତଥା ଭାଷାଭିତ୍ତିରେ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ଗଠନ କରିବା ପାଇଁ ଯେଉଁ ଆନ୍ଦୋଳନର ସୂତ୍ରପାତ ହୋଇଥିଲା ଏବଂ ଉକ୍ତ କାର୍ଯ୍ୟରେ ଉତ୍କଳଗୌରବ ମଧୁସୂଦନଙ୍କୁ ଯେଉଁ କେତେଜଣ ମନୀଷୀ ସହାୟତା କରିଥିଲେ, ସେମାନଙ୍କ ମଧ୍ୟରେ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ ଥିଲେ ଅଗ୍ରଗଣ୍ୟ ।



ଉତ୍କଳର ଏହି ବରପୁତ୍ର ତଥା ନବଉତ୍କଳର ଅନ୍ୟତମ ନିର୍ମାତା ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ ୧୮୭୧ ମସିହା ଡିସେମ୍ବର ୧୭ ତାରିଖରେ ମୟୂରଭଞ୍ଜ ରାଜ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଥିଲା କୃଷ୍ଣଚନ୍ଦ୍ର ଭଞ୍ଜ । ମହାରାଜାଙ୍କ ବାଲ୍ୟଶିକ୍ଷା ବାରିପଦାରେ ସମାପ୍ତ ହୋଇଥିଲା । ମାତ୍ର ୯ ବର୍ଷ ବୟସରେ ସେ ପିତୃହରା ହୋଇଥିଲେ । ପିତାଙ୍କ ମୃତ୍ୟୁ ପରେ ତତ୍କାଳୀନ ବଙ୍ଗ-ବିହାର-ଓଡ଼ିଶାର ଛୋଟ ଲାଟସାହେବଙ୍କ ସହାୟତାରେ ସେ ବିଦ୍ୟା ଅଧ୍ୟୟନ କରିଥିଲେ । ଶ୍ରୀରାମଚନ୍ଦ୍ର ମୟୂରଭଞ୍ଜରୁ ଯାଇ କଟକରେ ଥିବା ମୟୂରଭଞ୍ଜ ଭବନରେ ଗୁରୁ ବ୍ରେଟାମ୍ କିଡେଲ୍ ସାହାବଙ୍କ ପାଖରେ ଦୀର୍ଘ ୧୨ ବର୍ଷ କାଳ ରହି ବିଦ୍ୟା ଅଧ୍ୟୟନ କରିଥିଲେ । ସେ ଉଭୟ ଗୋବିନ୍ଦଚନ୍ଦ୍ର ମହାପାତ୍ର ଓ ମିଷ୍ଟର କିଡେଲ୍‌ଙ୍କ ତତ୍ତ୍ୱାବଧାନରେ ଅଧ୍ୟୟନ କରି ୧୮୮୮ ମସିହାରେ ରେଭେନ୍ସା କଲିଜିଏଟ୍ ସ୍କୁଲରୁ ଏଣ୍ଟ୍ରାନ୍ସ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ ଏବଂ ଏହାପରେ ସେ ରେଭେନ୍ସା କଲେଜରେ ଏଫ୍.ଏ. ପଢ଼ି ପାଶ୍ କରିଥିଲେ । ବି.ଏ. ପଢୁଥିବା ସମୟରେ ସେ ସାବାଳକ ହୋଇ ରାଜଗାଦିରେ ବସିବାରୁ ସେ ବି.ଏ. ପରୀକ୍ଷା ଦେଇ ପାରିନଥିଲେ । ତାଙ୍କର ଇଂରାଜୀରେ ବଡ଼ ଦକ୍ଷତା ଥିଲା । ଖେଳିବା ଏବଂ ଶିକାର କରିବାରେ ତାଙ୍କର ପିଲାଦିନୁ ପ୍ରିୟତା ଥିଲା । ସେ ଜଣେ ନିର୍ଭୀକ ସାହସୀ ରାଜକୁମାର ହିସାବରେ ଓଡ଼ିଶାରେ ପରିଚିତ ଥିଲେ ।

୧୮୯୨ ମସିହା ଅଗଷ୍ଟ ମାସ ୧୫ ତାରିଖରେ ଶ୍ରୀରାମଚନ୍ଦ୍ର ମୟୂରଭଞ୍ଜ ରାଜ ସିଂହାସନରେ ଅଭିଷିକ୍ତ ହୋଇଥିଲେ । ସେ ରାଜ୍ୟର ମଙ୍ଗଳ ତଥା ପ୍ରଜାଙ୍କ ହିତ ପାଇଁ ସର୍ବଦା ଚେଷ୍ଟିତ ଥିଲେ । ଶ୍ରୀରାମଚନ୍ଦ୍ର ଜଣେ ସରଳ ଓ ଅମାୟିକ ବ୍ୟକ୍ତି ଭାବେ ପରିଚିତ ଥିଲେ । ଗର୍ବ, ଅହଙ୍କାର ତାଙ୍କ ହୃଦୟରେ ସ୍ଥାନ ପାଇ ନଥିଲା । ଛାତ୍ର ବୟସରେ ସହପାଠୀଙ୍କ ସହିତ ସରଳ ଭାବରେ ମିଶୁଥିଲେ । ପାଠ ପଢୁଥିବା ସମୟରେ ସେ ଅନେକ ସ୍ଥାନ ବୁଲି ଯାଇଥିଲେ

। ମାତ୍ର ରାଜବେଶ ବା ରାଜ ଢଙ୍ଗଢ଼ାଙ୍ଗରେ ସେ ଯିବାକୁ ଇଚ୍ଛା କରୁନଥିଲେ । ତାଙ୍କର ଏହି ସରଳ ପ୍ରକୃତି ଯୋଗୁଁ ସେ ସବୁଠାରେ ସମସ୍ତଙ୍କର ଅତି ପ୍ରିୟପାତ୍ର ହୋଇଥିଲେ । ପ୍ରଜା ପାଳନ ରାଜାର ଧର୍ମ, ଏ କଥା ଶ୍ରୀରାମଚନ୍ଦ୍ରଙ୍କୁ ଖୁବ୍ ଭଲଭାବେ ଜଣାଥିଲା । ରାଜଦଣ୍ଡ ଧରିବା ପରେ ଶ୍ରୀରାମଚନ୍ଦ୍ର ରାଜନୀତି ଓ ଦର୍ଶନଶାସ୍ତ୍ରକୁ ଭଲକରି ପଢ଼ିବାରେ ଲାଗିଲେ । ନିଜ ରାଜ୍ୟକୁ ଏକ ଆଦର୍ଶ  ରାଜ୍ୟ କରି ଗଢ଼ିବା ପାଇଁ ସେ ବରାବର ଚେଷ୍ଟା କରୁଥିଲେ । ଗୁଣୀ ଓ ଉଦାର ଲୋକଙ୍କୁ ପାଖରେ ରଖି ସୁଚାରୁରୂପେ ରାଜ୍ୟ ଶାସନ କରୁଥିଲେ । ଏହି ସମୟରେ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସଙ୍କ କାର୍ଯ୍ୟଶୈଳୀ ସମଗ୍ର ରାଜ୍ୟରେ ଗୁଂଜରିତ ହେଉଥିଲା । ତାଙ୍କ ଗୁଣରେ ମୁଗ୍ଧ ହୋଇ ଶ୍ରୀରାମଚନ୍ଦ୍ର ତାଙ୍କୁ ରାଜ୍ୟ ସରକାରଙ୍କ ଓକିଲ ପଦରେ ନିଯୁକ୍ତି କରିଥିଲେ । ପଣ୍ଡିତ ଗୋପବନ୍ଧୁ ସେତେବେଳେ ସକଳ କାର୍ଯ୍ୟରେ ତାଙ୍କର ପରମ ସଖା ରୂପେ ପରାମର୍ଶଦାତା ଥିଲେ । ଶ୍ରୀରାମଚନ୍ଦ୍ର ଓ ଗୋପବନ୍ଧୁଙ୍କ ମଧ୍ୟରେ ଏପରି ଘନିଷ୍ଠ ବନ୍ଧୁତା ଥିଲା, ଯେକୌଣସି କାର୍ଯ୍ୟ କଲାବେଳେ ଶ୍ରୀରାମଚନ୍ଦ୍ର ଗୋପବନ୍ଧୁଙ୍କ ପରାମର୍ଶ ନେଉଥିଲେ ।

ରାଜା ହେବାର ୪ ବର୍ଷ ପରେ ୧୮୯୬ ମସିହାରେ ଶ୍ରୀରାମଚନ୍ଦ୍ରଙ୍କର ବିବାହ ଲକ୍ଷ୍ମୀ କୁମାରୀଙ୍କ ସହିତ ହୋଇଥିଲା । ଗଣତାନ୍ତ୍ରିକ ଉପାୟରେ ଶାସନ ପରିଚାଳନା ପାଇଁ ସେ ଷ୍ଟେଟ୍ କାଉନ୍‌ସିଲ୍ ଗଠନ କରିଥିଲେ ଏବଂ ସେଥିରେ ସେ ସରକାରୀ ଓ ବେସରକାରୀ ବ୍ୟକ୍ତିବିଶେଷଙ୍କୁ ସଦସ୍ୟଭାବେ ଗ୍ରହଣ କରିଥିଲେ । ପ୍ରଜା ହିତକର ସମସ୍ତ କାର୍ଯ୍ୟ ପାଇଁ କାଉନ୍‌ସିଲ୍ ମାଧ୍ୟମରେ ଆଇନର ସଂଶୋଧନ କରିଥିଲେ । ରାଜ୍ୟ ଶାସନର ସୁବିଧା ପାଇଁ ସେ ପ୍ରଥମ କରି ସମଗ୍ର ରାଜ୍ୟକୁ ୪ଟି ବିଭାଗରେ ବିଭକ୍ତ କରିଥିଲେ । ଇଂରେଜ ଶାସନ ଢାଞ୍ଚାରେ ଶିକ୍ଷା, ସ୍ୱାସ୍ଥ୍ୟ ଓ ପୋଲିସ୍ ବିଭାଗରେ ନୂତନ ସଂସ୍କାର ଆଣିଥିଲେ । ତାଙ୍କର ପିତାଙ୍କ ଅମଳରେ ରାଜ୍ୟର ରାଜସ୍ୱ ୪ ଲକ୍ଷ ଟଙ୍କା ଥିଲା କିନ୍ତୁ ଶାସନକୁ ସୁନିୟନ୍ତ୍ରିତ କରିବା ପରେ ରାଜସ୍ୱ ପରିମାଣ ୧୪ ଲକ୍ଷ ଟଙ୍କାକୁ ବୃଦ୍ଧି ପାଇଥିଲା ।

ମୟୂରଭଞ୍ଜର ଅରଣ୍ୟ ସମ୍ପଦ ଓ ଖଣିଜ ସମ୍ପଦର ସେ ପୁନର୍ମୂଲ୍ୟାୟନ କରିଥିଲେ ଏବଂ ତାଙ୍କ ଅମଳରେ ବୈଜ୍ଞାନିକ ଉପାୟରେ ଲୌହ ଉତ୍ପାଦନ ଆରମ୍ଭ ହୋଇଥିଲା । ରାଜକୋଷରୁ ୬ ଲକ୍ଷ ଟଙ୍କା ବ୍ୟୟ କରି ସେ ହଳଦିହ ଓ ହଳଦିଆ ନାମକ ୨ଟି ସ୍ଥାନରେ ଦୁଇଟି ବୃହତ୍ ଜଳଭଣ୍ଡାର ସ୍ଥାପନ କରିଥିଲେ । ତାଙ୍କ ରାଜ୍ୟରେ ଥିବା ଜଳପ୍ରପାତମାନଙ୍କରୁ ବିଦ୍ୟୁତ୍ ଉତ୍ପାଦନ କରିବା ପାଇଁ ସେ ପ୍ରୟାସୀ ହୋଇଥିଲେ । ରୂପ୍‌ସାଠାରୁ ବାରିପଦା ପର୍ଯ୍ୟନ୍ତ ଯେଉଁ ରେଳ ଲାଇନ୍ ଅଛି, ତାହା ମହାରାଜା ଶ୍ରୀରାମଚନ୍ଦ୍ରଙ୍କର କୀର୍ତ୍ତି । ଏଥିପାଇଁ ୬ ଲକ୍ଷ ଟଙ୍କା ବ୍ୟୟ ହୋଇଥିଲା ଏବଂ ଏହାର ଶୁଭ ଉଦ୍‌ଘାଟନ ପାଇଁ ସେତେବେଳର ଛୋଟ ଲାଟସାହେବ ବାରିପଦା ଆସିଥିଲେ । ଶାସନର ଅଳ୍ପ ଦିନ ମଧ୍ୟରେ ରାଜ୍ୟରେ ୫୦୦ ମାଇଲ ରାସ୍ତା ନିର୍ମାଣ କରାଇଥିଲେ । ଶିକ୍ଷା କ୍ଷେତ୍ରରେ ସେ ପର୍ଯ୍ୟାପ୍ତ ଧନ ବ୍ୟୟ କରିଥିଲେ ଓ ପ୍ରାଇମେରୀ ସ୍କୁଲ ସଂଖ୍ୟା ୪୪ରୁ ୪୦୦କୁ ବୃଦ୍ଧି କରାଇଥିଲେ । କାଠ, ପଥର, ମଠା, ଟସର ଶିଳ୍ପ ଆଦି ବିଷୟରେ ସେ ଯଥେଷ୍ଟ ଆଗ୍ରହ ପ୍ରକାଶ କରି ପ୍ରଜାମାନଙ୍କୁ ଅର୍ଥ ସାହାଯ୍ୟ ଦେଇ କଳକାରଖାନାମାନ ବସାଇଥିଲେ । ସେ ରାଜଧାନୀ ବାରିପଦାରେ ଏକ ଦୁଷ୍ପ୍ରାପ୍ୟ ପୁସ୍ତକାଳୟ, ଡାକ୍ତରଖାନା ଆଦି ବହୁ ଲୋକହିତକର କାର୍ଯ୍ୟ କରିଥିଲେ । ଜମି ବନ୍ଦୋବସ୍ତ ଓ ସ୍ୱତ୍ତ୍ୱ ନିର୍ଦ୍ଧାରଣରେ ଚାଷୀ ଓ କୃଷକ ଯେପରି ଉପକୃତ ହେବେ ସେ ଦିଗରେ ପ୍ରଗାଢ଼ ଉଦ୍ୟମ ଚଳାଇଥିଲେ । ମାତ୍ର ୨୦ ବର୍ଷ ଶାସନ କାଳ ମଧ୍ୟରେ ଜଣେ ପ୍ରଜାନୁରଞ୍ଜନ ରାଜା ହିସାବରେ ସେ ସମଗ୍ର ଭାରତରେ ଖ୍ୟାତିଲାଭ କରିଥିଲେ । କେତେ ବର୍ଷ ଭିତରେ ଶ୍ରୀରାମଚନ୍ଦ୍ରଙ୍କର ଏହି ଶାସନ ପ୍ରଣାଳୀ ଦେଖି ଇଂରେଜ ସରକାର ତାଙ୍କୁ 'ମହାରାଜା' ଉପାଧି ପ୍ରଦାନ କରିଥିଲେ । ଏକ ଆଦର୍ଶ ରାଜ୍ୟ ଗଠନ କରିବା ପାଇଁ ସେ ପୃଥିବୀ ଭ୍ରମଣରେ ବାହାରି ଥିଲେ । ୧୯୧୦ ମସିହା ମେ ମାସ ୮ ତାରିଖରେ ଏହି ଯାତ୍ରା ଆରମ୍ଭ ହେଲା । ପ୍ରଥମେ ସେ ଚୀନ୍ ପରିଭ୍ରମଣ କରି ତା'ପରେ ଜାପାନ, ଆମେରିକା ଓ ଇଂଲଣ୍ଡ ପ୍ରଭୃତି ସ୍ଥାନକୁ ଯାଇ ସେଠାରୁ ସବିଶେଷ ଜ୍ଞାନ ଆହରଣ କରିବା ପରେ ତାହା କିଭଳି ଭାବରେ ଲୋକ ହିତକର କାର୍ଯ୍ୟରେ କାର୍ଯ୍ୟକାରୀ କରାଯାଇ ପାରିବ, ସେ ଦିଗରେ ପ୍ରଗାଢ଼ ଉଦ୍ୟମ କରିଥିଲେ ।

ଇଂରେଜମାନେ ୧୮୦୩ ମସିହାରେ ଓଡ଼ିଶାକୁ ଅଧିକାର କରିଥିଲେ । ଠିକ୍ ତା'ର ୧୦୦ ବର୍ଷ ପରେ ଖଣ୍ଡ ବିଖଣ୍ଡିତ ଓଡ଼ିଶାକୁ ଏକାଠି କରିବା ପାଇଁ ୧୯୦୩ ମସିହା

ଡିସେମ୍ବର ମାସ ୩୦ ତାରିଖରେ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ବସିଲା । ମୟୂରଭଞ୍ଜର ମୁକୁଟମଣି ଉତ୍କଳ ଜନନୀର ଆଶା ଭରସାର ପାତ୍ର ମହାରାଜା ଶ୍ରୀରାମଚନ୍ଦ୍ର ଏହି ସମ୍ମିଳନୀର ସଭାପତି ହେଲେ ।

ମହାରାଜା ଶ୍ରୀରାମଚନ୍ଦ୍ର ମାତୃଭୂମି ଓଡ଼ିଶାକୁ ଏପରି ପ୍ରାଣର ସହିତ ଭଲ ପାଉଥିଲେ ତାହା ତାଙ୍କର ସେହି ସମୟର ବକ୍ତୃତାରୁ ଜଣାପଡ଼େ । ସେ କହିଥିଲେ, ''ସ୍ୱଦେଶ ପ୍ରତି ଯେପରି ସ୍ନେହ, ସେହିପରି ମାତୃଭାଷା ପ୍ରତି ସ୍ନେହ କରିବା ଦରକାର । ଓଡ଼ିଆ ଭାଷାର ଯେତେଦୂର ଉନ୍ନତି ହେବା କଥା ସେତେଦୂର ଉନ୍ନତି ହୋଇନାହିଁ ତଥାପି ଉତ୍କଳର ସାହିତ୍ୟାକାଶରେ ଉଜ୍ଜ୍ୱଳ ତାରକାର ଅଭାବ ନାହିଁ ।'' ଏଥିରୁ ଶ୍ରୀରାମଚନ୍ଦ୍ରଙ୍କର ସ୍ୱଦେଶ ପ୍ରୀତି ଫୁଟି ଉଠିଛି । ଓଡ଼ିଶାର ଅନ୍ଧକାରମୟ ଯୁଗରେ ଜାତି ପ୍ରାଣର ଆଶାର ଦୀପ ଜାଳିବା ପାଇଁ ଜାତିକୁ ନୂଆ ଭାବରେ ନୂଆ ବାଟରେ ଚଳେଇବା ପାଇଁ ସେ ଉଦ୍ୟମ ଆରମ୍ଭ କରିଥିଲେ । ତାଙ୍କର ଆଶା ପୂର୍ଣ୍ଣ ହେବା ପୂର୍ବରୁ ଆଶା ଦୀପ ଲିଭିଗଲା । ଉତ୍କଳ ଜନନୀର ଲୁହ ସେ ପୋଛି ପାରିଲେ ନାହିଁ । ୧୯୧୨ ମସିହା ଫେବୃଆରୀ ମାସ ୨୨ ତାରିଖରେ ତାଙ୍କର ଜୀବନ ଦୀପ ଲିଭିଗଲା । ରାଜକୁଳରେ ଜନ୍ମ ହୋଇ ମଧ୍ୟ ସେ ଅତ୍ୟନ୍ତ ସରଳ, ନମ୍ର, ସାହସୀ ଓ ପରମ ଜ୍ଞାନୀ ଥିଲେ । ଧନ-ସମ୍ପଦ ମଧ୍ୟରେ ବଢ଼ି ରାଜ ସିଂହାସନରେ ବସି ମଧ୍ୟ ଶ୍ରୀରାମଚନ୍ଦ୍ର ଦିନେହେଲେ ଦେଶବାସୀଙ୍କଠାରୁ ଅଲଗା ବୋଲି ମନେ କରୁ ନଥିଲେ । ତାଙ୍କର ଦେଶପ୍ରୀତିର ପଟାନ୍ତର ନାହିଁ । ସର୍ବଧର୍ମ ସମନ୍ୱୟ ମତବାଦ ପ୍ରତି ତାଙ୍କର ଯଥେଷ୍ଟ ସମ୍ମାନ ଥିଲା । ସେ କହୁଥିଲେ, ''ହିନ୍ଦୁ ହେଉ ଅଥବା ମୁସଲମାନ ହେଉ, କି ଖ୍ରୀଷ୍ଟିଆନ କି ବୌଦ୍ଧ ବା ଅପର ଧର୍ମାବଲମ୍ବୀ ହେଉ, ସମସ୍ତେ ଏକ ପରମେଶ୍ୱରଙ୍କ ସନ୍ତାନ ।''

ଶ୍ରୀରାମଚନ୍ଦ୍ର ଭଞ୍ଜ ଜଣେ ଦେଶ ହିତୈଷୀ, ଜାତୀୟତାବାଦୀ ଜନନାୟକ ଥିଲେ । ବାସ୍ତବିକ୍, ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ ଖାଲି ମୟୂରଭଞ୍ଜର ନୁହନ୍ତି, ସମଗ୍ର ଓଡ଼ିଶାର ଆଶା ଭରସାର ପାତ୍ର ଥିଲେ । ଓଡ଼ିଆ ଜାତିର ଉନ୍ନତି ନିମିତ୍ତ ତାଙ୍କର ବହୁବିଧ ଉଦ୍ୟମ ଅବିସ୍ମରଣୀୟ । ଓଡ଼ିଶାର ବହୁ ଲୋକହିତକର ଅନୁଷ୍ଠାନ ତାଙ୍କ ଅମୂଲ୍ୟ ଅବଦାନରେ ସୁପ୍ରତିଷ୍ଠିତ ଓ ପବିତ୍ର ସ୍ମୃତିରେ ମହିମାମଣ୍ଡିତ । ଶ୍ରୀରାମଚନ୍ଦ୍ର ଭଞ୍ଜଙ୍କର ଆଦର୍ଶ ଚରିତ୍ରବତା, ସରଳତା, ନମ୍ରତା, ଶୁଦ୍ଧ ସ୍ୱଭାବ ଓ ନିର୍ମଳ ବ୍ୟକ୍ତିତ୍ୱ ସର୍ବାଧିକ ପ୍ରଶଂସନୀୟ । ଉତ୍କଳ ଜନନୀର ଏହି ଯୋଗଜନ୍ମା ଯୋଗ୍ୟ ସନ୍ତାନ ଆଜି ସମଗ୍ର ଓଡ଼ିଆ ଜାତିର ଚିର ନମସ୍ୟ ।

ଇ-ଟାଇପ୍ ୧୭/୧
ୟୁନିଟ୍-୯, ଭୁବନେଶ୍ୱର-୭୫୧୦୨୨



# ଉତ୍କଳକେଶରୀ ଡକ୍ଟର ହରେକୃଷ୍ଣ ମହତାବ

ସଚ୍ଚିଦାନନ୍ଦ ବାରିକ

ନବ ଉତ୍କଳର ନିର୍ମାତା ଉତ୍କଳ କେଶରୀ ଡଃ ହରେକୃଷ୍ଣ ମହତାବଙ୍କ ସଂଗ୍ରାମମୟ ବୈପ୍ଳବିକ ଭୂମିକା ଓଡ଼ିଶା ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ । ତାଙ୍କର ବଳିଷ୍ଠ ନେତୃତ୍ୱ ଓ ତ୍ୟାଗପୂତ ଜୀବନ ଓଡ଼ିଶାକୁ ବ୍ରିଟିଶ ଶାସନରୁ ମୁକ୍ତ କରି ଜନମାନସରେ ଏକ ନୂତନ କ୍ରାନ୍ତି ଆଣି ଦେଇଥିଲା । ଓଡ଼ିଶାର ମାଟି, ପାଣି, ପବନ ସହ ଓତପ୍ରୋତ ଭାବେ ଜଡ଼ିତ ମହତାବ ସାରା ରାଜ୍ୟରେ ଏକ ସଚେତନ ବାତାବରଣ ସୃଷ୍ଟି କରିଥିଲେ । ମହାତ୍ମା ଗାନ୍ଧୀଙ୍କର ଆଦର୍ଶରେ ଅନୁପ୍ରାଣିତ ହୋଇ ଅର୍ଦ୍ଧଶତାବ୍ଦୀରୁ ଊର୍ଦ୍ଧ୍ୱକାଳ ଓଡ଼ିଶା ଓ ଭାରତବର୍ଷର ରାଜନୀତିକୁ ସେ ଆଚ୍ଛନ୍ନ କରି ରଖିଥିଲେ । ସ୍ୱାଧୀନତା ସଂଗ୍ରାମ ବ୍ୟତୀତ ସାହିତ୍ୟ ଓ ସଂସ୍କୃତିର ଅଗ୍ରଗତି ପାଇଁ ତାଙ୍କର ଅବଦାନ ଅତୁଳନୀୟ । ସେ ସୁପ୍ତ ଓଡ଼ିଆ ଜାତିର ପ୍ରାଣରେ ଅପୂର୍ବ ଜାଗରଣ ସୃଷ୍ଟି କରିଥିଲେ । ଛାତ୍ର ଜୀବନରୁ ତାଙ୍କ ଭାବନାରେ ପ୍ରତିବାଦ ଓ ପୁନର୍ଗଠନର ମହାମନ୍ତ୍ର ଉଜ୍ଜୀବିତ ହୋଇଥିଲା । ବିଂଶ ଶତାବ୍ଦୀର ଚିନ୍ତାନାୟକ ଓ ଅବିସ୍ମରଣୀୟ ନେତା ଥିଲେ ମହତାବ । ବାସ୍ତବରେ ସେ ଥିଲେ ସାଂସ୍କୃତିକ ଓ ରାଜନୈତିକ ଇତିହାସର ପ୍ରଜ୍ଞାପୁରୁଷ ଏବଂ ନିଜକୁ ସେ ଏକ ବିରାଟ ଅନୁଷ୍ଠାନରେ ପରିଣତ କରିପାରିଥିଲେ । ସ୍ୱାଧୀନ ଭାରତର ଏକତା ଓ ସଂହତି ପ୍ରତିଷ୍ଠା ଦିଗରେ ହରେକୃଷ୍ଣ ମହତାବଙ୍କ ପ୍ରଚେଷ୍ଟା ଅନନ୍ୟ । ଉତ୍କଳ ପ୍ରଦେଶର ପ୍ରାଣ ପ୍ରତିଷ୍ଠାତା ମଧୁବାବୁଙ୍କ ପରି ସେ ଥିଲେ ବୃହତ୍ତର ଓଡ଼ିଶା ପ୍ରଦେଶର ନିର୍ମାତା । ତାଙ୍କର ଶୃଙ୍ଖଳିତ ଜୀବନ, ନିଷ୍ଠା, ତ୍ୟାଗ, ଧୈର୍ଯ୍ୟ ଓ ଆତ୍ମବିଶ୍ୱାସ ତାଙ୍କୁ ମହତ ପଦବାଚ୍ୟ କରାଇଛି । ତାଙ୍କର ସଂଗ୍ରାମୀ ମନୋଭାବ ଆଜିର ଯୁବ ସମାଜକୁ ଚିରଦିନ ପ୍ରେରଣା ଯୋଗାଇବ ।

ଡକ୍ଟର ହରେକୃଷ୍ଣ ମହତାବ ୧୮୯୯ ମସିହା ନଭେମ୍ବର ୨୧ ତାରିଖ ଦିନ ଅବିଭକ୍ତ ବାଲେଶ୍ୱର ଜିଲ୍ଲାର ଅଗରପଡ଼ାଠାରେ ଜନ୍ମ ଗ୍ରହଣ କରିଥିଲେ । ଡକ୍ଟର ହରେକୃଷ୍ଣ ମହତାବଙ୍କ ବାଲ୍ୟଶିକ୍ଷା ଗ୍ରାମ ଚାଟଶାଳୀ ତଥା ସ୍କୁଲରେ ଆରମ୍ଭ ହୋଇଥିଲା ଏବଂ ଗାଁ ସ୍କୁଲରେ ପାଠ ଶେଷ କରି ସେ ଭଦ୍ରକ ହାଇସ୍କୁଲରେ ଅଧ୍ୟୟନ କରିଥିଲେ । ମାଟ୍ରିକ୍ୟୁଲେସନ୍ ଅଧ୍ୟୟନ କରୁଥିବା ସମୟରେ ୧୯୧୭ ମସିହାରେ ତାଙ୍କର ସୁଭଦ୍ରା ମହତାବଙ୍କ ସହ ବିବାହ ହୋଇଥିଲା ।

ସେ କଟକ ରେଭେନ୍ସା କଲେଜରେ ଅଧ୍ୟୟନ କରୁଥିବା ସମୟରେ ତାଙ୍କର ସହପାଠୀ ନବକୃଷ୍ଣ ଚୌଧୁରୀଙ୍କ ସହିତ ରାଜନୀତି ବିଷୟରେ ଆଲୋଚନା କରୁଥିଲେ । ୧୯୧୮ ମସିହାରେ କଟକରେ ହୋଇଥିବା ଉତ୍କଳ ସମ୍ମିଳନୀରେ ସେ ସ୍ୱେଚ୍ଛାସେବକରୂପେ ଯୋଗ ଦେଇଥିଲେ । ୧୯୨୦ ମସିହା ସେପ୍ଟେମ୍ବର ମାସରେ ମହାତ୍ମା ଗାନ୍ଧୀଙ୍କ ସହିତ ଆଲୋଚନା କରିବା ପାଇଁ କଲିକତାରେ ଯେଉଁ କଂଗ୍ରେସ ଅଧିବେଶନ ହୋଇଥିଲା ସେଥିରେ ସେ ଦର୍ଶକଭାବେ ଯୋଗ ଦେଇଥିଲେ । ୧୯୨୦ ମସିହାରେ କଲେଜରେ ପଢୁଥିବା ସମୟରେ ମହାତ୍ମା ଗାନ୍ଧୀଙ୍କ ଆହ୍ୱାନକ୍ରମେ ସେ ପାଠପଢ଼ା ଛାଡ଼ି କଂଗ୍ରେସ ଆନ୍ଦୋଳନରେ ଯୋଗ ଦେଲେ ।

୧୯୨୧ ମସିହାରେ ବି.ଏ. ଫାଇନାଲ ପରୀକ୍ଷା ଦେବା ପୂର୍ବରୁ ସହପାଠୀଙ୍କ ସହ କଲେଜ ତ୍ୟାଗ କରି ଅସହଯୋଗ ଆନ୍ଦୋଳନରେ ଝାସ ଦେଇଥିଲେ ଏବଂ ବାଲେଶ୍ୱର ଜିଲ୍ଲା କଂଗ୍ରେସ କମିଟିର ସଂପାଦକ ଭାବେ କାର୍ଯ୍ୟଭାର ଗ୍ରହଣ କରିଥିଲେ । ୧୯୨୨ ମସିହା ଜୁଲାଇ ମାସରେ କନିକା ପ୍ରଜା ଆନ୍ଦୋଳନର ନେତୃତ୍ୱ ନେଇ ଏକ ବର୍ଷ ସଶ୍ରମ କାରାଦଣ୍ଡ ଭୋଗୁଥିବା ବେଳେ ଜେଲ୍‌ରେ 'ଅଜବ ଦୁନିଆଁ' ଉପନ୍ୟାସ ଓ ଇଂରାଜୀରେ 'ଫ୍ରି ଥିଙ୍କିଙ୍ଗ୍'

(Free Thinking) ପୁସ୍ତକ ରଚନା, ୧୯୨୩ ମସିହାରେ ଜେଲ୍‌ରୁ ମୁକ୍ତ ଏବଂ ସେହିବର୍ଷ ଅକ୍ଟୋବର ୨ରେ କଟକ ମୁକୁର ପ୍ରେସ୍‌ରୁ ସାପ୍ତାହିକ 'ପ୍ରଜାତନ୍ତ୍ର' ପ୍ରକାଶ, ୧୯୨୪ରୁ ୧୯୨୯ ମସିହା ପର୍ଯ୍ୟନ୍ତ ବାଲେଶ୍ୱର ଜିଲ୍ଲାବୋର୍ଡ଼ର ସଭାପତି, ୧୯୨୫ରେ ସ୍ୱରାଜ୍ୟ ଆଶ୍ରମରେ ହ୍ୟାଣ୍ଡପ୍ରେସ ସ୍ଥାପନ ଓ 'ସ୍ୱରାଜ୍ୟ ସମାଚାର' ସାପ୍ତାହିକ ପତ୍ରିକା ପ୍ରକାଶ, ୧୯୨୭ ମସିହାରେ ସାପ୍ତାହିକ ଇଂରାଜୀ ପତ୍ରିକା 'ଆଡ଼ଭେଞ୍ଚର୍' ପ୍ରକାଶ, ୧୯୨୮ରେ କଲିକତାରେ ଓଡ଼ିଆ ସମାଜ ପ୍ରତିଷ୍ଠା ଓ ସଭାପତି ପଦ ଗ୍ରହଣ, ୧୯୨୯ ମସିହାରେ କଲିକତାରେ ସାଇମନ କମିଶନ ବିରୋଧରେ ପ୍ରବାସୀ ଓଡ଼ିଆଙ୍କ ବିକ୍ଷୋଭର ନେତୃତ୍ୱ, ୧୯୩୦ ମସିହାରେ ଉତ୍କଳ ପ୍ରଦେଶ କଂଗ୍ରେସ କମିଟି ସଭାପତିଭାବେ ନିର୍ବାଚିତ, ଇଞ୍ଚୁଡ଼ି ଲବଣ ସତ୍ୟାଗ୍ରହରେ ଗିରଫ ହୋଇ ୧୮ ମାସ ଜେଲବରଣ ଏବଂ 'ସ୍ୱରାଜ୍ୟ ସାଧନ' ଓ 'ଦଶ ବର୍ଷର ଓଡ଼ିଶା' ପୁସ୍ତକ ରଚନା, ୧୯୩୧ ଗାନ୍ଧୀ–ଇରଉଇନ୍ ଚୁକ୍ତି ଅନୁସାରେ କାରାମୁକ୍ତ, ୧୯୩୨ରେ ପୁରୀରେ କଂଗ୍ରେସ ଅଧିବେଶନ ବେଆଇନ ଘୋଷିତ ହେବାରୁ ସେ ବାଲେଶ୍ୱରରେ ଗିରଫ ହୋଇଥିଲେ । ଛଅ ମାସ ଜେଲ୍‌ରେ ରହି 'ନୂତନ ଧର୍ମ' ଉପନ୍ୟାସ ରଚନା କରିଥିଲେ । ନିଖିଳ ଭାରତ କଂଗ୍ରେସ କମିଟି କାର୍ଯ୍ୟାଳୟକୁ ଗୋପନପତ୍ର ପ୍ରେରଣ ଅଭିଯୋଗରେ ପୁନର୍ବାର ହଜାରିବାଗ ଜେଲ୍‌ରେ ସହଧର୍ମିଣୀ ସୁଭଦ୍ରାଙ୍କ ସହିତ ବନ୍ଦୀ ହେଲେ ।

୧୯୩୪ ମସିହାରେ ଗାନ୍ଧୀଙ୍କ ସହିତ ପୁରୀରୁ ଭଦ୍ରକ ପର୍ଯ୍ୟନ୍ତ ପଦଯାତ୍ରା, ୧୯୩୭ରେ ଓଡ଼ିଶା ପ୍ରଦେଶ କଂଗ୍ରେସ ସଭାପତିଭାବେ ନିର୍ବାଚିତ, ଗଡ଼ଜାତ ଅନୁସନ୍ଧାନ କମିଟିର ଅଧ୍ୟକ୍ଷ, ୧୯୩୮ରେ ଗଡ଼ଜାତ ପ୍ରଜା ଆନ୍ଦୋଳନର ନେତୃତ୍ୱ ନେଇ ପ୍ରଜାମଣ୍ଡଳର ପରାମର୍ଶଦାତା ଏବଂ ନିଖିଳ ଭାରତ କଂଗ୍ରେସ କାର୍ଯ୍ୟକାରୀ କମିଟି ସଦସ୍ୟ ରୂପେ ମନୋନୀତ ହୋଇଥିଲେ । ୧୯୩୯ ମସିହା ଜାନୁଆରୀ ୫ ତାରିଖରେ ରଣପୁର ପ୍ରଜା ଆନ୍ଦୋଳନର ବେଜେଲଗେଟ ହତ୍ୟା ମାମଲାରେ ଜଡ଼ିତ ହୋଇ ଗାନ୍ଧିଜୀଙ୍କ ଉଦ୍ୟମରେ ମୁକ୍ତ, ୧୯୪୦ ମସିହା ଡ଼ିସେମ୍ବର ମାସରେ ବ୍ୟକ୍ତିଗତ ସତ୍ୟାଗ୍ରହ ଓ ରେମୁଣା ସଭାରେ ଭାଷଣ ଦେବା ବେଳେ ଗିରଫ ହୋଇ ବ୍ରହ୍ମପୁର ଜେଲ୍‌ରେ ଏକ ବର୍ଷ ବନ୍ଦୀ, ୧୯୪୧ ଡ଼ିସେମ୍ବର ମାସରେ ଜେଲରୁ ମୁକ୍ତ ହେଲା ପରେ 'ରଚନା' ନାମରେ ସାପ୍ତାହିକ ପତ୍ରିକା ସମ୍ପାଦନା, ୧୯୪୨ ଅଗଷ୍ଟ ମାସରେ 'ଭାରତଛାଡ଼' ପ୍ରସ୍ତାବ ଗୃହୀତ ହେବା ଦିନ ବମ୍ବେଠାରେ ଗିରଫ, ୧୯୪୫ରେ ଅହମ୍ମଦ ନଗର ଫୋର୍ଟ ଜେଲରେ ନେହରୁ, ପଟେଲ, କୃପାଳିନୀ ପ୍ରମୁଖଙ୍କ ସହ ବନ୍ଦୀ ଏବଂ ଜେଲ୍‌ରେ 'ଓଡ଼ିଶା ଇତିହାସ', ତିନୋଟି କାବ୍ୟ ଓ ତିନୋଟି ଉପନ୍ୟାସ ରଚନା । ଡଃ ମହତାବ ୧୯୪୫ ମସିହା ମେ' ମାସରେ ଅହମ୍ମଦ ନଗର ଫୋର୍ଟ ଜେଲ୍‌ରୁ ସମ୍ବଲପୁର ଜେଲ୍‌କୁ ସ୍ଥାନାନ୍ତରିତ ହେଲେ । ସେଠାରୁ ମୁକ୍ତ ହୋଇ କଟକରେ କଂଗ୍ରେସ ସେବା ଦଳ ଗଠନ, ୧୯୪୬ ମସିହା ଏପ୍ରିଲ୍ ୨୩ରୁ ୧୯୫୦ ମେ' ୧୧ ତାରିଖ ପର୍ଯ୍ୟନ୍ତ ଓଡ଼ିଶାର ପ୍ରଧାନମନ୍ତ୍ରୀ (ଭାରତର ସମ୍ବିଧାନ ପ୍ରଣୀତ ହେବା ପର୍ଯ୍ୟନ୍ତ ମୁଖ୍ୟମନ୍ତ୍ରୀ ପଦବୀଟି ପ୍ରଧାନମନ୍ତ୍ରୀ ପଦ ଭାବରେ ନାମିତ ଥିଲା), ସେପ୍ଟେମ୍ବର ୩୦ରେ ଭୁବନେଶ୍ୱରରେ ରାଜଧାନୀ ନିର୍ମାଣ ପାଇଁ ବ୍ୟବସ୍ଥାପକ ସଭାରେ ପ୍ରସ୍ତାବ ଅନୁମୋଦିତ, ମାନ୍ଦ୍ରାଜ ସରକାରଙ୍କ ସହିତ ମାଛକୁଣ୍ଡର ଡୁଡୁମା ଜଳ ବିଦ୍ୟୁତ୍ କେନ୍ଦ୍ର ପାଇଁ ଚୁକ୍ତି, ଓଡ଼ିଶା ଅଲମ୍ପିକ ଆସୋସିଏସନ୍ ଗଠନ, ବିଦ୍ୟାଧରପୁରରେ ଧାନ ଗବେଷଣା କେନ୍ଦ୍ରର ଭିତ୍ତିପ୍ରସ୍ତର ସ୍ଥାପନ, ୧୯୪୭ ମସିହା ଅଗଷ୍ଟ ୮ରେ କଟକ ଦୈନିକ 'ପ୍ରଜାତନ୍ତ୍ର'ର ପୁନଃପ୍ରକାଶ, ପ୍ରଜାତନ୍ତ୍ରରେ 'ଗାଁ ମଜଲିସ' ଶୀର୍ଷକ ସ୍ତମ୍ଭ ମାଧ୍ୟମରେ ଧାରାବାହିକ ଭାବେ ଗ୍ରାମାଞ୍ଚଳର ଅଭାବ ଅସୁବିଧା ସଂପର୍କରେ ପ୍ରକାଶନ, ନଭେମ୍ବର ମାସରେ ହୀରାକୁଦ ବନ୍ଧ ଯୋଜନା ପାଇଁ କେନ୍ଦ୍ର ସରକାରଙ୍କ ସହ ରାଜ୍ୟ ସରକାରଙ୍କ ଚୁକ୍ତି, ନଭେମ୍ବର ୧୪ରେ ନୀଳଗିରି ରାଜ୍ୟର ଶାସନ ଦାୟିତ୍ୱ ଗ୍ରହଣ ଏବଂ ଡିସେମ୍ବର ୧୪ରେ ଗଡ଼ଜାତ ମିଶ୍ରଣର ଚୁକ୍ତିପତ୍ର ସର୍ଦ୍ଦାର ପଟେଲଙ୍କ ଉପସ୍ଥିତିରେ ୨୫ଟି ଦେଶୀୟ ରାଜ୍ୟର ରାଜାମାନଙ୍କ ସହିତ ସ୍ୱାକ୍ଷରିତ, ୧୯୪୮ ଜାନୁଆରୀ ୧ରେ ମୟୂରଭଞ୍ଜ ବ୍ୟତୀତ ଓଡ଼ିଶା ସହିତ ସମସ୍ତ ଗଡ଼ଜାତ ମିଶ୍ରଣ, ଜାନୁଆରୀ ୨୮ରେ କଟକର ମଧୁପୁର କୋଠିଠାରେ ଆକାଶବାଣୀ କେନ୍ଦ୍ର ପ୍ରତିଷ୍ଠା, ଏପ୍ରିଲ୍ ୧୨ରେ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହରୁଙ୍କ ଦ୍ୱାରା ହୀରାକୁଦ ବନ୍ଧର ଶୁଭଦାନ, ଏପ୍ରିଲ୍ ୧୩ରେ ପ୍ରଧାନମନ୍ତ୍ରୀ ନେହରୁଙ୍କ ଦ୍ୱାରା ନୂଆ ରାଜଧାନୀର ଭିତ୍ତିପ୍ରସ୍ତର ସ୍ଥାପନ, ଜୁଲାଇ ୨୬ ତାରିଖରେ ଓଡ଼ିଶା ହାଇକୋର୍ଟ ପ୍ରତିଷ୍ଠା, ନଭେମ୍ବର ୯ରେ ଭାରତ ସରକାରଙ୍କ ଦ୍ୱାରା ମୟୂରଭଞ୍ଜ ରାଜ୍ୟର ଶାସନଭାର ଗ୍ରହଣ, ୧୯୪୯ରେ 'ଝଙ୍କାର' ଓ ଇଂରାଜୀ ଦୈନିକ 'ଇଷ୍ଟର୍ଣ୍ଣ ଟାଇମସ୍' ପ୍ରକାଶିତ । ୧୯୫୦ ଏପ୍ରିଲ୍ ୧୩ରେ ବିଷୁବ ମିଳନର ଶୁଭାରମ୍ଭ ଏବଂ ମେ' ୧୩ରୁ

୧୯୫୨ ମେ' ୧୫ ତାରିଖ ପର୍ଯ୍ୟନ୍ତ କେନ୍ଦ୍ରରେ ବାଣିଜ୍ୟ ମନ୍ତ୍ରୀ ଭାବରେ ଅବସ୍ଥାପିତ, ଆନ୍ଧ୍ର ବିଶ୍ୱବିଦ୍ୟାଳୟରୁ 'ଓଡ଼ିଶା ଇତିହାସ' ଲେଖକ ଭାବରେ ପି.ଏଚ୍‌ଡ଼ି. ଉପାଧିରେ ସମ୍ମାନିତ, ୧୯୫୧ରେ ସ୍ୱାଧୀନ ଭାରତର ପ୍ରଥମ ସାଧାରଣ ନିର୍ବାଚନରେ କଟକ ଲୋକସଭା ନିର୍ବାଚନ ମଣ୍ଡଳୀରୁ ପାର୍ଲିଆମେଣ୍ଟକୁ ନିର୍ବାଚିତ, ୧୯୫୪ ମସିହା ପର୍ଯ୍ୟନ୍ତ କଂଗ୍ରେସ ପାର୍ଲିଆମେଣ୍ଟାରୀ ଦଳର ସେକ୍ରେଟେରୀଭାବେ ଦାୟିତ୍ୱ ଗ୍ରହଣ, ୧୯୫୫ ମାର୍ଚ୍ଚ ୨ରୁ ୧୯୫୬ ଅକ୍ଟୋବର ୧ ତାରିଖ ପର୍ଯ୍ୟନ୍ତ ଅବିଭକ୍ତ ବମ୍ବେର ରାଜ୍ୟପାଳଭାବେ ନିଯୁକ୍ତ, ଅକ୍ଟୋବର ୧୯ରୁ ୧୯୬୧ ଫେବୃୟାରୀ ୨୪ ତାରିଖ ପର୍ଯ୍ୟନ୍ତ ଓଡ଼ିଶାର ମୁଖ୍ୟମନ୍ତ୍ରୀଭାବେ ଅବସ୍ଥାପିତ ଥିବାବେଳେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ୍ ଉପାଧିରେ ସମ୍ମାନିତ, ୧୯୫୭ ଜାନୁଆରୀ ୧୩ ତାରିଖରେ ପ୍ରଧାନମନ୍ତ୍ରୀ ନେହରୁଙ୍କ ଦ୍ୱାରା ହୀରାକୁଦ ବନ୍ଧ ଉଦ୍‌ଘାଟିତ, ମେ' ୧୯ ପାରାଦ୍ୱୀପଠାରେ ବନ୍ଦର ନିର୍ମାଣପାଇଁ ଘୋଷଣା, ଭୁବନେଶ୍ୱରରେ ରାଜ୍ୟ ସଂଗ୍ରହାଳୟର ଶିଳାନ୍ୟାସ, ୧୯୫୮ ଜାନୁଆରୀ ୧ରେ ରାଷ୍ଟ୍ରପତି ଡକ୍ଟର ରାଜେନ୍ଦ୍ର ପ୍ରସାଦଙ୍କ ଦ୍ୱାରା ଭୁବନେଶ୍ୱରରେ ଉତ୍କଳ ବିଶ୍ୱବିଦ୍ୟାଳୟର ଭିତ୍ତିପ୍ରସ୍ତର ସ୍ଥାପନ, ଅଗଷ୍ଟ ୧୫ରେ ଭୁବନେଶ୍ୱର କଳାବିକାଶ କେନ୍ଦ୍ରର ଶିଳାନ୍ୟାସ ଏବଂ ସାଗର ବିଶ୍ୱବିଦ୍ୟାଳୟରୁ ପି.ଏଚ୍‌ଡ଼ି. ଉପାଧିରେ ସମ୍ମାନିତ, ଲଳିତ କଳା ଏକାଡ଼େମୀ ଏବଂ କଳାମଣ୍ଡପ ପ୍ରତିଷ୍ଠା, ମେ' ୨୨ରେ କଂଗ୍ରେସ – ଗଣତନ୍ତ୍ର ପରିଷଦ ମନ୍ତ୍ରିମଣ୍ଡଳର ମୁଖ୍ୟମନ୍ତ୍ରୀଭାବେ ଦାୟିତ୍ୱ ଗ୍ରହଣ, ୧୯୬୦ରେ ରାଜ୍ୟ ସଂଗ୍ରହାଳୟ କେନ୍ଦ୍ର ସ୍ୱରାଷ୍ଟ୍ର ମନ୍ତ୍ରୀ ପଣ୍ଡିତ ଗୋବିନ୍ଦ ବଲ୍ଲଭ ପନ୍ଥଙ୍କ ଦ୍ୱାରା ଉଦ୍‌ଘାଟିତ ।

ତାଙ୍କ ସମୟରେ ବିଧାନସଭାରେ ଭୂସଂସ୍କାର ବିଲ୍ ଗୃହୀତ, ରାଉରକେଲା ଇସ୍ପାତ୍ କାରଖାନା କାର୍ଯ୍ୟ ପୂର୍ଣ୍ଣାଙ୍ଗ । ୧୯୬୨ରୁ ୬୭ ମସିହା ପର୍ଯ୍ୟନ୍ତ ଅନୁଗୁଳ ଲୋକସଭା ନିର୍ବାଚନ ମଣ୍ଡଳୀରୁ ଲୋକସଭାକୁ ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ, କଂଗ୍ରେସ ପାର୍ଲାମେଣ୍ଟାରୀ ଦଳର ଉପଦଳପତିଭାବେ ମନୋନୀତ, ୧୯୬୭ରେ ଭୁବନେଶ୍ୱର ଓ ବାସୁଦେବପୁର ଉଭୟ ନିର୍ବାଚନ ମଣ୍ଡଳୀରୁ ବିଧାନସଭାକୁ ନିର୍ବାଚିତ ଓ ଜନକଂଗ୍ରେସ ଦଳ ଗଠନ, ୧୯୭୧ରେ ଇନ୍ଦିରା ଅନୁଗାମୀ କଂଗ୍ରେସ (ର) ପକ୍ଷରୁ ଓଡ଼ିଶା ବିଧାନସଭାକୁ ନିର୍ବାଚିତ, ୧୯୭୪ରୁ ୧୯୭୭ ପର୍ଯ୍ୟନ୍ତ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନରେ ଭୁବନେଶ୍ୱର ନିର୍ବାଚନ ମଣ୍ଡଳୀରୁ ଜନକଂଗ୍ରେସ ଦଳ ପକ୍ଷରୁ ବିଧାନସଭାକୁ ନିର୍ବାଚିତ, ୧୯୭୫ରେ ଜରୁରିକାଳୀନ ପରିସ୍ଥିତିରେ ଗିରଫ ହୋଇ ୧୮ ମାସ କାଳ ଫୁଲବାଣୀ ଓ ଭଞ୍ଜନଗର ଜେଲ୍‌ରେ ସାଧାରଣ ବନ୍ଦୀ ଭାବରେ ଜୀବନ ବିତାଇଥିଲେ । ୧୯୭୬ ମାର୍ଚ୍ଚ ୨୬ରୁ ଏପ୍ରିଲ୍ ୨୫ ତାରିଖ ପର୍ଯ୍ୟନ୍ତ ପାରୋଲ୍‌ରେ ମୁକ୍ତ, ୧୯୭୭ରେ ସକ୍ରିୟ ରାଜନୀତିରୁ ଅବସର ଗ୍ରହଣ । ୧୯୭୮ ମସିହାରେ ତାଙ୍କ ସହଧର୍ମିଣୀ ସୁଭଦ୍ରା ମହତାବଙ୍କ ପରଲୋକ, ୧୯୮୧ ଏପ୍ରିଲ୍ ୧୬ରେ ସମ୍ବଲପୁରରୁ ଦୈନିକ 'ହୀରାଖଣ୍ଡ'ର ପ୍ରକାଶ ଏବଂ ୧୯୮୩ ମସିହାରେ 'ଗାଁ ମଜଲିସ୍' ପାଇଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ଲାଭ, ୧୯୮୬ ମସିହାରେ ଦିଲ୍ଲୀଠାରେ 'While Serving my Nation : Recollections of a Congress Man' ପୁସ୍ତକ ଉନ୍ମୋଚିତ ହୋଇଥିଲା । ୧୯୮୭ ମସିହା ଜାନୁଆରୀ ୨ ତାରିଖରେ ୮୮ ବର୍ଷ ବୟସରେ ଡଃ ମହତାବଙ୍କ କର୍ମମୟ ଜୀବନର ଅବସାନ ଘଟିଲା । ଓଡ଼ିଶାର ଅର୍ଦ୍ଧଶତାବ୍ଦୀର ରାଜନୈତିକ, ଅର୍ଥନୈତିକ, ସାଂସ୍କୃତିକ ଓ ସାମାଜିକ ବିକାଶର ମୂର୍ତ୍ତିମନ୍ତ ପ୍ରତୀକ ଥିଲେ ଡଃ ମହତାବ । ତାଙ୍କର ଜୀବନ ଥିଲା ଦେଶ ପାଇଁ, ଜାତି ପାଇଁ ଏକ ସମର୍ପିତ ଜୀବନ । ସେ ଥିଲେ ଲକ୍ଷ ଲକ୍ଷ ଦେଶ ଭକ୍ତ, ସମାଜ ସେବକଙ୍କ ଶକ୍ତି ଓ ପ୍ରେରଣାର ଉତ୍ସ । ତାଙ୍କ ବିୟୋଗରେ ଦେଶ ଜଣେ ମହାନ୍ ସ୍ୱାଧୀନତା ସଂଗ୍ରାମୀ, ଗାନ୍ଧୀ ଚିନ୍ତାଧାରାର ପ୍ରବକ୍ତା, ବିଚକ୍ଷଣ ରାଜନୀତିଜ୍ଞ, ଯଶସ୍ୱୀ ସାହିତ୍ୟିକ, ନିର୍ଭୀକ ସାମ୍ବାଦିକ, ମାନବତାର ପୂଜାରୀଙ୍କୁ ହରାଇଛି । ସେ କେବଳ ସ୍ୱାଧୀନତା ସଂଗ୍ରାମର ସାରଥି ଭାବରେ ନୁହେଁ, ଓଡ଼ିଶାର ନବଯୁଗର ପ୍ରବର୍ତ୍ତକ ଓ ଲୋକ ଶାସନର ସୂତ୍ରଧର ରୂପେ ଯୁଗ ଯୁଗ ଧରି ଜନମାନସରେ ବଞ୍ଚି ରହିଥିବେ ।

ଇ–ଟାଇପ୍– ୫୩/୪
ୟୁନିଟ୍–୯, ଭୁବନେଶ୍ୱର–୭୫୧୦୨୨



# କର୍ମବୀର ଗୌରୀଶଙ୍କର- ଏକ ବିରଳ ବ୍ୟକ୍ତିତ୍ୱ

**ଦୁଃଖିଶ୍ୟାମ ଦାସ**

ପୁଣ୍ୟମୟୀ ବୀରଭୂମି ଓଡ଼ିଶାର ପୂର୍ବଗୌରବ ଯେପରି ମହିମାମଣ୍ଡିତ ଓ ଗରିମାମୟ ସେହିପରି କରୁଣ ଓ ମର୍ମନ୍ତୁଦ ମଧ୍ୟ । ସୂର୍ଯ୍ୟବଂଶୀ ରାଜତ୍ୱର ଅବସାନ ପରେ, ୧୫୬୮ ଖ୍ରୀଷ୍ଟାବ୍ଦଠାରୁ ଓଡ଼ିଶାର ଭାଗ୍ୟରବି ଅସ୍ତମିତ ହୋଇ ଦୀର୍ଘ ତିନିଶହ ବର୍ଷରୁ ଊର୍ଦ୍ଧ୍ୱକାଳ ଧରି ବିଦେଶୀ ଆଫଗାନ ମୁସଲମାନ, ମୋଗଲ, ମରହଟ୍ଟା ଓ ପରେ ପରେ ଇଂରେଜମାନଙ୍କ କବଳରେ କବଳିତ ହୋଇଥିଲା । ଫଳରେ ଓଡ଼ିଶାର ଭାଗ୍ୟାକାଶ ଅନିର୍ବଚନୀୟ କରାଳ ଛାୟାରେ ଆଚ୍ଛାଦିତ ହୋଇ ଶ୍ରୀହୀନ ହେବାକୁ ଲାଗିଲା । ବିଶେଷକରି ୧୮୦୩ ଖ୍ରୀଷ୍ଟାବ୍ଦରେ ଇଂରେଜମାନଙ୍କର ଓଡ଼ିଶା ଦଖଲ ଓ ଶୋଷଣ ନୀତି ଓଡ଼ିଆ ଜାତିର ମେରୁଦଣ୍ଡକୁ ସମୂଳେ ଦୋହଲାଇ ଦେଇଥିଲା । ସୂର୍ଯ୍ୟାସ୍ତ ଆଇନ୍ ବଳରେ ବହୁ ବଂଗୀୟ ଧନାଢ୍ୟ ବ୍ୟକ୍ତିଙ୍କୁ ସ୍ୱଳ୍ପ ମୂଲ୍ୟରେ ଓଡ଼ିଶାର ଜମିଦାରୀ ବିକ୍ରୟ କରି ସେମାନେ ଓଡ଼ିଶାବାସୀଙ୍କୁ ଦରିଦ୍ର, ଭୂମିହରା ଓ ହୀନବୀର୍ଯ୍ୟ କରିଦେଇଥିଲେ । ପୁଣି ଅଖଣ୍ଡ ଓଡ଼ିଶାକୁ ଖଣ୍ଡବିଖଣ୍ଡିତ କରି କେବଳ ଉପକୂଳବର୍ତ୍ତୀ କଟକ, ପୁରୀ ଓ ବାଲେଶ୍ୱର ବ୍ୟତୀତ ଅନ୍ୟ ସମସ୍ତ ଅଞ୍ଚଳକୁ ବଂଗ, ବିହାର, ମଧ୍ୟପ୍ରଦେଶ ଓ ମାନ୍ଦ୍ରାଜ ପ୍ରଦେଶଭୁକ୍ତ କରାଯାଇ ଓଡ଼ିଆ ଜାତିର ସଂହତି, ସ୍ୱାଭିମାନ, ଶିକ୍ଷା ଓ ସଂସ୍କୃତି ଆଦିକୁ ଧ୍ୱଂସ କରିବାର ଏକ ହୀନ ଚକ୍ରାନ୍ତ କରାଗଲା । ପଶ୍ଚିମ ଓଡ଼ିଶାରେ ହିନ୍ଦୀ, ଦକ୍ଷିଣରେ ତେଲୁଗୁ ଓ ଉପକୂଳବର୍ତ୍ତୀ ଓଡ଼ିଶାରେ ବଙ୍ଗଭାଷା ପ୍ରଚଳନ କରି ଓଡ଼ିଆ ଭାଷାର ପ୍ରାଧାନ୍ୟ ହ୍ରାସ ନିମନ୍ତେ ପ୍ରକ୍ରିୟାକରଣ କରାଯାଇ ଭାଷାବିଲୋପ ନୀତିର ସୂତ୍ରପାତ କରାଗଲା । ଏପରିକି 'ଓଡ଼ିଆ ଭାଷା ଏକ ସ୍ୱତନ୍ତ୍ର ଭାଷା ନୁହେଁ' ପ୍ରଚାର କରି ଓଡ଼ିଶାରେ ବଙ୍ଗ ଭାଷାର ପ୍ରସାର ନିମନ୍ତେ ଷଡଯନ୍ତ୍ର ଚାଲିଲା । ଫଳରେ ଓଡ଼ିଆ ଭାଷା ବିଲୋପ ସାଧନର ଅପଚେଷ୍ଟାକୁ ପ୍ରତିହତ କରିବା ନିମନ୍ତେ ପ୍ରବଳ ଭାଷା ଆନ୍ଦୋଳନ ମୁଣ୍ଡଟେକି ଉଠିଲା ଓଡ଼ିଶାରେ । ଠିକ୍ ଏହିଭଳି ଏକ ସନ୍ଧିକ୍ଷଣରେ ତଥା ଘୋର ଦୁର୍ଦ୍ଦିନରେ ଯେତେବେଳେ ଓଡ଼ିଆ ଭାଷା, ସାହିତ୍ୟ, ସଂହତି ଓ ସ୍ୱାଭିମାନ ବିପନ୍ନ ହୋଇଥିଲା, ସେତିକିବେଳେ ଯେଉଁ ସୁଯୋଗ୍ୟ ସନ୍ତାନ ଓ ବରପୁତ୍ରଗଣ ବୀରପ୍ରସବିନୀ ଉତ୍କଳ ଜନନୀର ଆଖିରୁ ଲୁହ ପୋଛି ମୁଖମଣ୍ଡଳରେ ହସ ଫୁଟାଇବା ଲାଗି ତ୍ୟାଗପୂତ ଭାବେ ସଂଗ୍ରାମର ହୋମଯଜ୍ଞରେ ଆତ୍ମାହୂତି ଦେବାକୁ ଆଗୁସାର ହୋଇଥିଲେ, ସେମାନଙ୍କ ମଧ୍ୟରେ କର୍ମବୀର ଗୌରୀଶଙ୍କରଙ୍କ ନାମ ସର୍ବାଗ୍ରେ ସ୍ମରଣଯୋଗ୍ୟ । ଏହି ସଙ୍କଟମୟ ପରିବେଶରେ ମାତୃଭୂମି ଓ ମାତୃଭାଷାର ପବିତ୍ର ସେବା କାର୍ଯ୍ୟରେ ନିଜକୁ ନିୟୋଜିତ କରି ଭାଷା, ସାହିତ୍ୟ ଓ ସଂସ୍କୃତିର ପୁନରୁଦ୍ଧାର ନିମନ୍ତେ ପ୍ରବଳ ପ୍ରୟାସୀ ଉତ୍କଳଗୌରବ ମଧୁସୂଦନ, ଉତ୍କଳମଣି ଗୋପବନ୍ଧୁ, କବିବର ରାଧାନାଥ, ଭକ୍ତକବି ମଧୁସୂଦନ, କଥାଶିଳ୍ପୀ ଫକୀରମୋହନ ଓ ସ୍ୱଭାବକବି ଗଙ୍ଗାଧର ପ୍ରମୁଖଙ୍କୁ ସାମ୍ନାକୁ ଆଣିବାରେ ଦୂରଦ୍ରଷ୍ଟା ଓ ଜାତୀୟ ଚେତନାର ଦ୍ୟୋତକ କର୍ମବୀର ଗୌରୀଶଙ୍କରଙ୍କ ନେତୃତ୍ୱ ଉଲ୍ଲେଖନୀୟ ।

କର୍ମବୀର ଗୌରୀଶଙ୍କର ଥିଲେ ଏକାଧାରାରେ ଜଣେ ନିଷ୍ପାପର ସମାଜ ସଂସ୍କାରକ, ଦକ୍ଷ ସଙ୍ଗଠକ, ଓଡ଼ିଆ ସାମ୍ବାଦିକତାର ଭଗୀରଥ, ପ୍ରଚଣ୍ଡ ଜାତୀୟତାବାଦୀ ନେତା ତଥା ଶିକ୍ଷା ଓ ସଂସ୍କୃତି ପ୍ରେମୀ ବଳିଷ୍ଠ ସ୍ୱାଭିମାନୀ ବ୍ୟକ୍ତିତ୍ୱ । ତାଙ୍କ ସଂଗ୍ରାମମୟ ଜୀବନର ଘଟଣାବହୁଳ ସମାଜଧର୍ମୀ ତଥା ଲୋକାଭିମୁଖୀ କାର୍ଯ୍ୟାବଳୀ ଅନୁଧ୍ୟାନ କଲେ ଜଣାଯାଏ ଯେ

ତାଙ୍କ ବ୍ୟତିରେକେ ଆଧୁନିକ ଓଡ଼ିଶାର ଇତିହାସ ରଚନା ପୂର୍ଣ୍ଣାଙ୍ଗ ହୋଇପାରିବ ନାହିଁ । ସେ ଓଡ଼ିଶା ଓ ଓଡ଼ିଆମାନଙ୍କର ସ୍ୱାର୍ଥରକ୍ଷା ପାଇଁ ନିସ୍ୱାର୍ଥପର, ନିରଳସ ଓ ନିର୍ଭୀକ ଭାବରେ କର୍ମକୁ ଜୀବନର ମହାନ ବ୍ରତଭାବେ ଗ୍ରହଣ କରି ଶେଷ ପର୍ଯ୍ୟନ୍ତ ସାଧନା ପଥରୁ ତିଳେମାତ୍ର ବିଚ୍ୟୁତ ହୋଇନଥିଲେ । ଆମର ସୌଭାଗ୍ୟକୁ ଊନବିଂଶ ଶତାବ୍ଦୀର ଏକ ଘଡିସନ୍ଧି ସମୟରେ ଓଡ଼ିଶାର ହିତାର୍ଥେ ସେ ଯେପରି ଅନ୍ୟମାନଙ୍କୁ ସାଙ୍ଗରେ ଧରି ସହଯୋଗ ଓ ସହମତି ଭିତ୍ତିରେ ସାଫଲ୍ୟ ଅର୍ଜନ କରିଥିଲେ, ସେହି ଅନବଦ୍ୟ ଅବଦାନ ପାଇଁ ସେ ଚିର ନମସ୍ୟ । ଏହି କର୍ମଯୋଗୀ ବହୁମୁଖୀ ପ୍ରତିଭାଧାରୀ ବ୍ୟକ୍ତିତ୍ୱ ୧୮୩୮ ଖ୍ରୀଷ୍ଟାବ୍ଦ ଜୁଲାଇ ୧୩ ତାରିଖ ଆଷାଢ ଶୁକ୍ଳ ଚତୁର୍ଦ୍ଦଶୀ ତିଥିରେ ଅବିଭକ୍ତ କଟକ ଜିଲ୍ଲା ଅସୁରେଶ୍ୱର ପ୍ରଗଣା ଦୀକ୍ଷିତପଡାର ରାୟ ପରିବାରରେ ଭୂମିଷ୍ଠ ହୋଇଥିଲେ । ତାଙ୍କର ପୂର୍ବପୁରୁଷ ବଂଗ ପ୍ରଦେଶ ବର୍ଦ୍ଧମାନ ଜିଲ୍ଲାର ଚମ୍ପାପୁର ଗ୍ରାମରୁ ଉଠିଆସି ଏଠାରେ ବାସ କରୁଥିଲେ । ଗୌରୀଶଙ୍କର ଗ୍ରାମ୍ୟ ଚାଟଶାଳୀରୁ ଓଡ଼ିଆ ଭାଗବତ, ମଥୁରାମଙ୍ଗଳ ଓ ଛାନ୍ଦ ସହିତ ଗ୍ରାମ ନିକଟସ୍ଥ 'ମକତବ'ରେ ଉର୍ଦ୍ଦୁ ଓ ଫରାସୀ ଭାଷା ଶିକ୍ଷା କରିଥିଲେ । ଏହାପରେ ସେ କଟକ ଆସି ଚୌଧୁରୀ ବଜାରସ୍ଥିତ ପିତା ସଦାଶିବଙ୍କ ସହ ସ୍ୱକୀୟ ବାସଗୃହରେ ରହିଥିଲେ ଏବଂ କଟକ ଇଂରାଜୀ ସ୍କୁଲରେ ଆଠବର୍ଷ ଅଧ୍ୟୟନ କାଳରେ ନିଜର କୃତିତ୍ୱ ଲାଗି ମାସିକ ଆଠ ଟଙ୍କା ମେଧାବୃତ୍ତି ପାଉଥିଲେ । କଟକରେ ଉଚ୍ଚଶିକ୍ଷା ପାଇଁ ସେତେବେଳେ ସୁବିଧା ନଥିବାରୁ ୧୯୫୬ ଖ୍ରୀଷ୍ଟାବ୍ଦରେ ସେ କଲିକତା ଯାଇ ହୁଗୁଳି କଲେଜରେ ନାମ ଲେଖାଇଲେ । ଆଜିକାଲି ପରି ସେତେବେଳେ ରାସ୍ତାଘାଟ ଓ ଗମନାଗମନର ସୁବିଧା ନଥିବାରୁ ଶଗଡଗାଡିରେ କଟକରୁ ବାଲେଶ୍ୱରରେ ପହଞ୍ଚିବାକୁ ତାଙ୍କୁ ବାରଦିନ ଲାଗିଲା ଏବଂ ସେଠାରୁ ପଦବ୍ରଜରେ ସେ ଦଶଦିନ ପରେ କଲିକତାରେ ପହଞ୍ଚିଥିଲେ । ଅଧ୍ୟୟନ କାଳରେ ଇଂରାଜୀ ଭାଷା ଓ ସାହିତ୍ୟରେ ତାଙ୍କର ଅସାଧାରଣ ପ୍ରତିଭା ଦେଖି ଅଧ୍ୟାପକମାନେ ତାଙ୍କୁ ଖୁବ୍ ଶ୍ରଦ୍ଧା କରୁଥିଲେ । ମାତ୍ର ୧୮୫୮ ଖ୍ରୀଷ୍ଟାବ୍ଦ ନଭେମ୍ବର ମାସରେ ଉଚ୍ଚଶିକ୍ଷା ଲାଭରେ ଡୋରିବାନ୍ଧି ପିତାଙ୍କ ନିର୍ଦ୍ଦେଶକ୍ରମେ ତାଙ୍କୁ ଓଡ଼ିଶାକୁ ଫେରିବାକୁ ପଡିଥିଲା ।

ଗୌରୀଶଙ୍କର କଲିକତାରୁ ଫେରି ବାଲେଶ୍ୱରରେ ଚାକିରି କରୁଥିବା ଜଣେ ପିତୃବ୍ୟଙ୍କ ପାଖରେ ରହିଥିଲେ । ସେତେବେଳେ ଇଂରାଜୀ ଶିକ୍ଷାର ଛାପ ପଡିଥିବା ଗୌରୀଶଙ୍କରଙ୍କ ଭଳି ପ୍ରତିଭାବାନ୍ ଯୁବକଙ୍କୁ ବାଲେଶ୍ୱର ସ୍କୁଲରେ ମାସିକ କୋଡିଏ ଟଙ୍କା ବେତନରେ ଅସ୍ଥାୟୀ ଶିକ୍ଷକ ଚାକିରିରେ ନିଯୁକ୍ତି ସୁଯୋଗ ମିଳିଲା । ଏହି ସ୍କୁଲରେ ଅଧ୍ୟୟନରତ ଓଡ଼ିଶାର ତିନିଜଣ ଯୋଗଜନ୍ମା ପୁରୁଷ କବିବର ରାଧାନାଥ, ରାଜା ବୈକୁଣ୍ଠ ନାଥ ଓ ଉତ୍କଳଗୌରବ ମଧୁସୂଦନଙ୍କର ଗୁରୁ ହେବାର ସୌଭାଗ୍ୟ ଲାଭ କରିଥିଲେ ଗୌରୀଶଙ୍କର । ଏହି ଅସ୍ଥାୟୀ ଚାକିରିର ଅବଧି ପୂରିବାରୁ ସେ ୧୮୫୯ ଖ୍ରୀଷ୍ଟାବ୍ଦରେ କଟକ ଫେରି ଜନସେବାରେ ମନୋନିବେଶ କରିଥିଲେ ଓ 'ଯୁବକମାନଙ୍କ ସଂଘ' ଗଠନ କରିଥିଲେ । ଗରିବ ଓ ଦୁସ୍ଥ ଜନତାର ସେବା କରିବା ଏହି ସଙ୍ଗଠନର ମୂଳ ଲକ୍ଷ୍ୟ ଥିଲା । ମାତ୍ର ସେବା କାର୍ଯ୍ୟରେ ଅର୍ଥର ଆବଶ୍ୟକତାକୁ ଭରଣା କରିବା ନିମନ୍ତେ ସେ କଟକ କମିସନରଙ୍କ କାର୍ଯ୍ୟାଳୟରେ କୋଡିଏ ଟଙ୍କା ମାସିକ ବେତନରେ ପୋଷ୍ଟାଲ ଏଜେଣ୍ଟ ଭାବେ ଚାକିରି କଲେ । ଚାକିରି କ୍ଷେତ୍ରରେ ତାଙ୍କର ଦକ୍ଷତା, କର୍ତ୍ତବ୍ୟପରାୟଣତା, ସଚ୍ଚୋଟତା, ନୀତିନିଷ୍ଠତା ଓ ସମୟାନୁବର୍ତ୍ତିତା ଯୋଗୁଁ ସେ ଉପର ଅଫିସରମାନଙ୍କର ପ୍ରିୟପାତ୍ର ହୋଇପାରିଥିଲେ । ସେ ବାରବର୍ଷ କାଳ ଚାକିରି ଜୀବନରେ କୌଣସି ତ୍ରୁଟିପୂର୍ଣ୍ଣ ନିଷ୍ପତ୍ତି ହେଉ କି କ୍ଷମତାର ଅପବ୍ୟବହାର ହେଉ ବା କ୍ଷମତାପନ୍ନ ପଦାଧିକାରୀଙ୍କ ନୀତିହୀନ ଆଦେଶ ହେଉ ନିର୍ଭୀକ ଭାବରେ ସେ ଏହାର ଦୃଢ ପ୍ରତିବାଦ କରୁଥିଲେ । ସ୍ୱାଧୀନଚେତା ସଚ୍ଚୋଟ ମଣିଷ ଭାବେ ସେ ସାଧାରଣ ଚାକିରି ଜୀବନରେ ଯେପରି ସାହସ ଓ ନିରପେକ୍ଷତା ଅବଲମ୍ବନ କରି ଦୃଷ୍ଟାନ୍ତ ରଖିଯାଇଛନ୍ତି, ତାହା ଆଜିର ସ୍ୱାଧୀନ ଦେଶରେ କ୍ୱଚିତ ଦୃଷ୍ଟିଗୋଚର ହୁଏ । ଜନ୍ ବିମସ୍‌ଙ୍କ ଭଳି ଅଫିସର ମଧ୍ୟ ତାଙ୍କ କାର୍ଯ୍ୟଧାରାକୁ ପ୍ରଶଂସା କରି କଟକ ସହରରେ ଗୌରୀଶଙ୍କର ଜଣେ ମାତ୍ର ମଣିଷ ବୋଲି ମତପୋଷଣ କରିଥିଲେ । ତତ୍କାଳୀନ ଜିଲ୍ଲା ଜର୍ଜ ମାକଫାର୍‌ସନ ତାଙ୍କ ଦକ୍ଷତା ଓ ସମ୍ମାନର ଉଚିତ ବିଚାରକରି ତାଙ୍କୁ ମାସିକ ଅଧିକ ବେତନରେ ଅନୁବାଦକ ଚାକିରିରେ ନିଯୁକ୍ତି ଦେଇଥିଲେ । ସେ ସୁଚାରୁରୂପେ ଚାକିରି ଜୀବନ ଶେଷକରି ୧୮୯୨ ଖ୍ରୀଷ୍ଟାବ୍ଦରେ ଅବସର ଗ୍ରହଣ କରିଥିଲେ ।

ସରକାରୀ ଚାକିରିରେ ଅବସ୍ଥାପିତ କାଳରେ ଗୌରୀଶଙ୍କର ଦୁଇଜଣ ସମଧର୍ମା ମହାନ୍ ଦେଶପ୍ରେମୀ ତଥା ସ୍ୱାଧୀନଚେତା ବ୍ୟକ୍ତିଙ୍କ ସହ ପରିଚିତ ହୋଇଥିଲେ । ଜଣେ

କମିସନର ଅଫିସରେ ଶିରସ୍ତାଦାର ଥିଲାବେଳେ ଅନ୍ୟଜଣକ କଲେକ୍ଟରଙ୍କ ଅଫିସରେ କିରାଣୀ ଥିଲେ। ସେମାନେ ଅନ୍ୟ କେହି ନୁହଁନ୍ତି ଆଦିନେତା ବିଚିତ୍ରା ନନ୍ଦ ଦାସ ଓ ବିଶିଷ୍ଟ କବି ପଣ୍ଡିତ ଗୋବିନ୍ଦ ଚନ୍ଦ୍ର ରଥ । ଏହି ତ୍ରିଶକ୍ତିଙ୍କ ଉଦ୍ୟମରେ ସମାଜ ସଂସ୍କାର, ଶିକ୍ଷା ବିସ୍ତାର, ଦରିଦ୍ର ଓ ଅସହାୟଙ୍କ ସେବାପାଇଁ କାର୍ଯ୍ୟକ୍ରମମାନ ସ୍ଥିର କରାଗଲା । ଏହି ପରିପ୍ରେକ୍ଷୀରେ ସେମାନେ ଏକ ଛାପାଖାନା ପ୍ରତିଷ୍ଠା ପାଇଁ ପ୍ରୟାସୀ ହୋଇଉଠିଲେ । ଲକ୍ଷ୍ୟଧାର୍ଯ୍ୟ ହେଲା ପ୍ରାଚୀନ ଓଡ଼ିଆ ପୁରାଣ ସାହିତ୍ୟ ଓ ପ୍ରତିଷ୍ଠିତ କବିମାନଙ୍କ ଉପରେ ସାହିତ୍ୟ ରଚନା କରି ଜନସାଧାରଣଙ୍କ ମଧ୍ୟରେ ଏହାର ବହୁଳ ପ୍ରଚାର ପ୍ରସାର କରିବା ପାଇଁ। ଏମାନଙ୍କ ଉଦ୍ୟମରେ ତିନିଶହ ଜଣ ଅଂଶୀଦାରଙ୍କୁ ନେଇ ମୋଟ୍ ଟ୭,୫୦୦/– ଅଂଶଧନ ସଂଗ୍ରହ କରି ୧୮୬୫ ଖ୍ରୀଷ୍ଟାବ୍ଦରେ ‘ କଟକ ପ୍ରିଣ୍ଟିଂ କମ୍ପାନୀ’ ନାମକ ଏକ ଛାପାଖାନା ଭଡାଘରେ ପ୍ରତିଷ୍ଠା କରାଗଲା । ଇତିମଧ୍ୟରେ ଗୌରୀଶଙ୍କର ତାଳପତ୍ର ପୋଥିମାନ ସଂଗ୍ରହକରି ପ୍ରାଚୀନ ସାହିତ୍ୟ ଓ କାବ୍ୟ ଉପରେ ଗଭୀର ଜ୍ଞାନ ଆହରଣରେ ମଗ୍ନ ରହିଲେ। ସେ ତାଳପତ୍ର ପୋଥିମାନଙ୍କରୁ ଓଡ଼ିଆ ଭାଷାରେ ଲିଖିତ ରାମାୟଣ, ମହାଭାରତ, ମହାକାବ୍ୟ, ଧର୍ମଗ୍ରନ୍ଥ ଓ ପୁରାଣ ଆଦି ଏହି କଟକ ପ୍ରିଣ୍ଟିଂ କମ୍ପାନୀରେ ପ୍ରକାଶ କରି ବହୁଳ ଭାବରେ ପ୍ରଚାର ପ୍ରସାର କଲେ । ବନ୍ଧୁତ୍ରୟ ମିଶି ‘ଉତ୍କଳ ଦୀପିକା’ ନାମକ ଏକ ସାପ୍ତାହିକ ସମ୍ବାଦପତ୍ର ୧୮୬୫ ଖ୍ରୀଷ୍ଟାବ୍ଦ ଅଗଷ୍ଟ ମାସରେ ପ୍ରକାଶ କରିଥିଲେ । ଏହି ସମ୍ବାଦପତ୍ର ଜରିଆରେ ଓଡ଼ିଆମାନଙ୍କର ତତ୍କାଳୀନ ସମାଜ ଜୀବନର ପ୍ରତିଛବି ପ୍ରତିଫଳିତ ହେଲା । ଗୌରୀଶଙ୍କର ଏହି ପତ୍ରିକାଟିର ସମ୍ପାଦକ ଦାୟିତ୍ୱ ବହନ କରିବା ସହିତ କଟକ ପ୍ରିଣ୍ଟିଂ ପ୍ରେସ୍‌ର ପରିଚାଳନା ନିର୍ଦ୍ଦେଶକ ଥିଲେ । ସେ ପ୍ରିଣ୍ଟିଂ ପ୍ରେସ୍ ସାଙ୍ଗକୁ ଏକ ଟାଇପ୍ ଫାଉଣ୍ଡାରୀ ପ୍ରତିଷ୍ଠା କରି ଭୁବନେଶ୍ୱରର ପଣ୍ଡିତ ସୁଦର୍ଶନ ନନ୍ଦଙ୍କ ସହଯୋଗରେ ଓଡ଼ିଆ ଟାଇପ୍ ଛପା ପାଠ୍ୟପୁସ୍ତକମାନ ପ୍ରକାଶ କରି କମ୍ ମୂଲ୍ୟରେ ବିକ୍ରୟ କରୁଥିଲେ ଏବଂ ଆଧୁନିକ ଲେଖକ, କବି ଓ ସାହିତ୍ୟିକମାନଙ୍କୁ ଉତ୍ସାହିତ କରି ସେମାନଙ୍କ ଲେଖା ପ୍ରକାଶ କରିବା ସହ ସାହିତ୍ୟର ପ୍ରସାର ଦିଗରେ ପଦକ୍ଷେପ ଗ୍ରହଣ କରିଥିଲେ । ଶ୍ରୀ କାମପାଲ ମିଶ୍ରଙ୍କ ପ୍ରଥମ ଓଡ଼ିଆ ଡ୍ରାମା ‘ସୀତା ବିବାହ’ ୧୮୮୨ ମସିହାରେ ସେ ପ୍ରକାଶ କରିଥିଲେ ।

ମାନବ ଜାତିର ଇତିହାସରେ ଓଡ଼ିଶାର ୧୮୬୫ ମସିହା ଲୋମହର୍ଷଣକାରୀ ଭୟାବହ ଦୁର୍ଭିକ୍ଷ ଭଳି ଘଟଣା କେବେ ଦୃଷ୍ଟିଗୋଚର ହୁଏନାହିଁ । ଏହିବର୍ଷ ମଇ ମାସରେ ଅସମ୍ଭବ ଧରଣର ପ୍ରବଳ ଲଗାଣ ବର୍ଷା ଓ ସେପ୍ଟେମ୍ବର ବେଳକୁ ସମ୍ପୂର୍ଣ୍ଣ ବର୍ଷାଶୂନ୍ୟତା ହେତୁ ଫସଲ ହାନି ଘଟିବାରୁ ଦୁର୍ଭିକ୍ଷ ଦେଖା ଦେଇଥିଲା । ଫଳରେ ହଜାର ହଜାର ସଂଖ୍ୟାରେ ଦୁର୍ଭିକ୍ଷ ପ୍ରପୀଡିତ ଲୋକମାନେ କ୍ଷୁଧାରେ ଆଉଟପାଉଟ୍ ହୋଇ ଜୀବନ ହରାଇଥିଲେ । ଗଜପତି ଦିବ୍ୟସିଂହ ଦେବଙ୍କ ନବମ ଅଙ୍କରେ ଏହା ଘଟିଥିବାରୁ ଏହାକୁ ନଅ ଅଙ୍କ ଦୁର୍ଭିକ୍ଷ କୁହାଯାଏ । ‘ଉତ୍କଳ ଦୀପିକା’ ଏହି ଦୁର୍ଦ୍ଦିନରେ ଆଶାର ଆଲୋକ ବର୍ତ୍ତିକା ସ୍ୱରୂପ ତତ୍କାଳୀନ ଓଡ଼ିଶାର ଦୁର୍ଭିକ୍ଷ ପ୍ରପୀଡିତ ଭୋକିଲା ଲୋକମାନଙ୍କ ପ୍ରତି ଶାସକମାନଙ୍କର ଅକରୁଣ, ନିଷ୍ଠୁର ଓ ନିର୍ଦ୍ଦୟ କାର୍ଯ୍ୟକଳାପକୁ କଠୋର ସମାଲୋଚନା କରୁଥିଲା । ଏହାର ସମ୍ପାଦକ ଗୌରୀଶଙ୍କର ସରକାରୀ ଚାକିରିରେ ଥାଇ ମଧ୍ୟ ନିର୍ଭୀକ ଭାବରେ ସରକାରୀ କଳର ନିଷ୍କ୍ରିୟତା ଓ ଦାୟିତ୍ୱହୀନତାକୁ ପଦାରେ ପାଇବାକୁ କୁଣ୍ଠାବୋଧ କରିନଥିଲେ । ଆଜିର ସ୍ୱାଧୀନ ଦେଶରେ ସାମ୍ବାଦିକତା କ୍ଷେତ୍ରରେ ଗୌରୀଶଙ୍କରଙ୍କ ପରି ସଚ୍ଚୋଟତା ଓ ନିରପେକ୍ଷତା ବ୍ୟକ୍ତି ପରିଲକ୍ଷିତ ହୁଏନାହିଁ । ଦୀର୍ଘ ଅର୍ଦ୍ଧଶତାବ୍ଦୀ କାଳ ସେ ଏହି ପତ୍ରିକାଟିର ସମ୍ପାଦନା କାର୍ଯ୍ୟ ବହନ କରି ଜଣେ ସଫଳ ‘ସମ୍ପାଦକ’ ଭାବେ ଗୌରବ ଅର୍ଜନ କରିବା ସହ ଓଡ଼ିଆ ସାମ୍ବାଦିକତା କ୍ଷେତ୍ରରେ ଏକ ଉଦାହରଣ ସୃଷ୍ଟି କରି ଯାଇଛନ୍ତି । ଏହା ସ୍ପଷ୍ଟ ଯେ ଊନବିଂଶ ଶତାବ୍ଦୀରେ ଓଡ଼ିଆମାନଙ୍କର ସାଂସ୍କୃତିକ ଜୀବନରେ ବାର୍ତ୍ତାବହଭାବେ ଉତ୍କଳ ଦୀପିକା କାର୍ଯ୍ୟକରି ଜନମତ ଜାଗ୍ରତ କରିବାର ଏକ ବଳିଷ୍ଠ ମାଧ୍ୟମ ଥିଲା । ଏଥିରେ ତତ୍କାଳୀନ ଓଡ଼ିଆ ଜାତିର ଆତ୍ମସମୀକ୍ଷା, ଉଦାର ମାନବିକତା, ସାଂସ୍କୃତିକ ଚେତନା, ନାଗରିକର ଦାୟିତ୍ୱ ଓ କର୍ତ୍ତବ୍ୟ ସମ୍ପର୍କରେ ବହୁ ଉପାଦେୟ ବିଷୟମାନ ପ୍ରକାଶ କରାଯାଇ ଜନସଚେତନତା ସୃଷ୍ଟି କରାଯାଉଥିଲା ।

କର୍ମବୀର ଗୌରୀଶଙ୍କର ଓଡ଼ିଆ ଜାତିକୁ ମହିମାନ୍ୱିତ କରିବା ଉଦ୍ଦେଶ୍ୟ ନେଇ ୧୮୭୨ ଖ୍ରୀଷ୍ଟାବ୍ଦରେ ‘ଉତ୍କଳ ସଭା ଓ ଓଡ଼ିଶା ଆସୋସିଏସନ’ ନାମକ ଏକ ସଂସ୍ଥା ଗଠନକରି ଦୀର୍ଘ ୩୩ବର୍ଷ ଧରି ୧୯୦୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଏହାର ସମ୍ପାଦକ ଭାବେ କାର୍ଯ୍ୟ କରିଥିଲେ । ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ଉନ୍ନତି ସାଧନ ଥିଲା ଏହାର ମୂଳ ଲକ୍ଷ୍ୟ । ମୁଖ୍ୟତଃ କର୍ମବୀର ଗୌରୀଶଙ୍କର ଓ ଉତ୍କଳଗୌରବ ମଧୁସୂଦନଙ୍କ ପ୍ରତ୍ୟକ୍ଷ ଓ ପରୋକ୍ଷ ଉଦ୍ୟମରେ ଏହି ସଂସ୍ଥାଟିର କାର୍ଯ୍ୟକ୍ରମମାନ ରୂପାୟିତ ହୋଇଥିଲା । ଏହି ସଂସ୍ଥାର ବୈଠକମାନଙ୍କରେ ଯେଉଁ

କାର୍ଯ୍ୟକ୍ରମ ନିମନ୍ତେ ପ୍ରସ୍ତାବମାନ ଗୃହୀତ ହୋଇଥିଲା– ସେଗୁଡ଼ିକ ମଧ୍ୟରେ ସ୍ୱାୟତ୍ତ ଶାସନ ପ୍ରବର୍ତ୍ତନ, ବନ୍ୟା ନିୟନ୍ତ୍ରଣ ଓ ଜଳସେଚନ, ବାଧ୍ୟତାମୂଳକ ପ୍ରାଥମିକ ଶିକ୍ଷା, ଗ୍ରାମ୍ୟ ସ୍ୱାସ୍ଥ୍ୟସେବା, ଶ୍ରମିକ ଓ କୃଷକଙ୍କୁ ଆର୍ଥିକ ସହଯୋଗ, ଯାତାୟାତର ଉନ୍ନତି, କ୍ଷୁଦ୍ରଶିଳ୍ପ ପାଇଁ ପ୍ରୋତ୍ସାହନ ସର୍ବୋପରି ଶାସନ କ୍ଷେତ୍ରରେ ଗଣତନ୍ତ୍ର ନୀତି ପ୍ରବର୍ତ୍ତନ ଏବଂ ଓଡ଼ିଆଭାଷୀ ଅଞ୍ଚଳର ଏକତ୍ରୀକରଣ କରିବା ଥିଲା ଆଲୋଚନାର ମୁଖ୍ୟ ପ୍ରସଙ୍ଗ । ଉତ୍କଳ ସଭା ଏବଂ ଉତ୍କଳ ଆସୋସିଏସନ ମଞ୍ଚରୁ ପ୍ରଚାରିତ ଜନସ୍ୱାର୍ଥ ସମ୍ବଳିତ ଦାବୀଗୁଡ଼ିକୁ 'ଉତ୍କଳ ଦୀପିକା' ପୃଷ୍ଠାରେ ପ୍ରକାଶ କରି ଗୌରୀଶଙ୍କର ଜନଜାଗରଣ ସୃଷ୍ଟି କରୁଥିଲେ । ଓଡ଼ିଶା ଭାଷା ଓ ସାହିତ୍ୟର ସୁରକ୍ଷା ଓ ସମୃଦ୍ଧି ପାଇଁ ତାଙ୍କର ଏହି ସର୍ବଶ୍ରେଷ୍ଠ ଉଲ୍ଲେଖନୀୟ ଅବଦାନକୁ ଓଡ଼ିଆ ଜାତି ବିସ୍ମୃତ ହେବନାହିଁ । ବିଶିଷ୍ଟ ଐତିହାସିକ ରାଜେନ୍ଦ୍ର ଲାଲ ମିତ୍ର ଓଡ଼ିଆ ପରିବର୍ତ୍ତେ ବଂଗ ଭାଷାକୁ ଶିକ୍ଷା ଓ ସରକାରୀ ଭାଷା ଭାବେ ପ୍ରଚଳନ କରିବା ନିମନ୍ତେ ହୋଇଥିବା ପ୍ରସ୍ତାବକୁ ଗୌରୀଶଙ୍କର ଖଣ୍ଡନ କରି ଏପରି ଭାବରେ 'ଉତ୍କଳ ଦୀପିକା' ମାଧ୍ୟମରେ ପ୍ରତିବାଦର ସ୍ୱର ଉତ୍ତୋଳନ କରିଥିଲେ, ଯାହାକି ପରବର୍ତ୍ତୀ କାଳର ଭାଷା ଆନ୍ଦୋଳନ ଓ ଓଡିଆ ଭାଷୀ ଅଞ୍ଚଳର ଏକତ୍ରୀକରଣ ନିମନ୍ତେ ଜାତୀୟତାବାଦୀମାନଙ୍କୁ ପ୍ରୋତ୍ସାହନ ଯୋଗାଇଥିଲା । ତାଙ୍କରି ପ୍ରାରମ୍ଭିକ ଉଦ୍ୟମର ଫଳସ୍ୱରୂପ ଭାଷାଭିତ୍ତିକ ଓଡ଼ିଶା ପ୍ରଦେଶ ଗଠନ ହୋଇଥିଲେ ହେଁ ସ୍ୱାଧୀନ ଭାରତରେ ଆଜି ମଧ୍ୟ ଜଳନ୍ଧର, ଚିକାକୋଲମ୍, ଫୁଲଝର, ବସ୍ତର, ସିଂହଭୂମି, ଷଢେଇକଳା, ଖରସୁଆଁ, ମେଦିନୀପୁର ଆଦି ଓଡ଼ିଆ ଭାଷାଭାଷୀ ଅଞ୍ଚଳଗୁଡିକ ଓଡ଼ିଆ ପ୍ରଦେଶ ସହ ସାମିଲ୍ ହୋଇପାରିନାହିଁ ।

୧୯୦୧ଖ୍ରୀ.ରେ ଖଲ୍ଲିକୋଟ ରାଜା ହରିହର ମର୍ଦ୍ଦରାଜଙ୍କ ଆମନ୍ତ୍ରଣକ୍ରମେ ରମ୍ଭାଠାରେ ଗୌରୀଶଙ୍କର, ରାଧାନାଥ, ମଧୁସୂଦନ, ଫକୀରମୋହନ ପ୍ରଭୃତି ଭାଷା ଏକତ୍ରୀକରଣ ଆନ୍ଦୋଳନର ପ୍ରମୁଖ ନେତାମାନେ ଦାବୀ ପୂରଣ ନିମନ୍ତେ ଆଲୋଚନା କରିବା ପାଇଁ ଓଡ଼ିଆମାନଙ୍କୁ ଏହି ସଭାରେ ଏକତ୍ରୀତ କରିଥିଲେ । ଫଳରେ ରମ୍ଭାଠାରେ ଖଲ୍ଲିକୋଟ ରାଜା ଇଷ୍ଟେଟ ପ୍ରେସ୍ ବା ମର୍ଦ୍ଦରାଜ ପ୍ରେସ୍ ପ୍ରତିଷ୍ଠା କରି ନୀଳମଣି ଖଡୀରତ୍ନଙ୍କ ସମ୍ପାଦନାରେ ସାପ୍ତାହିକ ପତ୍ରିକା 'ବ୍ରଜବନ୍ଧୁ' ପ୍ରକାଶ କଲେ । କଟକରୁ 'ଉତ୍କଳ ଦୀପିକା' ଓ ଗଞ୍ଜାମରୁ 'ବ୍ରଜବନ୍ଧୁ' ପତ୍ରିକାଦ୍ୱୟ ପ୍ରକାଶ ଲାଭ କରିବା ଦ୍ୱାରା ଓଡ଼ିଆମାନଙ୍କ ନ୍ୟାଯ୍ୟ ଦାବୀକୁ ଉପସ୍ଥାପନ କରି ଆନ୍ଦୋଳନକୁ ତୀବ୍ରତର କରିବା ଦିଗରେ ପଦକ୍ଷେପମାନ ଗ୍ରହଣ କରିଥିଲେ । ଏହାଦ୍ୱାରା ସରକାର ମତ ପରିବର୍ତ୍ତନ କରି ଓଡ଼ିଆ ଭାଷାରେ ସରକାରୀ ନଥିପତ୍ର, ନୋଟିସ କୋର୍ଟ ସମନ୍ ଆଦି ଲେଖିବାକୁ ବାଧ୍ୟ ହେଲେ । ଅନେକ ଓଡ଼ିଆ ସରକାରୀ ଚାକିରି ସୁଯୋଗ ଲାଭକରି ପାରିଲେ । ଖଲ୍ଲିକୋଟ ରାଜା 'ଉତ୍କଳ ସାହିତ୍ୟ ସମାଜ' ଭଳି 'ଖଲ୍ଲିକୋଟ ଉତ୍କଳ ସାହିତ୍ୟ ସମାଜ' ଗଠନ କରିଥିଲେ । ଫକୀରମୋହନ ସେନାପତି ଓ ମୃତ୍ୟୁଞ୍ଜୟ ରଥଙ୍କ ଭଳି ପ୍ରବୀଣ ଲେଖକ ଓ ସାହିତ୍ୟିକମାନଙ୍କର ଲେଖାମାନ ଏହି ପତ୍ରିକା ଦ୍ୱୟରେ ପ୍ରକାଶିତ ହୋଇ ଓଡ଼ିଆମାନଙ୍କୁ ଉଦ୍‌ବୁଦ୍ଧ କଲା । ୧୯୦୨ରେ ଗଞ୍ଜାମ ସମ୍ମିଳନୀରେ ଗୌରୀଶଙ୍କର, ମଧୁସୂଦନ, ବିଶ୍ୱନାଥ କର, ଗୋପାଳ ଚନ୍ଦ୍ର ପ୍ରହରାଜ, ନନ୍ଦକିଶୋର ବଳ, ଶଶୀଭୂଷଣ ରାୟ, ଗୋପବନ୍ଧୁ ଦାସ ଓ ଫକୀରମୋହନ ସେନାପତି ଆଦି ପ୍ରମୁଖ ନେତା ଓ ସାହିତ୍ୟିକମାନେ ଯୋଗଦାନ କରି 'ଉତ୍କଳ ସମ୍ମିଳନୀ' ଗଠନର ସୂତ୍ରପାତ ଆରମ୍ଭ କଲେ ଏବଂ ସର୍ବସମ୍ମତିକ୍ରମେ ସ୍ୱୀକୃତ ଉକ୍ତ 'ଉତ୍କଳ ସମ୍ମିଳନୀ'ର ପ୍ରଥମ ଅଧିବେଶନ କଟକ ଇଦ୍‌ଗା ପଡିଆଠାରେ ଅନୁଷ୍ଠିତ ହୋଇ ଦେଶ ମିଶ୍ରଣ ଆନ୍ଦୋଳନର ନେତୃତ୍ୱ ନେଲା । ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ 'ଉତ୍କଳ ସଭା ଓ ଗଞ୍ଜାମ ସମ୍ମିଳନୀ' ଦ୍ୱୟର ସମିଶ୍ରଣରେ 'ଉତ୍କଳ ସମ୍ମିଳନୀ' ଜନ୍ମଲାଭ କରିଥିଲା । ଉତ୍କଳରେ ଏକତା ସ୍ଥାପନ, ଉତ୍କଳର ସର୍ବାଙ୍ଗୀନ ଉନ୍ନତି ସାଧନ, ଓଡ଼ିଆ ଭାଷାଭାଷୀ ଅଞ୍ଚଳମାନଙ୍କୁ ଶାସନ ସୂତ୍ରରେ ଏକତ୍ରୀକରଣ ଏବଂ ପ୍ରବାସୀ ଓଡ଼ିଆମାନଙ୍କ ସ୍ୱାର୍ଥ ସଂରକ୍ଷଣ ଆଦି ଥିଲା ସମ୍ମିଳନୀର ପ୍ରଧାନ ଉଦ୍ଦେଶ୍ୟ । ସମ୍ମିଳନୀ ଏକ ଜାତୀୟ ଖୋଲା ମଞ୍ଚଭାବେ ଉତ୍କଳର ସାମାଜିକ, ବୈଷୟିକ ଓ ରାଜନୈତିକ ଉନ୍ନତି ବିଧାନ ନିମନ୍ତେ ଗଠନ କରାଯାଇ ସମସ୍ତ ଓଡ଼ିଆ ଭାଷୀ ଅଞ୍ଚଳକୁ ଏକତ୍ରୀତ କରି ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଦାବୀ ହାସଲର ମୁଖ୍ୟ ନେତୃତ୍ୱ ଗ୍ରହଣ କରିଥିଲା । ସମ୍ମିଳନୀର ମୁଖପତ୍ର ଭାବେ 'ଉତ୍କଳ ଦୀପିକା' ବିଭିନ୍ନ ଅଧିବେଶନର ବିବରଣୀମାନ ପ୍ରକାଶ କରି ଓଡ଼ିଆମାନଙ୍କ ଶିରା ପ୍ରଶିରାରେ ଜାତିପ୍ରୀତି ଓ ଐକ୍ୟ ମନୋଭାବ ସୃଷ୍ଟି କରିଥିଲା । ଉତ୍କଳ ସମ୍ମିଳନୀର କାର୍ଯ୍ୟନିର୍ବାହିକା ସମିତିର ସ୍ଥାୟୀ ସଭ୍ୟଭାବରେ ଗୌରୀଶଙ୍କର ଆର୍ଥିକ ସାହାଯ୍ୟ କରିବା ସହ ଏହାର ଅନ୍ୟତମ ସମ୍ପାଦକ

ଦାୟିତ୍ୱ ଗ୍ରହଣ କରି ପ୍ରଚଣ୍ଡ ଜାତୀୟତାବାଦୀ ଚିନ୍ତାଧାରାକୁ ସଫଳ ରୂପାୟନ କରିବାରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ ।

କଟକ ପ୍ରିଣ୍ଟିଙ୍ଗ୍ ପ୍ରେସ୍ ପ୍ରତିଷ୍ଠା ଫଳରେ ପାଠ୍ୟପୁସ୍ତକ ସହ ଅନ୍ୟାନ୍ୟ ପୁସ୍ତକ ଓ ପତ୍ରପତ୍ରିକା ପ୍ରକାଶିତ ହୋଇ ଶିକ୍ଷା, ସଂସ୍କୃତି, ରାଜନୀତି ଓ ସାମାଜିକ କ୍ଷେତ୍ରରେ ବୈପ୍ଳବିକ ପରିବର୍ତ୍ତନ ହୋଇପାରିଲା । ଆଧୁନିକ ଶିକ୍ଷା ପ୍ରତି ଯୁବଗୋଷ୍ଠୀର ଆଦର ବୃଦ୍ଧି ପାଇବା ଦ୍ୱାରା ଏକ ସଂସ୍କାରବାଦୀ ପ୍ରତିକ୍ରିୟାଶୀଳ ମଧ୍ୟବିତ୍ତ ଶ୍ରେଣୀର ଆବିର୍ଭାବ ହୋଇଥିଲା ଏବଂ ସେମାନେ ସ୍ୱଦେଶପ୍ରେମ ମନ୍ତ୍ରରେ ଅଭିମନ୍ତ୍ରିତ ହୋଇ ଗୌରୀଶଙ୍କରଙ୍କର ଭାବଧାରାରେ ଅନୁପ୍ରାଣିତ ହୋଇଥିଲେ । ଗ୍ରାମୀଣ ଓଡ଼ିଶାରେ ଇଂରାଜୀ ଭାଷା ସହ ଦେଶୀୟ ଭାଷା ଶିକ୍ଷା, ଦେଶୀୟ ଭାଷାରେ ପୁସ୍ତକ ପ୍ରକାଶନ, ଶିକ୍ଷାର ପ୍ରସାର ନିମନ୍ତେ ବିଦ୍ୟାନୁଷ୍ଠାନମାନ ପ୍ରତିଷ୍ଠା ଓ ସମ୍ବାଦପତ୍ରର ପ୍ରଚାର ପ୍ରସାର ଫଳରେ ଓଡ଼ିଶାର ଜନସାଧାରଣ ଜୀବନଧାରଣର ମାର୍ଗଦର୍ଶନର ସୁବିଧାସୁଯୋଗ ହାସଲକରି ଶିକ୍ଷାର ପ୍ରସାର ଦିଗରେ ଧ୍ୟାନ ଦେଲେ । ନାରୀ ଶିକ୍ଷାର ଉନ୍ନତି ନିମନ୍ତେ ଉତ୍କଳ ସମ୍ମିଳନୀର ପୁରୀଠାରେ ବସିଥିବା ପଞ୍ଚମ ଅଧିବେଶନରେ ପ୍ରସ୍ତାବ ଗୃହୀତ ହୋଇ ନାରୀମାନଙ୍କୁ କୁସଂସ୍କାରରୁ ମୁକ୍ତ କରି ଏକ ମର୍ଯ୍ୟାଦାଜନକ ସୁସ୍ଥ ନାରୀ ସମାଜ ଗଠନ ଦିଗରେ ଶିକ୍ଷାର ଆବଶ୍ୟକତା ଉପଲବ୍ଧି କରାଯାଇଥିଲା । ନାରୀଶିକ୍ଷା ତଥା ଆଧୁନିକ ଶିକ୍ଷାକୁ ଓଡ଼ିଶାରେ ପ୍ରସାରିତ କରିବା ଦିଗରେ ରାଧାନାଥ ରାୟ, ମଧୁସୂଦନ ରାଓ, ଗୌରୀଶଙ୍କର ରାୟ, ଫକୀରମୋହନ ସେନାପତି, ବିଶ୍ୱନାଥ କର ଓ ଗୋପବନ୍ଧୁ ଦାସ ପ୍ରମୁଖ ମନୀଷୀଗଣ ନେତୃତ୍ୱ ନେବା ସହିତ ବିଧବା ବିବାହ ନିଷିଦ୍ଧ ବିରୋଧରେ ଏମାନେ ଦୃଢ଼ ସ୍ୱର ଉତ୍ତୋଳନ କରିଥିଲେ ଏବଂ ନାରୀ ଆନ୍ଦୋଳନର ସାରଥି ଗୌରୀଶଙ୍କର 'ଉତ୍କଳ ଦୀପିକା'ରେ ଏହା ସପକ୍ଷରେ ସମ୍ବାଦ ପରିବେଷଣ କରି ଜନମତକୁ ସଙ୍ଗଠିତ କରିଥିଲେ ।

ଗୌରୀଶଙ୍କର ଥିଲେ ତ୍ୟାଗର ମୂର୍ତ୍ତିମନ୍ତ ପ୍ରତୀକ । ତଥାକଥିତ ନେତାଙ୍କ ପରି ସେ ଭୋଗରେ ବିଶ୍ୱାସ କରୁନଥିଲେ । ନିସ୍ୱାର୍ଥପର କର୍ତ୍ତବ୍ୟ ପାଳନ କରିବା ଦିଗରେ ତାଙ୍କର ଓଡ଼ିଶା ଓ ଓଡ଼ିଆ ପ୍ରୀତିକୁ କଳନା କରିହେବ ନାହିଁ । ସେ ଜଣେ ସଫଳ ସାହିତ୍ୟିକ ହୋଇପାରିନଥିଲେ ସତ, ସାହିତ୍ୟକୁ ପ୍ରୋତ୍ସାହନ ଭୂମିକାରେ ସେ ଥିଲେ ଅଗ୍ରଗଣ୍ୟ । ସେ ଓଡ଼ିଶାର ସାଂସ୍କୃତିକ ପ୍ରାଣକେନ୍ଦ୍ର ଉତ୍କଳ ସାହିତ୍ୟ ସମାଜର ସଭାପତି ଥିଲେ । ସେ ଶିକ୍ଷାବିସ୍ତାର ନିମନ୍ତେ କଟକଠାରୁ ଆରମ୍ଭ କରି ନିଜ ଗ୍ରାମ ପର୍ଯ୍ୟନ୍ତ  ଶିକ୍ଷାନୁଷ୍ଠାନମାନ ସ୍ଥାପନ କରିଥିଲେ । କଟକଠାରେ ନିଜ ଜମି ଓ ଅର୍ଥଦାନରେ 'କାୟସ୍ଥ ବୋର୍ଡିଂ' ପ୍ରତିଷ୍ଠା କରି ଗରିବ ମେଧାବୀ ଛାତ୍ରମାନଙ୍କୁ ଆବାସିକ ଛାତ୍ରାବାସରେ ରହି ଶିକ୍ଷାଲାଭ ନିମନ୍ତେ ସୁଯୋଗ ସୃଷ୍ଟି କରିଥିଲେ । କଟକ ମ୍ୟୁନିସପାଲିଟିର ଅଧ୍ୟକ୍ଷ ଭାବରେ ସମାଜମଙ୍ଗଳ କାର୍ଯ୍ୟମାନ କରି ସହରର ଶ୍ରୀବୃଦ୍ଧି କରିଥିଲେ । ସଭାସମିତି ନିମନ୍ତେ ବ୍ୟକ୍ତିଗତ ଭାବେ କଟକ ଟାଉନ ହଲ୍ ପ୍ରତିଷ୍ଠା ଓ ସାଧାରଣରେ ଏହାର ସଦ୍‌ବ୍ୟବହାର ଉଦ୍ଦେଶ୍ୟ ତାଙ୍କର ମହାନୁଭବତା ବ୍ୟତୀତ ଅନ୍ୟ କିଛି ନୁହେଁ । ସେ ବ୍ରାହ୍ମଧର୍ମ ଗ୍ରହଣ କରିଥିଲେ ମଧ୍ୟ ଅନ୍ୟ କୌଣସି ଧର୍ମପ୍ରତି ତାଙ୍କର ବିଦ୍ୱେଷ ଭାବ ନଥିଲା । ବଂଗର ସଂସ୍କାରକ ରାଜା ରାମମୋହନ ରାୟଙ୍କ ଆଧ୍ୟାତ୍ମିକ ସଂସ୍କାରମୁଖୀ ପ୍ରେରଣାରେ ଓଡ଼ିଶାରେ ନବଜାଗରଣ ନବ ସଂସ୍କୃତିର ପ୍ରେରଣା ଦେଖାଦେଇଥିଲା ଊନବିଂଶ ଶତାବ୍ଦୀର ଦ୍ୱିତୀୟ ଭାଗରେ ଶିକ୍ଷିତ ମଧ୍ୟବିତ୍ତ ଗୋଷ୍ଠୀର ଚିତ୍ତରେ, ଯା'ର ନେତୃତ୍ୱ ଗ୍ରହଣ କରିଥିଲେ କର୍ମଯୋଗୀ ଗୌରୀଶଙ୍କର । ଓଡ଼ିଶାର ଶାସନ, ଶିକ୍ଷା, ଚିକିତ୍ସା, କୃଷି, ଭାଷା, ସାହିତ୍ୟ, ଧର୍ମ, କଳା ଓ ସଂଗୀତ, ମୁଦ୍ରଣ ଶିଳ୍ପ, ସାମ୍ବାଦିକତା, ଜାତୀୟଚେତନା ଜାଗରଣ, ଦେଶମିଶ୍ରଣ, ଅର୍ଥନୈତିକ ବିକାଶ ତଥା ସୁସ୍ଥ ସମାଜଜୀବନ ଗଠନ ନିମନ୍ତେ ସମସ୍ୟାବହୁଳ ଘଟଣା ସମାଧାନ ଓ ସମାଜସେବା ଏପରିକି କୌଣସି ଗୋଟିଏ ଦିଗନାହିଁ, ଯେଉଁଠାରେ ଗୌରୀଶଙ୍କରଙ୍କ ଦୃଷ୍ଟି ନିକ୍ଷେପ ହୋଇନଥିଲା । ଏହିପରି ଭାବରେ ଏକ ଘଟଣାବହୁଳ ଓ କର୍ମମୁଖର ଜୀବନଯାପନ କରି ୧୯୧୭ ମସିହା ମାର୍ଚ୍ଚ ୫ ତାରିଖ ଦିନ ୭୯ ବର୍ଷ ବୟସରେ ସେ ସ୍ୱର୍ଗବାସୀ ହୋଇଥିଲେ ।

ସଭାପତି 'ସମନ୍ୱୟ', ବାଙ୍କିସାହି
ତେଲେଙ୍ଗା ବଜାର, କଟକ-୭୫୩୦୦୯

# ବ୍ୟାସକବି ଫକୀର ମୋହନ

ସୁପ୍ରଭା ମିଶ୍ର

ବ୍ୟାସକବି ଫକୀର ମୋହନ କେବଳ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ନୁହେଁ, ଓଡ଼ିଶାର ସାମାଜିକ ଇତିହାସରେ ମଧ୍ୟ ଜଣେ ବଳିଷ୍ଠ ଐତିହାସିକ ଚରିତ୍ର ହୋଇ ରହିଯାଇଛନ୍ତି । ଉତ୍କଳଗୌରବ ମଧୁସୂଦନ ଦାସଙ୍କ ଭଳି ଫକୀର ମୋହନ ମଧ୍ୟ ଚାହିଁଥିଲେ ଓଡ଼ିଶାକୁ ଏକତ୍ର କରିବାକୁ । ଓଡ଼ିଶାର ଅଖଣ୍ଡିତ ରୂପ ଥିଲା ତାଙ୍କର ସ୍ୱପ୍ନ । ଓଡ଼ିଶା ତଥା ଓଡ଼ିଆ ଭାଷାକୁ ସର୍ବଭାରତୀୟ ସ୍ତରରେ ଗୌରବାନ୍ୱିତ କରିବା ପାଇଁ ସେ ବହୁ ଉଦ୍ୟମ କରିଯାଇଛନ୍ତି । ତାଙ୍କର ସ୍ୱଷ୍ଟ ବକ୍ତବ୍ୟ, ପ୍ରଖର ବୁଦ୍ଧିମତା, ସଙ୍ଗଠନ କ୍ଷମତା, ସହୃଦୟଶୀଳତା ପାଇଁ ବହୁ ସ୍ଥାନରେ ଅସୁବିଧା, ନିନ୍ଦା ପାଇଁ ସେ ଲାଞ୍ଛନାର ଶୀକାର ହୋଇଛନ୍ତି । ତଥାପି ସେହି ବହୁଚର୍ଚ୍ଚିତ ବ୍ୟକ୍ତିତ୍ୱଟି ଆଜି ମଧ୍ୟ ଆମ ଆଗରେ ଏକ କିମ୍ବଦନ୍ତୀ ହୋଇ ଛିଡା ହୋଇଛନ୍ତି । ବ୍ୟାସ, ବାଲ୍ମିକୀ ବଳରାମ ଦାସ, ସାରଳା ଦାସଙ୍କ ପରି ଘରେ ଘରେ ଫକୀର ମୋହନଙ୍କ ସାହିତ୍ୟ ଓ ବହୁମୁଖୀ ପ୍ରତିଭା ଆଦୃତ ହୋଇଅଛି ।

୧୮୪୩ ମସିହା ଜାନୁଆରୀ ୧୩ ତାରିଖରେ ବାଲେଶ୍ୱର ଜିଲ୍ଲାର ମଲ୍ଲିକାଶପୁରଠାରେ ବ୍ୟାସକବି ଫକୀର ମୋହନ ସେନାପତିଙ୍କର ଜନ୍ମ । ବାଲ୍ୟକାଳରେ ତାଙ୍କର ନାମ ଥିଲା ବ୍ରଜମୋହନ । ଶୈଶବରୁ ପିତୃମାତୃହୀନ ହୋଇ ଠାକୁର ମା' କୁଚିଳା ଦେଇଙ୍କ କୋଳରେ ସେ ମଣିଷ ହୋଇଥିଲେ । ଆବାଲ୍ୟରୁ ରୋଗ ଓ ଦାରିଦ୍ର୍ୟ ସହିତ ଲଢ଼ି ସେ ଅଧିକ ଶିକ୍ଷାଲାଭ କରିପାରି ନଥିଲେ । ବଡବାପାଙ୍କ ନିର୍ଦ୍ଦେଶରେ ସେ ଚାଟଶାଳୀରୁ ଉଠିଯାଇ ଅଝାଳ ସିଲେଇ ଓ ନିମକମାହାଲ୍ କାର୍ଯ୍ୟରେ ଯୋଗଦେଲେ । ହେଲେ ଈଶ୍ୱରଙ୍କ ଅସୀମ କରୁଣାରୁ ସେ ଅଳ୍ପଦିନ ପରେ ବାରବାଟୀ ସ୍କୁଲର ତୃତୀୟ ଶିକ୍ଷକ ପଦରେ ମାତ୍ର ଅଢେଇ ଟଙ୍କା ବେତନରେ ନିଯୁକ୍ତି ପାଇଲେ । ସେହିଠାରୁ ହିଁ ତାଙ୍କର କର୍ମମୟ ଜୀବନର ଶୁଭାରମ୍ଭ ହେଲା । କ୍ରମେ ବାଲେଶ୍ୱର ମିଶନ୍ ସ୍କୁଲର ପ୍ରଧାନ ଶିକ୍ଷକ ପଦବୀ ଖାଲି ପଡିବାରୁ ସେ ଏହି କାର୍ଯ୍ୟ ନିର୍ବାହ କଲେ । ଏହି ସମୟରେ ସେ ବାଲେଶ୍ୱର ଜିଲ୍ଲା କଲେକ୍ଟର ଜନ୍ ବୀମ୍ସ୍‌ଙ୍କ ସଂସ୍ପର୍ଶରେ ଆସିଥିଲେ । ବିଦ୍ୱାନ୍ ଜନ୍ ବୀମ୍ସ୍ ରଚନା କରୁଥିବା 'Comparative Grammer of the Indian Languages' ପୁସ୍ତକଟିର ପ୍ରଣୟନରେ ସହାୟତା କରିବା ପାଇଁ ଫକୀର ମୋହନଙ୍କ ଭଳି ପଣ୍ଡିତ ଓ ଦକ୍ଷ ବ୍ୟକ୍ତିଙ୍କୁ ପାଇ ସେ ଅତ୍ୟନ୍ତ ଆନନ୍ଦିତ ହେଲେ । ତାଙ୍କର ବନ୍ଧୁତ୍ୱ ଦୃଢୀଭୂତ ହେଲା । ଫକୀରମୋହନ ଏ ସମ୍ପର୍କରେ କହନ୍ତି– 'ମୋର ସାଂସାରିକ ସର୍ବପ୍ରକାର ଉନ୍ନତିର ଏକମାତ୍ର ମୂଳାଧାର ମହାତ୍ମା ଜନ୍ ବୀମ୍ସ୍' ।

୧୯୬୮ ମସିହାରେ ଫକୀର ମୋହନ ବାଲେଶ୍ୱରଠାରେ ଏକ ପ୍ରେସ୍ ପ୍ରତିଷ୍ଠା କରି ଓଡ଼ିଆ ଭାଷାର ପ୍ରଚାର ଓ ପ୍ରସାର ପାଇଁ ମସୀଯୁଦ୍ଧ ଆରମ୍ଭ କରିଥିଲେ । ଏହି ପ୍ରେସ୍ ଦ୍ୱାରା ବହୁ ପାଠ୍ୟପୁସ୍ତକ ପ୍ରକାଶ କରି ଓଡ଼ିଆ ଭାଷା ସାହିତ୍ୟକୁ ସମୃଦ୍ଧ କରିବା ସଙ୍ଗେ ସଙ୍ଗେ ଜଣେ ପ୍ରତିଷ୍ଠିତ ସାହିତ୍ୟିକ ହେବାର ଗୌରବ ଲାଭ କରିଥିଲେ । ସେତେବେଳେ ସମଗ୍ର ଓଡ଼ିଶାରେ ବଙ୍ଗବାସୀଙ୍କ ଚକ୍ରାନ୍ତରେ ଯେଉଁ ଭାଷା ଆନ୍ଦୋଳନ ଦେଖାଦେଇଥିଲା, ତାହାକୁ ଦମନ କରିବା ପାଇଁ ଫକୀର ମୋହନ ଦୃଢ ପଦକ୍ଷେପ ଗ୍ରହଣ କରିଥିଲେ । ଫକୀର ମୋହନଙ୍କ ପ୍ରଥମ ପତ୍ନୀ ଲୀଳାବତୀ ଥିଲେ । କିଛିଦିନ ପରେ ତାଙ୍କର ପ୍ରଥମ ପତ୍ନୀଙ୍କର ମୃତ୍ୟୁ ଓ ଦ୍ୱିତୀୟ ପତ୍ନୀ ଗ୍ରହଣ ତାଙ୍କ ଜୀବନରେ ଅମୃତଧାରା ଛୁଟାଇ ଦେଇଥିଲା । ଦ୍ୱିତୀୟ ପତ୍ନୀ କୃଷ୍ଣା କୁମାରୀଙ୍କ ଆଗମନରେ କେବଳ ବ୍ୟାସକବିଙ୍କ ଜୀବନଚିତ୍ର ଯେ ସମ୍ପୂର୍ଣ୍ଣ ଭାବେ ବଦଳି ଯାଇଥିଲା ତା' ନୁହେଁ– ସେତେବେଳର ଉତ୍କଳୀୟ ସମାଜ ଉତ୍ତୁଙ୍ଗ ଶିଖରକୁ ଉଠିବା

ସଙ୍ଗେ ସଙ୍ଗେ ସେଦିନର ମାଷ୍ଟର ଫକୀର ମୋହନ ହୋଇଥିଲେ ଆଧୁନିକ ଓଡ଼ିଆ ସାହିତ୍ୟର ବ୍ୟାସକବି– ନୂତନ ଓଡ଼ିଆ ସାହିତ୍ୟ ଇତିହାସର ଭଗୀରଥ । ଫକୀର ମୋହନ ଥିଲେ ଜଣେ ଅଦ୍ଭୁତ କର୍ମୀ । ଶିକ୍ଷକ ଜୀବନରେ ବହୁ ସୁଖ୍ୟାତିର ଅଧିକାରୀ ହେବା ପରେ ସେ ଓହ୍ଲେଇ ଆସିଥିଲେ ପ୍ରଶାସକ ଜୀବନକୁ । ପ୍ରଶାସକ ଜୀବନର ବହୁ ତିକ୍ତ ମଧୁର ଅନୁଭୂତି ତାଙ୍କ ସୃଷ୍ଟି ସମ୍ଭାରକୁ ବାସ୍ତବିକ ବିଚିତ୍ରବର୍ଣ୍ଣା କରି ଗଢି ତୋଳିଥିଲା । ପ୍ରତ୍ୟୁତ୍ପନ୍ନମତି ଫକୀର ମୋହନ ପ୍ରତ୍ୟେକ କ୍ଷେତ୍ରରେ ଇତିହାସ ସୃଷ୍ଟି କରିବାରେ ସକ୍ଷମ ହୋଇପାରିଥିଲେ । ୧୮୭୧ ମସିହାରେ ବାଲେଶ୍ୱର ମାଜିଷ୍ଟ୍ରେଟ୍ ଜନ୍ ବୀମ୍ସ୍‌ଙ୍କ ପ୍ରସ୍ତାବ ତଥା ଓଡ଼ିଶାର କମିଶନର ରେଭେନ୍ସା ସାହେବଙ୍କ ସୁପାରିଶକ୍ରମେ ଫକୀର ମୋହନ ନୀଳଗିରିର ଦେୱାନ୍ ଭାବରେ ନିଯୁକ୍ତି ପାଇଥିଲେ । ପରେ ପରେ ସେହି ଦେୱାନ ଭାବେ ଓଡ଼ିଶାର ବିଭିନ୍ନ ଗଡଜାତ ଅଞ୍ଚଳ ଭ୍ରମଣ କରି ବିଭିନ୍ନ ପଦପଦବୀରେ ଅଧିଷ୍ଠିତ ହୋଇଥିଲେ । ୧୮୭୧ରୁ ୧୮୯୬ ମସିହା ଭିତରେ ସେ ନୀଳଗିରି, ଡମପଡା, ଢେଙ୍କାନାଳ, ଦଶପଲ୍ଲା, ପାଲଲହଡା, କେନ୍ଦ୍ରାପଡା, କେନ୍ଦୁଝରର ଶାସକ ପଦରେ ଥାଇ ଓଡ଼ିଶାବାସୀଙ୍କର ବିଚିତ୍ର ଜୀବନଧାରା ଓ ପ୍ରାଣପ୍ରବାହକୁ ଗଭୀର ଭାବେ ଅଧ୍ୟୟନ କରିବାର ସୁଯୋଗ ପାଇଥିଲେ । ଏହି ପଚିଶି ବର୍ଷର ଅନୁଭୂତି ପରବର୍ତ୍ତୀ ସମୟରେ ତାଙ୍କୁ ଯୁଗସ୍ରଷ୍ଟା ଆସନରେ ପ୍ରତିଷ୍ଠିତ କରିଥିଲା । ଫକୀର ମୋହନ ଏକାଧାରରେ ଜଣେ ଶିକ୍ଷକ, ପ୍ରଶାସକ, କବି, ଅନୁବାଦକ, ଗାଳ୍ପିକ ଓ ଔପନ୍ୟାସିକ ଥିଲେ । ସେ ରାମାୟଣ, ମହାଭାରତ, ଶ୍ରୀମଦ୍ ଭଗବତ ଗୀତା, ହରିବଂଶ, ଉପନିଷଦ, ମେଘଦୂତ ଇତ୍ୟାଦି ଓଡ଼ିଆରେ ଅନୁବାଦ କରି ଜଣେ ସଫଳ ଅନୁବାଦକର ସ୍ଥାନ ନେଇପାରିଛନ୍ତି । ତାଙ୍କ ରଚିତ କବିତାଗୁଡିକ ପୁଷ୍ପମାଳା, ଅବସର ବାସରେ, ପୂଜାଫୁଲ, ଧୂଳି ଆଦି କବିତା ସଙ୍କଳନରେ ତଥା ଗ୍ରନ୍ଥାବଳୀର ପରିଶିଷ୍ଟ କବିତାବଳୀରେ ସ୍ଥାନ ପାଇଅଛି । ତାଙ୍କ 'ଉତ୍କଳ ଭ୍ରମଣଂ', 'ମୁଁ ହାଟ ବାହୁଡା', 'ଯମରାଜାଙ୍କ ଦରବାର', 'କବିର କଳିହୁଡି ସ୍ତ୍ରୀ', 'ଶନିବାର' ପ୍ରଭୃତି ରଚନାରେ ବିଶୁଦ୍ଧ ହାସ୍ୟରସର ପରିଚୟ ମିଳେ । ସେ ବିଭିନ୍ନ ସ୍ୱାଦର ୨୦ଟି ଗଳ୍ପ ରଚନା କରିଛନ୍ତି । ଏଗୁଡିକ ଗଳ୍ପସ୍ୱଳ୍ପ (ପ୍ରଥମ ଓ ଦ୍ୱିତୀୟ ଭାଗ)ରେ ସଙ୍କଳିତ । ରେବତୀ, ଗାରୁଡିମନ୍ତ୍ର, ପାଠୋଇବୋହୂ, ସୁନାବୋହୂ ଆଦି ସମାଜରୁ କୁସଂସ୍କାର ଦୂର କରିଛି ।

ଚାକିରି ଜୀବନରୁ ଅବସର ନେବା ପରେ ଜୀବନର ଶେଷ ୨୦ ବର୍ଷ ମଧ୍ୟରେ ଏସବୁ ରଚନା ସହିତ ସେ ଚାରିଖଣ୍ଡ କ୍ରାନ୍ତିକାରୀ ଉପନ୍ୟାସ ଲେଖିଯାଇଛନ୍ତି । ଏଗୁଡିକ ଓଡ଼ିଆ କଥା ସାହିତ୍ୟ ଜଗତରେ ନବଦିଗନ୍ତ ସୃଷ୍ଟି କରିଛି । ଛ'ମାଣ ଆଠଗୁଣ୍ଠ, ମାମୁଁ, ଲଛମା ଓ ପ୍ରାୟଶ୍ଚିତ ଆଦି ଉପନ୍ୟାସରେ ତତ୍କାଳୀନ ଓଡ଼ିଶାର ଦୀର୍ଘ ୨୦୦ ବର୍ଷର ସମାଜ ଜୀବନର ଇତିହାସ ପ୍ରତିଫଳିତ ହୋଇଛି । ପ୍ରବନ୍ଧ ଓ ରମ୍ୟ ରଚନା କ୍ଷେତ୍ରରେ 'ଯୋଗଶାସ୍ତ୍ର', 'ପ୍ରକୃତ', 'ଶୁଦ୍ର ଓ ବେଦାଧିକାର', ଗୋତ୍ର', 'ଶ୍ରୀକ୍ଷେତ୍ରରେ ଚୈତନ୍ୟ ମହାପ୍ରଭୁ', ଉତ୍କଳ ଭାଷାର ଭୂତ ଭବିଷ୍ୟତ, 'ନନାଙ୍କ ପାଞ୍ଜି', 'ଓ୍ୱାଲ୍‌ଟେୟର ଦର୍ଶନ' ରଚନା କରି ନିଜର କୃତିତ୍ୱ ପ୍ରଦର୍ଶନ କରିଛନ୍ତି । ଶାସ୍ତ୍ରୀୟ ଆଦର୍ଶ ଓ ନିୟମକୁ ପରିହାର କରି ମଧ୍ୟଯୁଗୀୟ ସାହିତ୍ୟ ନିଜର ବିଳାସବ୍ୟସନ ତ୍ୟାଗ କରି ରୋମାଣ୍ଟିକ୍ ସାହିତ୍ୟ ତା' ଶୂନ୍ୟ ସଞ୍ଚରଣ ଛାଡି ଆଜିର ସାହିତ୍ୟ ଆଧୁନିକ ଯୁଗର ପ୍ରଶସ୍ତ ରାଜପଥରେ ଦ୍ରୁତଗତିରେ ଧାବମାନ । ଫକୀର ମୋହନ ବହୁ ନୂତନ ପରମ୍ପରାର ସ୍ରଷ୍ଟା । ଜୀବନଧର୍ମୀ ସାହିତ୍ୟ ସୃଷ୍ଟି ତାଙ୍କଠାରୁ ଆରମ୍ଭ । ଗଦ୍ୟ ସାହିତ୍ୟ କ୍ଷେତ୍ରରେ ସେ ଅପ୍ରତିଦ୍ୱନ୍ଦ୍ୱୀ ସ୍ରଷ୍ଟା । 'ଆତ୍ମଜୀବନ ଚରିତ' ରଚନାର ପରମ୍ପରା ତାଙ୍କରିଠାରୁ ଆରମ୍ଭ । ତାଙ୍କ ପ୍ରବନ୍ଧ ଓ ରମ୍ୟ ରଚନାର ଗୁଣାତ୍ମକ ମାନ ଅମାପ । ତାଙ୍କ ପ୍ରେରଣାରେ ଓଡ଼ିଆ ସାହିତ୍ୟର ଏହି ବିଭାଗରେ ଅଦ୍ୟାବଧି ଲେଖନୀ ଚାଳନା ବନ୍ଦ ହୋଇନାହିଁ । 'ଉତ୍କଳ ଭ୍ରମଣଂ' ଓ 'ବୌଦ୍ଧାବତାର' କାବ୍ୟ ଦୁଇଟିର ତ ପଟାନ୍ତର ନାହିଁ । ଭାଷା ଦୃଷ୍ଟିରୁ ଫକୀର ମୋହନ ପୁଣି ନୂତନ ପରମ୍ପରାର ପ୍ରବର୍ତ୍ତକ । ଦେଶଜ ଭାଷାକୁ ସାହିତ୍ୟିକ ମର୍ଯ୍ୟାଦା ଦେବା, ତତ୍‌ସମ ଶବ୍ଦ ପରିବର୍ତ୍ତେ ଗାଉଁଲି ଶବ୍ଦ ପ୍ରୟୋଗ କରିବା, ତାଙ୍କରି ସାଧନା ଓ କୃତି ତଥା ଆଦର୍ଶ । ତାଙ୍କ ସାହିତ୍ୟରୁ ଓଡ଼ିଶାର ସାମାଜିକ ବିବର୍ତ୍ତନର ଧାରାବାହିକ ଐତିହାସିକ ଚିତ୍ର ମିଳିଥାଏ ।

ଫକୀର ମୋହନ ଜଗତ ଓ ଜୀବନକୁ ଯେପରି ଚିହ୍ନିଥିଲେ ଓଡ଼ିଶାକୁ ସେହିପରି ଟିକିନିଖି ଜାଣିଥିଲେ । ସାମାଜିକ ଜୀବନରେ ଯେଉଁସବୁ ପଦାର୍ଥର ଗୁଣର ଆବଶ୍ୟକତା ରହିଛି, ପ୍ରତ୍ୟେକଟି ସେ ତାଙ୍କ ଲେଖନୀ ମୁନରେ କଳାତ୍ମକ ରୂପ ଦେଇଛନ୍ତି । ତାଙ୍କର ପ୍ରତିଟି ରଚନାରେ ଏକ ଏକ ସାମାଜିକ ମୂଲ୍ୟ ରହିଛି । ଆଜିର ପାଠକ ସେସବୁ କୃତିକୁ ଅନୁଧ୍ୟାନ କଲେ ବର୍ତ୍ତମାନ ସମାଜରେ ଏକ ବୈପ୍ଳବିକ ପରିବର୍ତ୍ତନ ସମ୍ଭବ ହେବ– ଏଥିରେ ସନ୍ଦେହ ନାହିଁ ।

ପ୍ରାଧ୍ୟାପିକା, ବିଜେବି (ସ୍ୱୟଂଶାସିତ)
ମହାବିଦ୍ୟାଳୟ, ଭୁବନେଶ୍ୱର

# ସ୍ୱଭାବ କବି ଗଙ୍ଗାଧରଙ୍କ ସାରସ୍ୱତ ସୃଷ୍ଟି– ଏକ ସଂକ୍ଷିପ୍ତ ଆକଳନ

ନାରାୟଣ ପଣ୍ଡା

ଶ୍ରାବଣର ବଉଦ ଦୋଳିରେ ଯେଉଁ ନବଜାତକଟି ଦିନେ ଝୁଲି ଝୁଲି ଆସି, ସମ୍ବଲପୁର ବରପାଲିର ଚୈତନ୍ୟ ମେହେରଙ୍କ ଗୃହମଣ୍ଡନ କରିଥିଲା, ପରବର୍ତ୍ତୀ କାଳରେ ସେ ସମଗ୍ର ଉତ୍କଳରେ ସୁପରିଚିତ ହେଲେ ସ୍ୱଭାବ କବି ଭାବରେ । ସେ ହେଲେ ଓଡ଼ିଶାର ବରପୁତ୍ର ଗଙ୍ଗାଧର ମେହେର । ତାଙ୍କର ଜନ୍ମଦିନ ଥିଲା ପବିତ୍ର ଶ୍ରାବଣ ପୂର୍ଣ୍ଣିମା ଓ ଇଂରାଜୀ ଅଗଷ୍ଟ ୯ ତାରିଖ ୧୮୬୨ ମସିହା । ସେ ଥିଲେ ତନ୍ତୁବାୟ ଭୂଲିଆ ସମ୍ପ୍ରଦାୟର, ଯେଉଁମାନଙ୍କର ପେସା ବସ୍ତ୍ର ବୟନ କରିବା । ଦାରିଦ୍ର୍ୟର ପଙ୍କିଳ ପରିବେଶରେ ଜନ୍ମିତ ଏହି ପ୍ରତିଭାବନ୍ତ ଶିଶୁ ନିଜ ସିଦ୍ଧିର ଶତ ପଙ୍କଜରେ ସମାଜକୁ ସୁରଭିତ କରିଥିଲେ । ୭/୮ ବର୍ଷ ବୟସରେ ଗାଁ ଚାଟଶାଳୀରେ ସେ ବିଦ୍ୟାରମ୍ଭ କରନ୍ତି । ତାଙ୍କର ପ୍ରତିଭା ଥିଲା ଜନ୍ମଗତ ଓ ଜ୍ଞାନ ପିପାସା ଥିଲା ଅସାମାନ୍ୟ । ପ୍ରଚଣ୍ଡ ଅଧ୍ୟବସାୟ ଥିବାରୁ ସେ ସଂସ୍କୃତ, ହିନ୍ଦୀ ଓ ବଙ୍ଗଳା ଭାଷା ଅଧ୍ୟୟନ କରି ସେଥିରେ ବ୍ୟୁତ୍ପତ୍ତି ଲାଭ କରିଥିଲେ । ଦାରିଦ୍ର୍ୟ ତାଙ୍କର ଇଚ୍ଛା ଶକ୍ତି ଆଗରେ ହାର ମାନିଥିଲା । ତାଙ୍କର ସମୁଦାୟ ଶିକ୍ଷା କାଳରେ ପୁସ୍ତକ କ୍ରୟ ବାବଦରେ ସେ ମାତ୍ର ୨ଟଙ୍କା ପର୍ଯ୍ୟନ୍ତ ଖର୍ଚ୍ଚ କରିବାକୁ ସମର୍ଥ ଥିଲେ । ସମୁଦାୟ ସ୍କୁଲ ଶିକ୍ଷା କାଳରେ ଖଣ୍ଡିଏ କୁରୁତା ପରିଧାନ କରିବା ତାଙ୍କର ସ୍ୱପ୍ନ ହୋଇ ରହିଗଲା । ଶାନ୍ତିପୁରୀ ଚଦରଟିଏକୁ ଅତି ଜୀର୍ଣ୍ଣ ହେବା ପର୍ଯ୍ୟନ୍ତ ସେ ବ୍ୟବହାର କରିଥିଲେ । ଏଥିପାଇଁ ତାଙ୍କର ଅବଶୋଷ ନଥିଲା । ପରେ ସେ କହିଥିଲେ, ଦରିଦ୍ର ଭାବରେ ଜୀବନ କାଟିବାରେ ସେ ଲଜ୍ଜିତ ନୁହଁନ୍ତି, କିନ୍ତୁ ସାଧୁତା ରକ୍ଷା କରିବା ତାଙ୍କ ଜୀବନରେ ହୋଇଥିଲା ପ୍ରତିଫଳିତ ।

କର୍ମମୟ ଜୀବନର ପ୍ରଥମ ସୋପାନରେ ୧୮୮୫ ମସିହାରେ ବରପାଲି ଜମିଦାର ରାୟ ବାହାଦୁର ଲାଲା ନୃପରାଜ ସିଂହଙ୍କ ଜମିଦାରୀରେ ଜଣେ ଅମିନ ଭାବରେ ତାଙ୍କୁ ନିଯୁକ୍ତି ମିଳିଲା । ସେ ଯୁଗରେ ଏପରି ଏକ ଚାକିରି ମଧ୍ୟ ଏକ ଦୁର୍ଲ୍ଲଭ ରାଜାନୁଗ୍ରହ ବୋଲି ବିବେଚିତ ହେଉଥିଲା । ପରେ ସେହିଠାରେ ଜୁଡିସିଆଲ୍ ମୋହରିର ରୂପେ ସେ ଅବସ୍ଥାପିତ ହେଲେ । ସମ୍ବଲପୁର ଏବଂ ବିଜେପୁରରେ ୧୯୦୭ରୁ ୧୯୧୪ ପର୍ଯ୍ୟନ୍ତ କାର୍ଯ୍ୟକରି ସ୍ଥାନାନ୍ତରିତ ହେଲେ ପଦ୍ମପୁରକୁ । ପଦ୍ମପୁରରେ ତିନିବର୍ଷ କାମ କରି ୫୫ ବର୍ଷ ବୟସରେ ଅର୍ଥାତ୍ ୧୯୧୭ରେ ତାଙ୍କୁ ଅବସର ଗ୍ରହଣ କରିବାକୁ ପଡିଲା । ତାଙ୍କର ସଚ୍ଚୋଟତା ଓ ସାଧୁତା ଯୋଗୁଁ ଅବସର ଗ୍ରହଣ ପରେ ସେ କିଛି ଦିନ ଅଡିଟର ଓ ମୋହରିର ପଦବୀରେ କାର୍ଯ୍ୟ କରିବା ପାଇଁ ସ୍ଥାନୀୟ ଜମିଦାରଙ୍କ ଦ୍ୱାରା ନିମନ୍ତ୍ରିତ ହୋଇଥିଲେ । ବଡାସମ୍ବର ରାଜା ଲାଲ ରାଜେନ୍ଦ୍ର ସିଂହ ବରିହା ତାଙ୍କର ସାଧୁତା ପାଇଁ ନିଜ ରାଜଧାନୀ ଉପକଣ୍ଠରେ ଖଣ୍ଡିଏ ପଲ୍ଲୀ ପୁରୁଷାନୁକ୍ରମେ ପୁରସ୍କାର ଦେଇଥିଲେ । ସତ୍ୟ ଓ ସରଳତା ତାଙ୍କ ଜୀବନଚର୍ଯ୍ୟାର ମୂଳମନ୍ତ୍ର ଥିବାରୁ ସେ ପଇସାଟିଏ ମଧ୍ୟ କାହା ପାଖରୁ ନେଇ ନିଜ ଆତ୍ମାକୁ ମଳିନ କରିନାହାନ୍ତି । ମଧ୍ୟଯୁଗୀୟ ସାମନ୍ତ ଜମିଦାରଙ୍କ ଦରବାରରେ ନିଜର ସ୍ୱାଧୀନ ଚେତନାକୁ କେବେହେଲେ ବଳି ଦେଇନାହାନ୍ତି ।

ଚାକିରି କରିବା ତାଙ୍କର ପେସା ଥିଲେ ମଧ୍ୟ ନିଶା ଥିଲା ତାଙ୍କର ସାହିତ୍ୟ ସାଧନା । ସ୍କୁଲ ଛାଡିବା ପରେ ସେ ଲାବଣ୍ୟବତୀ, ସୁଭଦ୍ରା ପରିଣୟ, ରସିକ ହାରାବଳୀ, ବୈଦେହୀଶ ବିଳାସ ଓ ରସକଲ୍ଲୋଳ ଆଦି କାବ୍ୟ ଗ୍ରନ୍ଥମାନ ଅଧ୍ୟୟନ କରିଥିଲେ । ଏହା ବ୍ୟତୀତ ଭଞ୍ଜ ସାହିତ୍ୟ, ଭବଭୂତି ଓ କାଳିଦାସ, ବ୍ୟାସଙ୍କର ରଚନାମାନ ଅଧ୍ୟୟନ କରି ଜ୍ଞାନ

ଅର୍ଜନ କରିଥିଲେ । ଏହି ସମୟରେ ରୀତି ଯୁଗୀୟ ଶୈଳୀରେ ସେ ଅନେକ କବିତା ଲେଖିଥିବାର ଜଣାପଡେ । ସେଗୁଡିକ ମଧ୍ୟରୁ ରସ ରତ୍ନାକର ଏକ ବୃହତ୍ କାବ୍ୟାଂଶ । ଭଞ୍ଜଙ୍କର 'କଳା କଉତୁକ'ର ଆଦ୍ୟ ପଦ 'କ' ବର୍ଣ୍ଣ ପରି 'ରସ ରତ୍ନାକର'ର ଆଦ୍ୟ ପଦ 'ର' ବର୍ଣ୍ଣ ନିୟମ ରଚିତ । ଉଷାଭିଳାସର କଥାବସ୍ତୁ ଉପରେ ଏହା ଆଧାରିତ । ତେବେ ଏହି କାବ୍ୟାଂଶ ତାଙ୍କ ଜୀବଦ୍ଦଶାରେ ମୁଦ୍ରିତ ହୋଇନାହିଁ ।

'ଇନ୍ଦୁମତୀ' କାବ୍ୟ କବିଙ୍କର ପ୍ରଥମ ସାରସ୍ୱତ ସୃଷ୍ଟି । କାଳିଦାସଙ୍କ ରଘୁବଂଶର ସୂର୍ଯ୍ୟବଂଶୀ ସମ୍ରାଟ ଅଜ ଓ ବିଦର୍ଭ ରାଜକୁମାରୀ ଇନ୍ଦୁମତୀଙ୍କ ସୁମଞ୍ଜୁଳ ଦାମ୍ପତ୍ୟ ପ୍ରେମ ଉପରେ ଆଖ୍ୟାୟିତ । ଏହି କାବ୍ୟ ୧୮୮୪ରେ ପ୍ରକାଶିତ ହୋଇ ବିପୁଳ ପାଠକୀୟ ଆଦୃତି ଲାଭ କରିଥିଲା । ତାଙ୍କର ଅପୂର୍ବ ଉପସ୍ଥାପନା ଶୈଳୀ, ଭାଷା ସଂଯୋଜନା, ଇନ୍ଦୁବାଳାଙ୍କ ଆକସ୍ମିକ ମୃତ୍ୟୁ ପରେ ରାଜଦମ୍ପତିଙ୍କ ପ୍ରଣୟ ସଂଭୋଗରେ ଭଙ୍ଗା, ଅଜଙ୍କ ଉତ୍ତର ଜୀବନରେ ଏହି ମର୍ମଦାହୀ ବିଚ୍ଛେଦର କାରୁଣ୍ୟ ଇନ୍ଦୁମତୀଙ୍କ ଛତ୍ରେ ଛତ୍ରେ ଚିତ୍ରିତ ହୋଇ ଜୀବନ୍ତ ହୋଇ ଉଠିଥିଲା । ମୟୂରଭଞ୍ଜର ରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓଙ୍କୁ ଉତ୍ସର୍ଗୀକୃତ ହୋଇଥିବା ଏହି କାବ୍ୟକୁ କବିବର ରାଧାନାଥ ଉଚ୍ଚ ପ୍ରଶଂସା କରିଥିବା ବେଳେ ସୁପ୍ରସିଦ୍ଧ କବି ନନ୍ଦକିଶୋର ବଳ କବିତାରେ କାବ୍ୟ ପ୍ରଣେତାଙ୍କୁ ଅଭିନନ୍ଦନ ଜଣାଇଥିଲେ । ତାଙ୍କ ଭାଷାରେ– ପଢିଅଛି 'ଇନ୍ଦୁମତୀ' କାବ୍ୟ କେତେଥର, ସେହିଠାରେ ପରିଚୟ ତୁମ୍ଭର ମୋହର । ଶୁଣିଅଛି, ଦରିଦ୍ରତା କଠୋର ନିଘାତ, ସେହି କଣ୍ଟେ କବି ତୁମେ କର ଦିନପାତ । ସୁଦୂରେ ତୁମ୍ଭରି ପରି ମୁଁ ଆଉ ଜଣେ, ଦାରୁଣ ଦୁଃଖ ପ୍ରହାରେ ବଞ୍ଚେ କ୍ଷୁଣ୍ଣ ମନେ । ... ଭିକ୍ଷୁକୁ ସଙ୍ଗତେ ନୃପ ମୁକୁଟ– ମଣ୍ଡିତ, କାଳବଳେ ହେବ ସର୍ବେ ଭବୁ ଅନ୍ତର୍ହିତ । କିନ୍ତୁ ତୁମ୍ଭେ ଦିନ କବି ରହିବ ଜୀବିତ, ଯେତେଦିନ ଭବେ ଥିବ ଓଡ଼ିଆ ସାହିତ୍ୟ । ... କବିଙ୍କୁ ସମ୍ବୋଧିତ କବିବରଙ୍କ ଏକ ପତ୍ରରେ 'ଇନ୍ଦୁମତୀ' ସମ୍ପର୍କରେ ଲିଖିତ ଅଛି, 'ଇନ୍ଦୁମତୀ' କାବ୍ୟ ମୁଁ ଆଦ୍ୟୋପାନ୍ତ ପାଠ କରି ଆଶାତୀତ ପ୍ରୀତି ଲାଭ କରିଅଛି । ଏ କାବ୍ୟର କବି ସାମାନ୍ୟ ଶକ୍ତିଶାଳୀ ଲେଖକ ନୁହଁନ୍ତି । ଏହାର ଭାଷା ସରଳ, ସାବଲୀଳ ଏବଂ ଶ୍ରୁତି ମଧୁର ହୋଇଅଛି । ମୋ ମତରେ, 'ଇନ୍ଦୁମତୀ' ସ୍ୱଭାବ ସୁନ୍ଦରୀ ଉତ୍କଳ ଭାରତୀଙ୍କର ଅନୁପଯୁକ୍ତ ଭୂଷଣ ନୁହେଁ । ପରେ ପ୍ରକାଶିତ ହୁଏ ତାଙ୍କର ଅନ୍ୟ ଏକ ଉତ୍ତୁଙ୍ଗ ରଚନା 'କୀଚକବଧ' । ମହାଭାରତର ଆଖ୍ୟାୟିକା ଉପରେ ଆଧାରିତ ଏହି କାବ୍ୟରେ କାମୁକ କୀଚକର ଅଖଣ୍ଡ କ୍ଷମତା ଅସହାୟା ଦ୍ରୌପଦୀଙ୍କୁ ତା' ନିକଟକୁ ଯିବା ପାଇଁ ବାଧ କରିଛି । ସେହି ଲମ୍ପଟ କବଳରୁ ନିଜ ସତୀତ୍ୱ ରକ୍ଷା କରିବା ନିମନ୍ତେ ଭୟ ବିହ୍ୱଳିତା ଦ୍ରୌପଦୀ ପଳାୟନ କରନ୍ତି । ପରେ ବିନାଶ ଯା'ନ୍ତି କୀଚକ । ସୈରେନ୍ଦ୍ରୀଠାରୁ ସୁଦେଷ୍ଣା, ଚପଳାଠାରୁ କୀଚକ ଓ ଆଖ୍ୟାୟିକାର ପ୍ରଚ୍ଛଦ ନାୟକ ଭୀମ ଆବେଗ ଓ ଉତ୍କଣ୍ଠାର ସୂକ୍ଷ୍ମ ବାସ୍ତବଧର୍ମୀ ବିଶ୍ଳେଷଣ କାବ୍ୟକୁ ଅପୂର୍ବ ଲଳିତ କାବ୍ୟ କଳାରେ ମଣ୍ଡିତ କରିଛି । 'କୀଚକବଧ'ର ବ୍ୟୟଭାର ଉତ୍କଳଗୌରବ ମଧୁସୂଦନ ବହନ କରିଥିଲେ ।

୧୯୧୨ରେ ପ୍ରକାଶିତ ହୁଏ କବିଙ୍କର ଅନ୍ୟ ଏକ ସାର୍ଥକ ସୃଷ୍ଟି 'କବିତା କଲ୍ଲୋଳ' । କବିଗୁରୁ ରାଧାନାଥଙ୍କୁ ମରଣୋତ୍ତର ଭାବେ ଏହା ଉତ୍ସର୍ଗୀକୃତ । ୧୯୧୪ରେ କବି ଗଙ୍ଗାଧରଙ୍କ ୪ଗୋଟି କବିତା ପୁସ୍ତକ ପ୍ରକାଶିତ ହୋଇଛି । 'ଅର୍ଘ୍ୟଥାଳି', ପାରଳା ଗଜପତି କୃଷ୍ଣଚନ୍ଦ୍ର ଦେବଙ୍କୁ ସମର୍ପିତ ଥିବାବେଳେ ପାଟନାର ବାଳମୁକୁନ୍ଦ ବହିଦାରଙ୍କ ବ୍ୟୟରେ ମୁଦ୍ରିତ ଓ କବିବନ୍ଧୁ ଲରମ୍ଭାର ବ୍ରଜମୋହନ ପଣ୍ଡାଙ୍କୁ ଉତ୍ସର୍ଗୀକୃତ 'ଅଯୋଧ୍ୟା ଦୃଶ୍ୟ' ତାଙ୍କର ଏକ ସାର୍ଥକ ସୃଷ୍ଟି । ସାହିତ୍ୟ ପ୍ରେମୀ ମଧୁସୂଦନ ପଣ୍ଡା ଓ ବ୍ରଜମୋହନ ପଣ୍ଡାଙ୍କ କେତେକ ପ୍ରାକୃତିକ ଦର୍ଶନୀୟ ସ୍ଥାନ ଯଥା: ବାମଣ୍ଡାର ପ୍ରଧାନ ପାଟ, ମହାନଦୀ ଗର୍ଭର କୁଦ ହୀରାକୁଦ, ହୁମା, ମାଲ୍ୟଗିରି, ମହେନ୍ଦ୍ର ଗିରି, କର୍ଲାପାଟ, ଟିକିରିଗୁଡା, ସମ୍ବଲପୁରର ହରିଶଙ୍କର ଓ ନୃସିଂହନାଥ, ସହସ୍ରାଧାର ଜଳପ୍ରପାତ ସମ୍ପର୍କରେ ସୁନ୍ଦର ବର୍ଣ୍ଣନା ରହିଛି । ନଦୀ ମାତୃକା କୋଇଲି, ବ୍ରାହ୍ମଣୀ, ଇବ୍, ଅଙ୍ଗ, ତେଲ ଓ ଜିରା ଆଦି କବିଙ୍କର ସାରସ୍ୱତ ସୃଷ୍ଟିରୁ ବାଦ୍ ପଡି ନାହାନ୍ତି । କବି ନିଖୁଣ ଭାବରେ ଉତ୍କଳର ଅର୍ଦ୍ଧାଧିକ ଅଞ୍ଚଳର ଶୋଭା ସମ୍ପଦର ଭୂଗୋଳକୁ ଚିତ୍ରଣ କରିଛନ୍ତି । ୧୯୧୪ରେ ପ୍ରକାଶିତ ହୋଇଛି ତାଙ୍କର ଅନ୍ୟ ଏକ ସଫଳ ସୃଷ୍ଟି 'ତପସ୍ୱିନୀ' । ରାମାୟଣର ଶ୍ରୀରାମ ବନରେ ସୀତାଙ୍କୁ ପରିତ୍ୟାଗ କରିବା କାହାଣୀ ଉପରେ ଏହା ଦୁଃଖ ମଧ୍ୟରେ ଆଶାର ଆଲୋକ ଲବ କୁଶଙ୍କର ଜନ୍ମ । ଶେଷରେ ଅଶ୍ୱମେଧ ଯଜ୍ଞର କରୁଣ ପରିଣାମର ଅସାଧାରଣ ବର୍ଣ୍ଣନା ଏଥିରେ ରହିଛି । ପ୍ରାଞ୍ଜଳ

ଭାଷା ବିନ୍ୟାସ ମାଧ୍ୟମରେ କବିଙ୍କର ଅସାମାନ୍ୟ ଦକ୍ଷତାରେ ସଜ୍ଜିତ ଚରିତ୍ର ସମୂହର ରସସିକ୍ତ ଅର୍ନ୍ତଧ୍ୱନୀ ଏହି କାବ୍ୟକୁ ଏକ ଅନନ୍ୟ ମହିମାନ୍ୱିତ ସୃଷ୍ଟିର ମର୍ଯ୍ୟାଦା ଦେଇଛି । ଏଗାରଟି ଅଧ୍ୟାୟ ବିଶିଷ୍ଟ ଏହି କାବ୍ୟଟି ସେସମୟରେ ଜଣେ ବଦାନ୍ୟ ଶିକ୍ଷାପ୍ରେମୀ ନାରାୟଣ ମିଶ୍ରଙ୍କୁ ସମର୍ପିତ ହୋଇଛି । କାଳିଦାସଙ୍କ 'ଶକୁନ୍ତଳା' ଅବଲମ୍ୱନରେ କବିଙ୍କ ଲେଖନୀରୁ ଜନ୍ମ ନେଇଛି ଅନ୍ୟ ଏକ ଅନବଦ୍ୟ ସୃଷ୍ଟି 'ପ୍ରଣୟ ବଲ୍ଲରୀ' । ଋଷି କୁମାରୀ ଶକୁନ୍ତଳାଙ୍କ ପ୍ରେମ, ପ୍ରଣୟ, ବିଚ୍ଛେଦ ମିଳନର ଚରମ ଅଭିବ୍ୟକ୍ତି ଏଥିରେ ଘଟିଛି । କଣ୍ୱ-କୁମାରୀ କେତେବେଳେ ପୁଲ୍‌କିତା ତ କେତେବେଳେ ଉପେକ୍ଷିତା, କେତେବେଳେ ସେ ଅନୁତପ୍ତା ତ କେତେବେଳେ ପୁଣି ରୋରୁଦ୍ୟମାନ । ଶେଷରେ ସମସ୍ତ ଆତ୍ମଗ୍ଲାନିର ଅନ୍ତ ଘଟି ପ୍ରଣୟୀ ସହିତ ସୁଖଦ ମିଳନ ଏହି କାବ୍ୟର ଶାଶ୍ୱତ ଅନ୍ତଃସ୍ୱର । ସମ୍ବଲପୁର ବଡାସମ୍ବରର ଜମିଦାର ରାୟ ରାଜେନ୍ଦ୍ର ସିଂହ ଲାଲ ବରିହାଙ୍କୁ ଏହା ସମର୍ପିତ ହୋଇଛି । ସେହିପରି ୧୯୨୧ରେ ପ୍ରକାଶିତ 'କୃଷକ ସଂଗୀତ' ଉକ୍ତ ଜମିଦାର ମହୋଦୟଙ୍କୁ ସେ ଉତ୍ସର୍ଗ କରିଛନ୍ତି । କବି ଏଠାରେ ଜଣେ କୃଷି ବିଜ୍ଞାନୀ । ଅନ୍ନର ମହିମା, କୃଷିର ଗୌରବ, କୃଷକର ଆତ୍ମକଥା, ଆଖୁଚାଷ, ଧାନଚାଷ, ଚଣାମୁଗ, ଓଲୁଅ, ଗହମ, ମରିଚ, ବାଇଗଣ, କନ୍ଦମୂଳ, ପୋଟଳ, କୋବି, କଦଳୀ, ଧନିଆ, ସାରୁ, କାଉଁରିଆ, କପା, ଛଣ, ପାନଭୂମି ଭେଦରେ ଚାଷ ପ୍ରଣାଳୀ ଏଥିରେ ସୁନ୍ଦର ଭାବରେ ବର୍ଣ୍ଣିତ । ଏତଦ୍‌ବ୍ୟତୀତ 'ପଦ୍ମିନୀ' କବିଙ୍କର ଏକ ଐତିହାସିକ କ୍ଷୁଦ୍ର କାବ୍ୟ । କବିଙ୍କର 'ଅହଲ୍ୟାସ୍ତବ', ଭାରତୀ ଭାବନା', 'କୁମାର ଜନ୍ମୋତ୍ସବ', କବିତାମାଳା', ଉତ୍କଳର ସାରସ୍ୱତ ଭଣ୍ଡାରର ଅମୂଲ୍ୟ ସମ୍ପଦ । କବିଙ୍କର ସମସ୍ତ ରଚନା ରସପୂର୍ଣ୍ଣ, ପ୍ରାଣସ୍ପର୍ଶୀ ଓ ହୃଦୟଗ୍ରାହୀ । ତେବେ 'ଇନ୍ଦୁମତୀ', 'ପ୍ରଣୟ ବଲ୍ଲରୀ' ଓ 'ତପସ୍ୱିନୀ' କାବ୍ୟତ୍ରୟ ତାଙ୍କର ସ୍ୱକୀୟ ଗରିମାରେ ପାଠକୀୟମାନଙ୍କୁ ମୁଗ୍‌ଧ କରେ ।

ବିଭିନ୍ନ ସମୟରେ କବିଙ୍କର ଏହି ଅପୂର୍ବ ସୃଷ୍ଟି ସମୂହ ରାଜ୍ୟର ରାଜା ମହାରାଜା ଓ ବଦାନ୍ୟ ବ୍ୟକ୍ତିଙ୍କ ଆର୍ଥିକ ପ୍ରୋତ୍ସାହନରେ ମୁଦ୍ରିତ ହୋଇଛି । ପ୍ରତ୍ୟେକ ସ୍ଥଳରେ କବି ସେମାନଙ୍କୁ ଅନ୍ତରର କୃତଜ୍ଞତା ଅର୍ପଣ କରି ନିଜ ମହାନତାର ପରିଚୟ ଦେଇଛନ୍ତି । ସେ ଚାହିଁଥିଲେ ରାଜା ମହାରାଜାଙ୍କଠାରୁ ବ୍ୟକ୍ତିଗତ ଭାବରେ ଦାନ ଓ ପାରିତୋଷିକ ଗ୍ରହଣ କରି ନିଜର ଆର୍ଥିକ ସୃଷ୍ଟିକୁ ସୁଦୃଢ଼ କରିପାରିଥାନ୍ତେ । ସେ ଥିଲେ ସ୍ୱାଭିମାନୀ । ନିଜର ମର୍ଯ୍ୟାଦାକୁ କେବେ ସେ ବଳି ଦେଇନାହାନ୍ତି । ବାମଣ୍ଡାର ରାଜା ସଚ୍ଚିଦାନନ୍ଦ ଦେଓ ଅନେକ ସମୟରେ ପଣ୍ଡିତ ଓ ଗୁଣୀଜନମାନଙ୍କୁ ନିଜ ରାଜସଭାରେ ହିତୈଷିଣୀ ସମ୍ପାଦକ ନୀଳମଣି ବିଦ୍ୟାରତ୍ନ ତାଙ୍କୁ ଏକଦା ଏହି ରାଜ ଅନୁଗ୍ରହ ଲାଭ ପାଇଁ ପ୍ରଲୋଭିତ କରିଥିଲେ । କବି ଏହାକୁ ବିନମ୍ରତାର ସହିତ ପ୍ରତ୍ୟାଖ୍ୟାନ କରି କହିଥିଲେ, ସାରସ୍ୱତ କାନନର ଅମୃତଭୋଜୀ ମୁକ୍ତ ବିହଙ୍ଗ ସ୍ୱର୍ଣ୍ଣ ପଞ୍ଜୁରୀରେ ପରିବେଷିତ ଦୁଷ୍ପ୍ରାନ୍ନରେ ଆକୃଷ୍ଟ ହେବା ଅସମ୍ଭବ । କବି କେତେ ଆତ୍ମସମ୍ମାନ ସଚେତନ ଓ ସ୍ୱାଭିମାନୀ ଥିଲେ ଏଥିରୁ ତାହା ପ୍ରମାଣ ମିଳେ । ଏକଦା ବରପାଲିର ଜମିଦାରଙ୍କ ସହିତ ବାମଣ୍ଡା ରାଜ ଦରବାରକୁ ଯାଉଥିବା ଅବସରରେ ଜମିଦାର କବିଙ୍କୁ ନିଜର ଜଣେ ପ୍ରଜା ବୋଲି ରାଜା ସଚ୍ଚିଦାନନ୍ଦଙ୍କୁ ପରିଚୟ କରାଇ ଦେଇଥିଲେ । କବିଙ୍କର କୃତୀ ଓ ଖ୍ୟାତି ସମ୍ପର୍କରେ ଅଭିହିତ ଥିବା ରାଜା ଉତ୍ତରରେ କହିଥିଲେ, ସେ ବରପାଲିର ଜଣେ ପ୍ରଜା ହୋଇପାରନ୍ତି, କିନ୍ତୁ ଉତ୍ତରରେ କହିଥିଲେ, ସେ ହେଉଛନ୍ତି, ତାଙ୍କର ହୃଦୟର ରାଜା । କେବଳ ଗଙ୍ଗାଧରଙ୍କ ପାଇଁ ହିଁ ଜଣେ ରାଜାଙ୍କ ମୁହଁରୁ ଏଭଳି ସମ୍ମାନ ଉଚ୍ଚାରିତ ହୋଇପାରେ ।

ବିବିଧ ପ୍ରତିକୂଳ ପରିସ୍ଥିତିରେ ମାତ୍ର ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ଅଧ୍ୟୟନ କରିଥିବା ଏହି ସାରସ୍ୱତ ପୁରୁଷଙ୍କର ସୃଷ୍ଟି ଦିନେ ବିଶ୍ୱବିଦ୍ୟାଳୟର ପାଠ୍ୟପୁସ୍ତକ ରୂପେ ଗୃହୀତ ହୋଇଥିଲା । ହିନ୍ଦୀ ଭାଷାର ପ୍ଳାବନରେ ସମ୍ବଲପୁରର ଯେବେ ଓଡ଼ିଆ ଭାଷା ପ୍ରଶାସନିକ ସ୍ତରରୁ ତା'ର ଅସ୍ତିତ୍ୱ ହରାଇଥିଲା, ମାତୃଭାଷାକୁ ବଞ୍ଚାଇ ରଖି, ମାତୃଭାଷାରେ ଉଚ୍ଚାଙ୍ଗ କାର୍ଯ୍ୟ ରଚନା କରି ଗଙ୍ଗାଧର ମାତୃଭୂମିର ମସ୍ତକ ଉତ୍ତୋଳିତ କରି ରଖିପାରିଥିଲେ । ଗହ୍ମା ପୂର୍ଣ୍ଣିମାର ଆଲୋକ ବର୍ଷାରେ ଭୂମିଷ୍ଠ ହୋଇଥିବା ଏହି ସାହିତ୍ୟ ରଥିଙ୍କର ମହାନ୍ ଆତ୍ମା ୧୯୨୪ ଚୈତ୍ର ଅମାବାସ୍ୟାର ଘନ ତମିସ୍ରା ମଧ୍ୟରେ ପଞ୍ଚଭୂତ ସହିତ ବିଲୀନ ହୋଇଯାଇଥିଲା ।

ନୂଆବନ୍ଧ ସାହି, ନବରଙ୍ଗପୁର

# ପ୍ରବାଦ ପୁରୁଷ ବିଜୁ ପଟ୍ଟନାୟକ

ଡକ୍ଟର ପ୍ରଶାନ୍ତ କୁମାର ପ୍ରହରାଜ

ଆଧୁନିକ ଓଡିଶାର ଅନ୍ୟତମ ନିର୍ମାତା ତଥା ଓଡ଼ିଆ ସ୍ୱାଭିମାନର ପ୍ରତୀକ ବିଜୁବାବୁ ଜଣେ କିମ୍ବଦନ୍ତୀ ପୁରୁଷ । ସ୍ୱତନ୍ତ୍ରତା ଓ ସଫଳତାପୂର୍ଣ୍ଣ ବୈପ୍ଳବିକ ଜୀବନଶୈଳୀ ଦ୍ୱାରା ଉତ୍କଳ ଜନନୀର 'ବୀର ପ୍ରସବିନୀ' ନାମକୁ ସେ ଯଥାର୍ଥରେ ପ୍ରତିପାଦିତ କରିପାରିଛନ୍ତି । ଜାତିର ମୁକ୍ତିଦାତା ସାଜି ଧରାପୃଷ୍ଠରେ ଅବତରଣ କରିଥିବା ଏହି ଯଶସ୍ୱୀ ଯୋଗଜନ୍ମାଙ୍କ ଯୋଗୁଁ ଆଜିର ଓଡ଼ିଶା ବିଶ୍ୱବିଦିତ । ତାଙ୍କର ଜୀବଦ୍ଦଶାରେ ସେବା, ତ୍ୟାଗ, ପରୋପକାର ଓ ନିଷ୍ଠା ପରି ମାନବୀୟ ଗୁଣଗୁଡ଼ିକ ସେ ଆପଣାର କରିପାରିଥିଲେ । ଅପର ପକ୍ଷରେ ତାଙ୍କ ଭିତରେ ଦୁଃସାହସିକତା ତଥା ନିର୍ଭୀକତା ପରି ତେଜୋଦୀପ୍ତ ଗୁଣାବଳୀର ସମାହାର ସହଜାତ ଥିଲା । ଏହି ସ୍ୱାଧୀନତା ସଂଗ୍ରାମୀ, ଦୁଃସାହସିକ ବୈମାନିକ, ଲୋକପ୍ରିୟ ରାଜନୀତିଜ୍ଞ ଓ ସମାଜ ସେବକ ଭାବରେ ନିଜ ଭୂମିକାର ସଫଳ ସଂପାଦନ କରିବା ସହିତ ସୁପ୍ତ ଓଡ଼ିଆ ମନରେ ଜାତିପ୍ରେମର ବହ୍ନି ପ୍ରଜ୍ୱଳନ କରିବାରେ ସକ୍ଷମ ହୋଇପାରିଥିଲେ । ନିଜ ସମୟର ଓଡ଼ିଶାକୁ ଅତୀତର କଳିଙ୍ଗ ଓ ନିଜକୁ ଖାରବେଳଙ୍କ ଦାୟାଦ ରୂପେ ପରିଚୟ ପ୍ରଦାନ କରି ଏକ ସମୃଦ୍ଧ ଓଡ଼ିଶା ଗଠନ ନିମନ୍ତେ ସେ ସର୍ବଦା ଚେଷ୍ଟାରତ ଥିଲେ । ବାସ୍ତବରେ ଓଡ଼ିଆ ଜାତିର ଦୁଃଖଦୁର୍ଦ୍ଦଶା ସେ ସହ୍ୟ କରିପାରୁନଥିଲେ । ମାଟିର ମୂର୍ତ୍ତିକାର ଓ ଝଡ଼ର ଇଗଲ ଏହି ଉତ୍ତୁଙ୍ଗ ବ୍ୟକ୍ତିତ୍ୱ ତଥା ଆଦର୍ଶ ପୁରୁଷଙ୍କ ଜୀବନୀ ଏକ ଇତିହାସ ସଦୃଶ ।



ଏକ ସଂଭ୍ରାନ୍ତ, ସଂସ୍କୃତିସମ୍ପନ୍ନ, ସ୍ୱାଧୀନତା ସଂଗ୍ରାମୀ ପରିବାରରେ ବିଜୁବାବୁ ୧୯୧୬ ମସିହା ମାର୍ଚ୍ଚ ୫ ତାରିଖରେ କଟକର ତୁଳସୀପୁରସ୍ଥିତ ଆନନ୍ଦ ଭବନଠାରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଥିଲା ଲକ୍ଷ୍ମୀନାରାୟଣ ପଟ୍ଟନାୟକ ଏବଂ ମାତାଙ୍କ ନାମ ଆଶାଲତା ଦେବୀ । ପିତାମାତାଙ୍କ ନିକଟରୁ ସେ ନିର୍ଭୀକତାର ଶିକ୍ଷା ଓ ଦୁଃସାହସିକତାର ଦୀକ୍ଷା ଗ୍ରହଣ କରିଥିଲେ । ମହାନ୍ ସ୍ୱପ୍ନ, ଦୃଢ଼ ସଂକଳ୍ପ ଓ କଠୋର ସାଧନା ତାଙ୍କୁ ଜୀବନର ସବୁ କ୍ଷେତ୍ରରେ ସଫଳତାର ଶିଖରରେ ପହଞ୍ଚାଇ

ପାରିଥିଲା । ତାଙ୍କର ଜୀବନ ଯେତିକି ଘଟଣାବହୁଳ, ସେତିକି ରୋମାଞ୍ଚକର । ବାଲ୍ୟକାଳରୁ ତାଙ୍କ ମନରେ ଜନସେବା ଓ ଦେଶଭକ୍ତିର ଭାବନା ଜାଗରିତ ହୋଇଥିଲା । ୧୯୨୬ ମସିହାରେ ତାଙ୍କୁ ୧୦ ବର୍ଷ ବୟସ ହୋଇଥିବା ସମୟରେ ସ୍ୱରାଜ ଆଶ୍ରମରେ ମହାତ୍ମା ଗାନ୍ଧୀଙ୍କ ଦର୍ଶନ ପାଇଁ ଲୋକ ଗହଳି ଭିତରେ ପଶିବା ବେଳେ ପୋଲିସ୍ ଲାଠି ମାଡ଼ରେ ତାଙ୍କର ମୁଣ୍ଡ ଫାଟି ଯାଇଥିଲା । ମୁଣ୍ଡରୁ ରକ୍ତ ପୋଛି ଗାନ୍ଧିଜୀଙ୍କ ସାମ୍ନାରେ ସେଦିନ ସେ ଶପଥ ନେଇଥିଲେ, ଗୋରା ପୋଲିସ୍‌ର ଏ ଜୁଲମର ଦିନେ ସେ ପ୍ରତିଶୋଧ ନେବେ । ମିଶନ୍ ସ୍କୁଲରେ ପଢୁଥିବା ବେଳେ ଜଣେ ୟୁରୋପୀୟ ସର୍ଜେଣ୍ଟ ତାଙ୍କୁ ମାଡ଼ ଦେଇଥିଲେ । ଘରକୁ ଫେରିବା ପରେ ଘଟଣା ଜାଣି ବାପା ପଚାରିଲେ, ‘‘ନିଜର ମୁଣ୍ଡଟା ଫଟାଇ ଆସିଲୁ, ସର୍ଜେଣ୍ଟର ମୁଣ୍ଡ ଫଟାଇ ପାରିଲୁ ନାହିଁ ?’’ ଏ ଘଟଣାର ମାସକ ପରେ ବାରବାଟୀ କିଲ୍ଲାଠାରେ ହକି ଖେଳିଲାବେଳେ ବିଜୁବାବୁ ସେହି ସର୍ଜେଣ୍ଟର ଗୋଡ଼କୁ ହକି ଷ୍ଟିକ୍‌ରେ ଆଘାତ କରି ଭାଙ୍ଗି ଦେଇଥିଲେ ।

ରେଭେନ୍ସା କଲେଜରେ ପଢୁଥିବା ସମୟରେ ଦୁଇଜଣ ସାଥୀଙ୍କ ସହ ସେ ସାଇକେଲରେ କଟକରୁ ସୁଦୂର ପେଶୱାରକୁ ଦୁର୍ଗମ ଅଭିଯାନରେ ଯାଇଥିଲେ । ବି.ଏସ୍‌ସି. ପଢୁଥିବା ସମୟରେ ସେ ବୈମାନିକ ହେବାର ସ୍ୱପ୍ନ ଦେଖୁଥିଲେ ଏବଂ ପାଇଲଟ୍ ଟ୍ରେନିଂ ନେଇ ରୟାଲ୍ ଇଣ୍ଡିଆ ଏୟାର୍ ଫୋର୍ସ ଓ ଇଣ୍ଡିଆନ୍ ନ୍ୟାସନାଲ୍ ଏୟାର୍‌ୱେଜ୍‌ରେ ଭର୍ତ୍ତି ହୋଇଥିଲେ । ପରବର୍ତ୍ତୀ ଜୀବନରେ ଜଣେ ସାହସୀ ଓ ସୁଦକ୍ଷ ପାଇଲଟ୍ ଭାବରେ ସେ ବହୁ ଅସାଧ କାର୍ଯ୍ୟ ସମ୍ପନ୍ନ କରି ଜାତୀୟ ଓ ଅନ୍ତର୍ଜାତୀୟ ସ୍ତରରେ ଖ୍ୟାତି ଅର୍ଜନ କରିଥିଲେ । ଭାରତର ବଡ଼ଲାଟ୍ ଲର୍ଡ୍ ୱାଭେଲ୍‌ଙ୍କର ସେ ପାଇଲଟ୍ ଥିଲେ । ବଡ଼ଲାଟ୍‌ଙ୍କ ଗୁପ୍ତ ଦଲିଲ୍ ସବୁ ସେ ଗୋପନରେ ଗାନ୍ଧିଜୀଙ୍କୁ ଯୋଗାଇ ଦେଉଥିଲେ । ୧୯୪୦ ମସିହାରେ ଜୟପ୍ରକାଶ ନାରାୟଣଙ୍କ ସହ ତାଙ୍କର ସାକ୍ଷାତ ହୋଇଥିଲା ଏବଂ ବିଜୁବାବୁ ତାଙ୍କୁ ନିଜର ପ୍ରଥମ ରାଜନୈତିକ ଗୁରୁ ରୂପେ ଗ୍ରହଣ କରି ନେଇଥିଲେ । ସେହିବର୍ଷ ସେ ପାଇଲଟ୍ ଚାକିରି ଛାଡ଼ି ଜାତୀୟ ନେତାମାନଙ୍କ ସଂସ୍ପର୍ଶରେ ଆସିଥିଲେ । ‘‘ଭାରତଛାଡ଼’’ ଆନ୍ଦୋଳନରୁ ତାଙ୍କର ରାଜନୈତିକ ଜୀବନର ଅୟମାରମ୍ଭ ହୋଇଥିଲା । ୧୯୪୩ ମସିହାରେ ସେ ଦିଲ୍ଲୀରେ ଗିରଫ ହୋଇ ଲାଲ୍‌କିଲ୍ଲାରେ ବନ୍ଦୀ ହୋଇ ରହିଥିଲେ । ତତ୍କାଳୀନ ଲାଟ୍ ଚନ୍ଦୁଲାଲ୍ ତ୍ରିବେଦୀ ତାଙ୍କୁ ପିଇବାକୁ ପାଣି ନଦେଇ ହାତକୁ ପରିଶ୍ରା ବୋତଲ ଧରାଇ ଦେଇଥିଲେ । ବିଜୁବାବୁ ସେହି ବୋତଲକୁ ଲାଟ୍‌ଙ୍କ ଉପରକୁ ଫିଙ୍ଗି ଦେଇଥିଲେ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଜାପାନ ବର୍ମା ଆକ୍ରମଣ କଲାବେଳେ ବିଜୁବାବୁ ନିଜ ଜୀବନ ବିପନ୍ନ କରି କେତେକ ବ୍ରିଟିଶ୍ ପରିବାରକୁ ମୃତ୍ୟୁ ମୁଖରୁ ଉଦ୍ଧାର କରିଥିଲେ । ହିମାଳୟ ଉପରେ ବିମାନ ନେଇ ସେ ଚୀନ୍‌ର ବିପ୍ଲବୀମାନଙ୍କୁ ସାହାଯ୍ୟ କରିଥିଲେ । ଭାରତଛାଡ଼ ଆନ୍ଦୋଳନ ସମୟରେ ସେ ଜୟପ୍ରକାଶ ନାରାୟଣ, ଅରୁଣା ଆସଫ୍ ଅଲ୍ଲୀ, ରାମ ମନୋହର ଲୋହିଆ ଓ ଅଚ୍ୟୁତ ପଟ୍ଟବର୍ଦ୍ଧନ ଆଦି ଜାତୀୟ ନେତାମାନଙ୍କୁ ନିଜ ଘରେ ଲୁଚାଇ ରଖିଥିଲେ । ଗୋପନରେ ନେତାଜୀଙ୍କ ପ୍ରଚାରପତ୍ର ବିମାନରୁ ବିତରଣ କରୁଥିଲେ । ୧୯୪୭ ରେ ଡଚ୍ – ଇଣ୍ଡୋନେସିଆ ଯୁଦ୍ଧ ଚାଲିଥିବାବେଳେ ବିଜୁବାବୁ ପଣ୍ଡିତ ନେହେରୁଙ୍କ ନିର୍ଦ୍ଦେଶକ୍ରମେ ଇଣ୍ଡୋନେସିଆର ପ୍ରଥମ ପ୍ରଧାନମନ୍ତ୍ରୀ ସୁଲତାନ୍ ସାହାରିୟାର, ମହମ୍ମଦ ହଟ୍ଟା ଏବଂ ଅନ୍ୟ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ବିମାନରେ ଜାକର୍ତ୍ତାରୁ ରେଙ୍ଗୁନ୍ ବାଟ ଦେଇ ଦିଲ୍ଲୀକୁ ନେଇ ଆସିଥିଲେ । ସେ ରାଷ୍ଟ୍ରପତି ସୁକର୍ଣ୍ଣଙ୍କର ଜୀବନ ରକ୍ଷା ମଧ୍ୟ କରିଥିଲେ । ତାଙ୍କର ଏହି ଅପୂର୍ବ ସାହସ ଓ ବୀରତ୍ୱ ପାଇଁ ଇଣ୍ଡୋନେସିଆ ସରକାର ତାଙ୍କୁ ସେ ଦେଶର ସର୍ବୋଚ୍ଚ ସମ୍ମାନ ‘‘ଭୂମିପୁତ୍ର’’ ଉପାଧିରେ ଭୂଷିତ କରିଥିଲେ । ଇଣ୍ଡୋନେସିଆ ସ୍ୱାଧୀନତା ସଂଗ୍ରାମରେ ସହଯୋଗ ପାଇଁ କୃତଜ୍ଞତା ସ୍ୱରୂପ ୧୯୫୦ରେ ତାଙ୍କୁ ଇଣ୍ଡୋନେସିଆ ସରକାର ୫୦୦ କୋଟି ଟଙ୍କା ଆର୍ଥିକ ପୁରସ୍କାର ପ୍ରଦାନ କରିଥିଲେ । କିନ୍ତୁ ବିଜୁବାବୁ ସେହି ଅର୍ଥରାଶିକୁ ଇଣ୍ଡୋନେସିଆବାସୀଙ୍କ କଲ୍ୟାଣ ଉଦ୍ଦେଶ୍ୟରେ ଦାନ କରି ନିଜର ମହାନୁଭବତା ପ୍ରଦର୍ଶନ କରିଥିଲେ । ୧୯୪୮ ମସିହାରେ ପାକିସ୍ଥାନର ଭାରତ ଆକ୍ରମଣ କାଳରେ ବିଜୁବାବୁ ସର୍ବପ୍ରଥମେ ଭାରତୀୟ ସୈନ୍ୟମାନଙ୍କୁ ବିମାନରେ ନେଇ ଶ୍ରୀନଗରରେ ପହଞ୍ଚାଇ ଥିଲେ । ୧୯୬୨ ମସିହାରେ ଚୀନ୍ ଆକ୍ରମଣ କାଳରେ ସେ ପଣ୍ଡିତ ନେହେରୁଙ୍କ ନିର୍ଦ୍ଦେଶକ୍ରମେ ଗୋପନରେ ଆମେରିକା ଯାତ୍ରା କରିଥିଲେ । ୧୯୬୫ ମସିହାରେ ଭାରତ–

ପାକିସ୍ଥାନ ଯୁଦ୍ଧ କାଳରେ ପ୍ରଧାନମନ୍ତ୍ରୀ ଲାଲ୍‌ବାହାଦୁର ଶାସ୍ତ୍ରୀ ତାଙ୍କୁ ଇଣ୍ଡୋନେସିଆ ପଠାଇଥିଲେ ଏବଂ ବିଜୁବାବୁଙ୍କ ଉଦ୍ୟମର ଫଳସ୍ୱରୂପ ଇଣ୍ଡୋନେସିଆ ପାକିସ୍ଥାନକୁ ଯୁଦ୍ଧ ବିମାନ ବିକ୍ରୀ ବନ୍ଦ କରିଥିଲା । ଚୀନ୍‌ର ଭାରତ ଆକ୍ରମଣବେଳେ ନେହେରୁ ପ୍ରତିରକ୍ଷା ସଂକ୍ରାନ୍ତୀୟ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ଉପରେ ବିଜୁବାବୁଙ୍କ ପରାମର୍ଶ ନେଉଥିଲେ । ବୈପ୍ଳବିକ ଜୀବନଶୈଳୀ ତାଙ୍କର ପରବର୍ତ୍ତୀ ଜୀବନକୁ ଜାଜ୍ଜ୍ୱଲ୍ୟମାନ କରିଥିଲା । ଫରାସୀ ବୀରପୁରୁଷ ନେପୋଲିଅନ୍ ବୋନାପାର୍ଟ ଥିଲେ ତାଙ୍କର ଆଦର୍ଶ ।

୧୯୪୬ ମସିହାରେ ବିଜୁବାବୁ ପ୍ରତ୍ୟକ୍ଷ ରାଜନୀତିରେ ପ୍ରବେଶ କରିଥିଲେ । ସର୍ଦ୍ଦାର ପଟେଲଙ୍କ ପରାମର୍ଶକ୍ରମେ କଟକ ସହରରୁ ବିଧାନସଭାକୁ ନିର୍ବାଚିତ ହୋଇ ସେ ସାଧାରଣ ସେବା କ୍ଷେତ୍ରରେ ଅବତୀର୍ଣ୍ଣ ହୋଇଥିଲେ । ଡକ୍ଟର ମହତାବଙ୍କର ସେ ଥିଲେ ଅତ୍ୟନ୍ତ ଘନିଷ୍ଠ ସହକର୍ମୀ । ସମସ୍ତ ରାଜନୈତିକ କାର୍ଯ୍ୟକ୍ରମରେ ସେ ତାଙ୍କର ଦକ୍ଷିଣ ହସ୍ତଭଳି କାର୍ଯ୍ୟ କରି ଆସିଥିଲେ । ୧୯୫୭ ଦ୍ୱିତୀୟ ସାଧାରଣ ନିର୍ବାଚନ ପରେ ବିଜୁବାବୁ ଝାଡ଼ଖଣ୍ଡ ଓ କମ୍ୟୁନିଷ୍ଟ ଦଳର ସମର୍ଥନ ଯୋଗାଡ଼ କରି ମହତାବ ମନ୍ତ୍ରିମଣ୍ଡଳ ଗଠନରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ଦୁଇବର୍ଷ ପରେ ଅଣ-କଂଗ୍ରେସ ସଭ୍ୟଙ୍କ ସମର୍ଥନକ୍ରମେ ଶାସନ ଚଳାଇବାରେ ଉପୁଜିଥିବା ଅସୁବିଧା ଦେଖି ବିଜୁବାବୁ ଗଣତନ୍ତ୍ର ପରିଷଦ ସହିତ ମିଶି ମିଳିତ ମନ୍ତ୍ରିମଣ୍ଡଳ ଗଠନ ପାଇଁ ଡକ୍ଟର ମହତାବଙ୍କୁ ପ୍ରବର୍ତ୍ତାଇ ଥିଲେ । ୧୯୫୯ ମଇ ମାସରେ ତାଙ୍କର ଏହି ଉଦ୍ୟମର ଫଳସ୍ୱରୂପ ଡକ୍ଟର ମହତାବଙ୍କ ନେତୃତ୍ୱରେ ମିଳିତ ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲା ।

ବିଜୁବାବୁ ୧୯୬୧ ମସିହାରେ ପ୍ରଦେଶ କଂଗ୍ରେସ ସଭାପତି ଭାବେ ନିର୍ବାଚିତ ହେବା ପରେ କଂଗ୍ରେସ ରାଜନୀତିରେ ଯୁବ ନେତୃତ୍ୱର ଅଭ୍ୟୁଦୟ ହୋଇଥିଲା । ୧୯୬୧ ଜୁନ୍ ମାସରେ ଓଡ଼ିଶା ବିଧାନସଭାର ମଧ୍ୟବର୍ତ୍ତୀକାଳୀନ ତୃତୀୟ ସାଧାରଣ ନିର୍ବାଚନ ଅନୁଷ୍ଠିତ ହୋଇ ଓଡ଼ିଶାରେ ବିଜୁବାବୁଙ୍କ ନେତୃତ୍ୱରେ କଂଗ୍ରେସ ବିପୁଳ ସଂଖ୍ୟା ଗରିଷ୍ଠତା ହାସଲ କରିଥିଲା । ବିଧାନସଭାର ୧୪୦ଟି ଆସନ ମଧ୍ୟରୁ କଂଗ୍ରେସ ୮୨ଟି ଆସନ ପାଇଥିଲା । ୧୯୬୧ ଜୁନ୍ ୨୩ ତାରିଖରେ ବିଜୁ ପଟ୍ଟନାୟକଙ୍କ ମୁଖ୍ୟମନ୍ତ୍ରିତ୍ୱରେ ନୂତନ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲା । ତାଙ୍କ ମନ୍ତ୍ରିମଣ୍ଡଳର ଶାସନ କାଳରେ ରାଜ୍ୟର ଶିଳ୍ପକ୍ଷେତ୍ରରେ ବିକାଶ ପାଇଁ ବହୁ ପ୍ରଗତିଶୀଳ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଥିଲା । ସେଥିମଧ୍ୟରେ ପାରାଦୀପ ବନ୍ଦର, ଖଣି ଅଞ୍ଚଳକୁ ସଂଯୋଗ ପାଇଁ ୯୧ କି.ମି. ଦଇତାରୀ-ପାରାଦୀପ ଏକ୍ସପ୍ରେସ ହାଇୱେ (ଏବର ଜାତୀୟ ରାଜପଥ ୫-କ), ବାଲିମେଳା ଜଳ ବିଦ୍ୟୁତ୍ ଯୋଜନା, ତାଳଚେର ଥର୍ମାଲ୍ ପ୍ରକଳ୍ପ, ସୁନାବେଡ଼ା ମିଗ୍ ବିମାନ କାରଖାନା, ବଡ଼ବିଲ୍ ଲୁହା କାରଖାନା, ନାଲ୍‌କୋ ଆଲୁମିନିୟମ୍ ପ୍ରକଳ୍ପ ଏବଂ ପଞ୍ଚାୟତ ସ୍ତରରେ ବହୁ କ୍ଷୁଦ୍ର ଓ ମଧ୍ୟମ ଶିଳ୍ପ ପ୍ରତିଷ୍ଠା ଆଦି ଉଲ୍ଲେଖଯୋଗ୍ୟ । ଓଡ଼ିଶା ରାଜ୍ୟ ବିଦ୍ୟୁତ୍ ବୋର୍ଡ଼ (୧୯୬୧), ଓଡ଼ିଶା ଶିଳ୍ପ ବିକାଶ ନିଗମ (୧୯୬୨), ଓଡ଼ିଶା କ୍ଷୁଦ୍ର ଶିଳ୍ପ ନିଗମ (୧୯୬୧-୬୨) ଆଦି ବହୁ ନିଗମ ଓ ବୋର୍ଡ଼ ସ୍ଥାପନ କରାଯାଇଥିଲା । ଗ୍ରାମାଞ୍ଚଳରେ ଶିଳ୍ପର ବିସ୍ତାର ପାଇଁ ଗ୍ରାମପଞ୍ଚାୟତ ଶିଳ୍ପ ସଂସ୍ଥା ପ୍ରତିଷ୍ଠା ହୋଇଥିଲା । ବିଜୁବାବୁ ଓଡ଼ିଶାର ପଞ୍ଚାୟତସ୍ତରୀୟ ଶିଳ୍ପର ଜନ୍ମଦାତା । ତାଙ୍କ ସମୟରେ ରାଉରକେଲାଠାରେ ଆଞ୍ଚଳିକ ଇଞ୍ଜିନିୟରିଂ କଲେଜ ଏବଂ ବିଭିନ୍ନ ଅଞ୍ଚଳରେ ବିଜ୍ଞାନ କଲେଜ, ଇଞ୍ଜିନିୟରିଂ ଓ ପଲିଟେକ୍‌ନିକ୍ ଅନୁଷ୍ଠାନଗୁଡ଼ିକ ସ୍ଥାପନ କରାଯାଇଥିଲା । ଶିକ୍ଷାର ପ୍ରସାର ବିଶେଷତଃ ବୈଷୟିକ ଶିକ୍ଷା ପାଇଁ ବ୍ୟାପକ ବ୍ୟବସ୍ଥା କରାଯାଇଥିଲା । ଭୁବନେଶ୍ୱରରେ ସୈନିକ ବିଦ୍ୟାଳୟ ଓ ଆଞ୍ଚଳିକ ତାଲିମ କଲେଜ ପ୍ରତିଷ୍ଠା କରାଯାଇଥିଲା । ପ୍ରଥମ ଶ୍ରେଣୀଠାରୁ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ପ୍ରାଥମିକ ବିଦ୍ୟାଳୟ ପାଠ୍ୟପୁସ୍ତକଗୁଡ଼ିକୁ ଜାତୀୟକରଣ କରାଯାଇଥିଲା । ଚାରିବାଟିଆ ସାମରିକ ବିମାନ ଅବତରଣ କେନ୍ଦ୍ର, ସମ୍ବଲପୁର ଓ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ, ବୁର୍ଲାଠାରେ ଇଂଜିନିୟରିଂ ଓ ମେଡ଼ିକାଲ କଲେଜ ପ୍ରତିଷ୍ଠା ପ୍ରଭୃତି ବିଜୁବାବୁଙ୍କ ଶାସନର ଉଲ୍ଲେଖନୀୟ ଅବଦାନ । ବିଜୁବାବୁ ୧୯୬୩ ଅକ୍ଟୋବର ୧ ତାରିଖ ପର୍ଯ୍ୟନ୍ତ ମୁଖ୍ୟମନ୍ତ୍ରୀ ଦାୟିତ୍ୱରେ ରହି ଓଡ଼ିଶାରେ ନିର୍ମାଣ ଯୁଗର ଶୁଭାରମ୍ଭ କରିଥିଲେ । କାମରାଜ ଯୋଜନାରେ ସେ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଇ କଂଗ୍ରେସର ସାଙ୍ଗଠନିକ କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ । ବିଜୁବାବୁ ଥିଲେ କାମରାଜ ଯୋଜନାର ଅନ୍ୟତମ ପ୍ରଣେତା ।

୧୯୭୦ ଏପ୍ରିଲ ୬ ତାରିଖରେ ବିଜୁବାବୁ ଜାତୀୟ କଂଗ୍ରେସରୁ ଅଲଗା ହୋଇ ପ୍ରଦେଶ କଂଗ୍ରେସର ବହୁ ସଭ୍ୟଙ୍କୁ ନେଇ 'ଉତ୍କଳ କଂଗ୍ରେସ' ନାମକ ଏକ ଆଞ୍ଚଳିକ ଦଳ ଗଠନ କରିଥିଲେ । ୧୯୭୧ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନରେ କଂଗ୍ରେସ ଏକକ ସଂଖ୍ୟାଗରିଷ୍ଠ ଦଳ ଭାବରେ ନିର୍ବାଚିତ ହେଲେ ମଧ୍ୟ ମନ୍ତ୍ରିମଣ୍ଡଳ ଗଠନ କରିବାକୁ ସମର୍ଥ ହୋଇ ପାରିନଥିଲା । ତେଣୁ ବିଶ୍ୱନାଥ ଦାସଙ୍କ ନେତୃତ୍ୱରେ ସ୍ୱତନ୍ତ୍ର-ଉତ୍କଳ କଂଗ୍ରେସ-ଝାଡ଼ଖଣ୍ଡ ଆଦି ଦଳଗୁଡ଼ିକ ମିଶିଯାଇ ଚତୁର୍ଥ ମିଳିତ ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲା । ପରବର୍ତ୍ତୀ କାଳରେ ୧୯୭୩ ଜାନୁଆରୀ ୨୬ ତାରିଖରେ ଉତ୍କଳ କଂଗ୍ରେସ, ସ୍ୱତନ୍ତ୍ର ଦଳ, ଜନକଂଗ୍ରେସ ଓ କେତେକ ସ୍ୱାଧୀନ ସଭ୍ୟ ମିଶି ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ପ୍ରଗତି ଦଳ ଗଠନ କରିଥିଲେ । ୧୯୭୫ ଜୁନ୍ ମାସରେ ଜରୁରିକାଳୀନ ପରିସ୍ଥିତି ଜାରି ହେବାର ଅବ୍ୟବହିତ ପୂର୍ବରୁ ଉତ୍କଳ କଂଗ୍ରେସ ଚୌଧୁରୀ ଚରଣ ସିଂହଙ୍କ ନେତୃତ୍ୱରେ ଗଠିତ ଭାରତୀୟ ଲୋକଦଳରେ ମିଶି ଯାଇଥିଲା । ୧୯୭୭ ମସିହାରେ ଜରୁରିକାଳୀନ ପରିସ୍ଥିତି କୋହଳ ହେବାପରେ ଜାତୀୟ ସ୍ତରରେ 'ଜନତା ଦଳ' ନାମକ ଏକ ନୂତନ ଦଳର ଗଠନ ହୋଇଥିଲା । ଓଡ଼ିଶାର ସମସ୍ତ ଅଣକମ୍ୟୁନିଷ୍ଟ ବିରୋଧୀ ଦଳକୁ ନେଇ ବିଜୁବାବୁଙ୍କ ନେତୃତ୍ୱରେ ରାଜ୍ୟରେ ଜନତା ଦଳ ଗଠିତ ହୋଇଥିଲା ।

ଦଶମ ବିଧାନସଭା ନିର୍ବାଚନରେ ୧୯୯୦ ଫେବୃୟାରୀ ମାସରେ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ଜନତା ଦଳ ବିପୁଳ ସଂଖ୍ୟା ଗରିଷ୍ଠତା ହାସଲ କରିଥିଲା । ଏହି ନିର୍ବାଚନରେ ଜନତା ଦଳ ୧୩୯ଟି ଆସନରେ ପ୍ରତିଦ୍ୱନ୍ଦିତା କରି ୧୨୩ଟିରେ ଜୟଯୁକ୍ତ ହୋଇଥିଲା । ୧୯୯୦ ମାର୍ଚ୍ଚ ୫ ତାରିଖରେ ବିଜୁବାବୁ ଦ୍ୱିତୀୟ ଥର ପାଇଁ ମୁଖ୍ୟମନ୍ତ୍ରୀ ଭାବରେ ଶପଥ ଗ୍ରହଣ କରିଥିଲେ । ତାଙ୍କ ନେତୃତ୍ୱରେ ଏହି ମନ୍ତ୍ରିମଣ୍ଡଳ ୧୯୯୫ ମାର୍ଚ୍ଚ ପର୍ଯ୍ୟନ୍ତ ସଂପୂର୍ଣ୍ଣ ୫ ବର୍ଷ ଶାସନରେ ରହି ରାଜ୍ୟରେ ବେକାରୀ ଓ ଦାରିଦ୍ର୍ୟ ଦୂରୀକରଣ ପାଇଁ ବହୁ ବୈପ୍ଳବିକ ପଦକ୍ଷେପ ଗ୍ରହଣ କରିଥିଲା । ମହିଳାଙ୍କ ନିଯୁକ୍ତି କ୍ଷେତ୍ରରେ ବୟସସୀମା କୋହଳ କରାଯାଇଥିଲା । ଶ୍ରମିକମାନଙ୍କ ଦୈନିକ ସର୍ବନିମ୍ନ ମଜୁରି ୨୫ ଟଙ୍କାକୁ ବୃଦ୍ଧି କରାଯାଇଥିଲା । ବୃଦ୍ଧ, ଅକ୍ଷମ ଓ ବିଧବା ଭତ୍ତା ୧୦୦ ଟଙ୍କାକୁ ବୃଦ୍ଧି ହୋଇଥିଲା । କ୍ଷୁଦ୍ର ଓ ନାମମାତ୍ର ଚାଷୀଙ୍କୁ ଆର୍ଥିକ ସାହାଯ୍ୟ ଯୋଜନା ଏବଂ ଗ୍ରାମାଞ୍ଚଳ ଦରିଦ୍ର ଲୋକଙ୍କ ବାସଗୃହ ନିର୍ମାଣ ପାଇଁ କଳିଙ୍ଗ କୁଟୀର ଯୋଜନା ଆଦି ପ୍ରବର୍ତ୍ତନ କରାଯାଇଥିଲା । ବିଧବା ଭତ୍ତା ପାଇଁ ହିତାଧିକାରୀମାନଙ୍କ ବୟସସୀମା ଉଚ୍ଛେଦ ହୋଇଥିଲା । ରାଜ୍ୟରେ ମହିଳା ବିକାଶ ନିଗମ, ମହିଳା ବ୍ୟାଙ୍କ ଓ ରାଜ୍ୟ ମହିଳା କମିଶନ ପ୍ରତିଷ୍ଠା କରାଯାଇଥିଲା । ଦକ୍ଷ ପ୍ରଶାସନ ପାଇଁ ଜିଲ୍ଲା ପୁନର୍ଗଠନ କରାଯାଇ ରାଜ୍ୟରେ ଜିଲ୍ଲା ସଂଖ୍ୟା ୧୩ରୁ ୩୦କୁ ବୃଦ୍ଧି କରାଯାଇଥିଲା । ପ୍ରାଥମିକ ଶିକ୍ଷାକୁ ସାର୍ବଜନୀନ କରାଯାଇଥିଲା । ଛଅଟି ଜିଲ୍ଲାରେ ସଂପୂର୍ଣ୍ଣ ସାକ୍ଷରତା ଯୋଜନା ଆରମ୍ଭ କରାଯାଇଥିଲା ।

ଦୀର୍ଘ ଅର୍ଦ୍ଧ ଶତାବ୍ଦୀରୁ ଊର୍ଦ୍ଧ୍ୱକାଳ ବିଜୁବାବୁ ଓଡ଼ିଶାର ରାଜନୈତିକ, ସାମାଜିକ ଓ ଅର୍ଥନୈତିକ ଜୀବନଧାରାରେ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ନିଜକୁ ସାମିଲ କରିଥିଲେ ଏବଂ ଜାତୀୟ ରାଜନୀତିକୁ ମଧ୍ୟ ପ୍ରଭାବିତ କରୁଥିଲେ । ସବୁ କ୍ଷେତ୍ରରେ ଓଡ଼ିଶାକୁ ଅଗ୍ରଣୀ ତଥା ସମୃଦ୍ଧିଶାଳୀ କରିବା ଥିଲା ତାଙ୍କ ଜୀବନର ଏକମାତ୍ର ଲକ୍ଷ୍ୟ ଓ ବ୍ରତ । କଳିଙ୍ଗର ଅତୀତ ଗୌରବ ତାଙ୍କର ସ୍ମୃତିପଟରେ ସବୁବେଳେ ଉଜ୍ଜୀବିତ ରହିଥିଲା । ସେ ନିଜ ଦ୍ୱାରା ଯେତେ ସବୁ ସଂସ୍ଥା ଗଢ଼ିଥିଲେ, ସବୁଥିରେ 'କଳିଙ୍ଗ'ର ନାମ ସଂଯୋଗ କରିଥିଲେ, ଯଥା - କଳିଙ୍ଗ ଟ୍ୟୁବ୍‌ସ, କଳିଙ୍ଗ ଏୟାର୍‌ଲାଇନ୍ସ, କଳିଙ୍ଗ ଆଇରନ୍ ୱାର୍କସ, କଳିଙ୍ଗ ପୁରସ୍କାର, କଳିଙ୍ଗ ରେଫ୍ରିଜେରେଟର, କଳିଙ୍ଗ ସମ୍ବାଦପତ୍ର, କଳିଙ୍ଗ ଫାଉଣ୍ଡେସନ୍ ଇତ୍ୟାଦି । ଚୌଦ୍ୱାରଠାରେ ସେ ଓଡ଼ିଶା ଲୁଗାକଳ ସ୍ଥାପନ କରିଥିଲେ । ସେ ଥିଲେ ଓଡ଼ିଆ ଜାତିର ସ୍ୱାଭିମାନର ପ୍ରତୀକ । ସେ ହିଁ ଓଡ଼ିଶାକୁ ଆନ୍ତର୍ଜାତିକ ସ୍ତରରେ ପରିଚିତ ଓ ପ୍ରତିଷ୍ଠିତ କରିଯାଇଛନ୍ତି ।

କେନ୍ଦ୍ରରେ ମିଳିତ ସାମ୍ମୁଖ୍ୟ ସରକାର ଗଠନରେ ସେ ଥିଲେ କର୍ଣ୍ଣଧାର । ଜଣେ ସାଂସଦ ଓ କେନ୍ଦ୍ରମନ୍ତ୍ରୀ ରୂପେ ତାଙ୍କର ଭୂମିକା ଦେଶ ଜାତିର ଉନ୍ନତି ନିମନ୍ତେ ଉଦ୍ଦିଷ୍ଟ ଥିଲା । ବିଜୁବାବୁଙ୍କ ସମଗ୍ର ଜୀବନ ଥିଲା ସଂଘର୍ଷମୟ । ଜନଗଣଙ୍କ ପାଇଁ ଉତ୍ସର୍ଗୀକୃତ । ସେ କେବେ ଜୀବନରେ ପରାଜୟ ସ୍ୱୀକାର କରିନାହାନ୍ତି । ସ୍ୱାଭିମାନ ଓ ଆତ୍ମବିଶ୍ୱାସ ହିଁ ତାଙ୍କୁ ସବୁବେଳେ ଆଗକୁ ମାଡ଼ି ଯିବା ପାଇଁ ଶକ୍ତି ଦେଇଛି । ସେ ଥିଲେ ବିପୁଳ କର୍ମ ପ୍ରେରଣାର ଉତ୍ସ । ନିଜସ୍ୱ ବିଚାରବୋଧରେ ସେ ଥିଲେ

ଅଟଳ । ଅନ୍ୟର କଥାଦ୍ୱାରା ସହଜରେ ସେ କେବେ ପ୍ରଭାବିତ ହେଉ ନଥିଲେ । ଯାହା ଉଚିତ ଭାବୁଥିଲେ, ତାହାହିଁ କରୁଥିଲେ । ଅନ୍ୟାୟ ଅନୀତିର ସେ କଠୋର ସମାଲୋଚନା କରୁଥିଲେ । ସ୍ପଷ୍ଟବାଦିତା ଥିଲା ତାଙ୍କର ସ୍ୱଭାବସିଦ୍ଧ ଗୁଣ । ପ୍ରଶାସନ କ୍ଷେତ୍ରରେ ସଂସ୍କାର ଓ ଦକ୍ଷତା ବୃଦ୍ଧି ପାଇଁ ସେ ସତତ ଉଦ୍ୟମ କରୁଥିଲେ । ସରକାରୀ କଳରେ ଅପବ୍ୟୟ ରୋକିବା ପାଇଁ ସେ ବହୁ କଟକଣା ଜାରି କରିଥିଲେ । ଛୁଟି ଦିନରେ ସରକାରୀ ଗାଡ଼ି ବ୍ୟବହାର ସମ୍ପୂର୍ଣ୍ଣ ନିଷିଦ୍ଧ କରି ଦେଇଥିଲେ । ନିଜେ ରିକ୍ସା ଓ ସାଇକେଲରେ ସଚିବାଳୟ ଆସିବାକୁ ସେ କେବେ ସଂକୋଚବୋଧ କରୁନଥିଲେ । ବାହାରକୁ ଅତ୍ୟନ୍ତ କଠୋର ଜଣା ପଡ଼ିଲେ ମଧ୍ୟ ତାଙ୍କର ହୃଦୟ ଥିଲା ଅତି କୋମଳ ଓ ସମ୍ବେଦନଶୀଳ । ବିଜୁବାବୁଙ୍କ ଜୀବନ ଥିଲା ଯେତିକି ଆଭିଜାତ୍ୟପୂର୍ଣ୍ଣ, ସେତିକି ସରଳ ଓ ନିରାଡ଼ମ୍ବର । ସବୁ ପରିସ୍ଥିତି ସହିତ ଖାପ ଖୁଆଇ ଚାଲିବା ଏବଂ ସବୁ ଶ୍ରେଣୀର ଲୋକଙ୍କ ସଙ୍ଗେ ମିଶି ଚଳିବା ଥିଲା ତାଙ୍କ ଜୀବନର ଆଦର୍ଶ । ତେଣୁ ଧନୀ, ଦରିଦ୍ର, ଶିଶୁ, ବୃଦ୍ଧ ସମସ୍ତଙ୍କର ସେ ଥିଲେ ଅତି ଆପଣାର । ଦାମ୍ଭିକତା ଥିଲା ତାଙ୍କର ସହଜାତ ପ୍ରକୃତି । ସେଥିରେ ତିଳେମାତ୍ର ଅହମିକା ବା ଆତ୍ମ ବଡ଼ିମା ନଥିଲା ।

ଦୀର୍ଘ ରାଜନୈତିକ ଜୀବନରେ ବିଜୁବାବୁ ସଫଳତାରେ କେବେ ଉଲ୍ଲସିତ ହୋଇନାହାନ୍ତି କି ବିଫଳତାରେ ଭାଙ୍ଗି ପଡ଼ିନାହାନ୍ତି । ଜୟ-ପରାଜୟ, ନିନ୍ଦା-ପ୍ରଶଂସାକୁ ସେ ସମାନ ଭାବରେ ଗ୍ରହଣ କରି ଆସିଥିଲେ । ଜୀବନକାଳ ମଧ୍ୟରେ ସେ ଯଥେଷ୍ଟ ପ୍ରଶଂସା ଓ ଯଶ ଅର୍ଜନ କରିଛନ୍ତି । ଓଡ଼ିଶାର ପ୍ରାଚୀନ ନାମ 'କଳିଙ୍ଗ', ତା'ର ଗୌରବମୟ ଐତିହ୍ୟକୁ ଯଦି କେହି ଓଡ଼ିଆ, ଜାତୀୟ ଓ ଅନ୍ତର୍ଜାତୀୟ ସ୍ତରରେ ନିଜର ଦୁଃସାହସିକ ଓ ଦୃଷ୍ଟାନ୍ତ ସୃଷ୍ଟିକାରୀ କାର୍ଯ୍ୟଦ୍ୱାରା ପ୍ରଚାରିତ ଓ ପ୍ରତିପାଦିତ କରିଯାଇଛନ୍ତି, ସେ ହେଉଛନ୍ତି ବିଜୁ ପଟ୍ଟନାୟକ । ସେ ସର୍ବଦା କହୁଥିଲେ, ''ମୁଁ ଖାରବେଳ ଜାତିର ଦାୟାଦ, ପୁରୁଷୋତ୍ତମ ଜାତିର ବଂଶଧର – ମୋ ସଂସ୍କୃତି ଜଗନ୍ନାଥ ସଂସ୍କୃତି, କଳାର ଉତ୍କର୍ଷ ପାଇଁ ମୋ ରାଜ୍ୟର ନାମ କଳିଙ୍ଗ । ଏହି କଳିଙ୍ଗ ହେଉଛି ମୋ ମା', ତା' ପାଇଁ ନିଜ ଜୀବନ ବିନିମୟରେ ଯଦି କିଛି କରିପାରିଲି, ତେବେ ମୋ' ଜୀବନର ଲକ୍ଷ୍ୟ ସଫଳ ହୋଇଛି ବୋଲି ମନେ କରିବି ।''

ଅନେକ କୃତିର ସ୍ୱାକ୍ଷର ବହନ କରିଥିବା ଗୋଟିଏ ଯୁଗର ସମାପ୍ତି ସହ ଏହି ମହାନ୍ ଜନନାୟକ ୧୯୯୭ ମସିହା ଅପ୍ରେଲ ମାସ ୧୭ ତାରିଖ ଦିନ ମହାପ୍ରୟାଣ ଲାଭ କରିଥିଲେ । କୃତଜ୍ଞ ଓଡ଼ିଆ ଜାତି ତାଙ୍କ ଜୀବନୀର ସ୍ମରଣ ପୂର୍ବକ ଉତ୍କଳୀୟ ସଂସ୍କୃତିର ଅଙ୍ଗ 'ପ୍ରତିଭାପୂଜା' ଓ 'ପୂଜ୍ୟପୂଜା' ନୀତିକୁ ଦୋହରାଉଛି । ଏହି ବୀର ପୁରୁଷଙ୍କ ସ୍ମୃତି ରୋମନ୍ଥନ ଓଡ଼ିଆ ଜାତି ମନରେ ସର୍ବଦା ପ୍ରେରଣା ଜାଗ୍ରତ କରୁଥିବ ।

ପ୍ରଶାନ୍ତି, ଗାଡକଣ
ତଳସାହି, ପୋଷ୍ଟ– ମଞ୍ଚେଶ୍ୱର ରେଲୱେ କଲୋନୀ
ଭୁବନେଶ୍ୱର-୭୫୧୦୧୭



# ମହିଳା ସଶକ୍ତିକରଣ ଓ ବିଜୁବାବୁ

ଗୀତାଞ୍ଜଳି ବସ୍ତିଆ

ସମାଜରେ ବେଳେବେଳେ ଏମିତି ଜଣେ ଜଣେ ମହାନାୟକ ଓ ମହାପୁରୁଷ ଜନ୍ମ ନିଅନ୍ତି, ଯେଉଁମାନଙ୍କର ନୀତି, ଆଦର୍ଶ ଆଚରଣ ଓ ଉଚ୍ଚାରଣ ଅନ୍ୟମାନଙ୍କ ପାଇଁ ହୋଇଥାଏ ଅନୁକରଣୀୟ, ଅନୁସରଣୀୟ । ସେହିପରି ଜଣେ ଉତ୍ତୁଙ୍ଗ ପୁରୁଷ ଯାହାଙ୍କୁକି ସମସ୍ତେ ଜାଣନ୍ତି, ଆଜିଯାଏଁ ଓଡ଼ିଶାବାସୀ ଯାହାକୁ ନେଇ ସିଏ ଗର୍ବ କରିଆସୁଛନ୍ତି, ଓଡ଼ିଶାର ଅଦ୍ୱିତୀୟ ବରପୁତ୍ର, ନବଉତ୍କଳର ନିର୍ମାତା, ମହାନ ଜନନାୟକ ଏବଂ କୋଟି କୋଟି ଓଡ଼ିଆ ହୃଦୟର ମୁକୁଟ ବିହୀନ ସମ୍ରାଟ ବିଜୁ ପଟ୍ଟନାୟକ । ସେ ହିଁ ହେଉଛନ୍ତି ଆଧୁନିକ ଓଡ଼ିଶାର ମୁକୁଟ ବିହୀନ ସମ୍ରାଟ ଯିଏକି ଜାତିର ଜନକ ମହାତ୍ମା ଗାନ୍ଧୀ, ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ, ସ୍ୱାଭିମାନ ଓ ସମୃଦ୍ଧିର ପ୍ରତୀକ ଉତ୍କଳଗୌରବ ମଧୁସୂଦନ ଦାସ ଓ ସେବା ଓ ତ୍ୟାଗର ପ୍ରତୀକ ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ବ୍ୟକ୍ତିତ୍ୱ ଓ ଚିନ୍ତାଧାରାରେ ପ୍ରଭାବିତ । ତାଙ୍କ ଜୀବଦଶାରେ ସେ ବନିଯାଇଥିଲେ ପ୍ରବାଦ ପୁରୁଷ, ଏକ ଜୀବନ୍ତ କିମ୍ବଦନ୍ତୀ, କାରଣ ଓଡ଼ିଶା ଓ ଓଡ଼ିଆଙ୍କ ସ୍ୱାଭିମାନ ଓ ସମୃଦ୍ଧି ପାଇଁ ତାଙ୍କର ଚିନ୍ତାଧାରା ଥିଲା ସୁଦୂରପ୍ରସାରୀ, ତ୍ୟାଗ ଓ ସଂଗ୍ରାମର କାହାଣୀ ମଧ୍ୟ ଅସୁମାରୀ ।

'ଓଡ଼ିଶାର ବିକାଶ ଆଉ କାହାଦ୍ୱାରା ସମ୍ଭବ ନୁହେଁ । ଆମ ରାଜ୍ୟର ବିକାଶ ପାଇଁ ଆମକୁ ହିଁ ଆମର ସମସ୍ତ ଶକ୍ତି ବିନିଯୋଗ କରି ସଂଘର୍ଷ କରିବାକୁ ପଡ଼ିବ' । ଏହା ହିଁ ଥିଲା ସେଇ ପ୍ରବାଦ ପୁରୁଷଙ୍କର ନୀତି ଓ ଆଦର୍ଶ । ଏ ମାଟି ପାଇଁ ଏ ଜାତି ପାଇଁ ନିଜକୁ ଉତ୍ସର୍ଗ କରିଦେଇଥିଲେ ବିଜୁବାବୁ । ତାଙ୍କର ଚିନ୍ତା ଓ ଚେତନାରେ ଉଚ୍ଚାରଣରେ, ଆଚରଣରେ ଓଡ଼ିଆ ମାଟି ଓ ଓଡ଼ିଆ ଜାତିପାଇଁ ଭରି ରହିଥିଲା ଏକ ଆବେଗ । ଓଡ଼ିଶାକୁ ଏକ ସମୃଦ୍ଧ ସ୍ୱାଭିମାନୀ ଓ ସ୍ୱୟଂ ସମ୍ପୂର୍ଣ୍ଣ ରାଜ୍ୟଭାବେ ଗଢ଼ି ତୋଳିବାରେ ସେ ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ଲଢ଼େଇ କରିଥିଲେ । ବୀର ଓଡ଼ିଆ ଜାତିର ମହାନ୍ ଐତିହ୍ୟ , ଗୌରବମୟ ପରମ୍ପରା, ସମୃଦ୍ଧ ସାହିତ୍ୟ ଓ ସଂସ୍କୃତି, କଳା, ଭାସ୍କର୍ଯ୍ୟ ତଥା ପ୍ରାକୃତିକ ସମ୍ପଦ ଓ ଅପରୂପ ଶୋଭାରାଜିକୁ ନେଇ ସେ ଗର୍ବ କରୁଥିଲେ । ହୀନମାନ୍ୟତା ପରିହାର କରି ଓଡ଼ିଆ ଜାତିକୁ ଜାଗ୍ରତ ଓ କ୍ରିୟାଶୀଳ କରିବା ସେସବୁ ଓଡ଼ିଆଙ୍କୁ ବୀର ଖାରବେଳଙ୍କ ଦାୟାଦ ଭାବେ ସମ୍ବୋଧନ କରୁଥିଲେ । ତାଙ୍କର ଅଦମନୀୟ ବ୍ୟକ୍ତିତ୍ୱ ଓ ବଳିଷ୍ଠ ନେତୃତ୍ୱ ଫଳରେ ଓଡ଼ିଶା ଭାରତବର୍ଷର ମାନଚିତ୍ରରେ ନିଜର ସ୍ୱତନ୍ତ୍ର ପରିଚୟ ଜାହିର କରିପାରିଥିଲା । ଏହା ହିଁ ଥିଲା ଯଥାର୍ଥରେ ଓଡ଼ିଶା ପାଇଁ ସୁବର୍ଣ୍ଣ ଯୁଗ ।

ବିଜୁବାବୁ ମହିଳାମାନଙ୍କ ଉନ୍ନତି ଉପରେ ଜୋର ଦେଉଥିଲେ । ସେହି ଦିବଙ୍ଗତ ନେତା ତାଙ୍କ ମୁଖ୍ୟମନ୍ତ୍ରୀ ସମୟରେ ମହିଳା ସଶକ୍ତିକରଣକୁ ଗୁରୁତ୍ୱ ଦେଇ ପଞ୍ଚାୟତିରାଜ ଅନୁଷ୍ଠାନଗୁଡ଼ିକରେ ମହିଳା ପ୍ରତିନିଧିଙ୍କ ପାଇଁ ୩୩% ସଂରକ୍ଷଣ ବ୍ୟବସ୍ଥା କରିଥିଲେ । ସରକାରୀ ନିଯୁକ୍ତିରେ ମହିଳାଙ୍କ ପାଇଁ ୩୦% ସଂରକ୍ଷଣ ବ୍ୟବସ୍ଥା ତଥା ସ୍ୱାମୀ ସ୍ତ୍ରୀ ଉଭୟଙ୍କ ନାମରେ ଯୁଗ୍ମ ସରକାରୀ ଜମିର ପଟ୍ଟା ପାଇଁ ମଧ୍ୟ ବ୍ୟବସ୍ଥା କରିଥିଲେ । କେବଳ ରାଜନୀତିକ ସଶକ୍ତିକରଣ ନୁହେଁ, ମହିଳାମାନଙ୍କ ବିରୋଧରେ ସାମାଜିକ ସ୍ତରରେ ହୋଇଆସୁଥିବା ଅବହେଳା, ଅନ୍ୟାୟ ଓ ଅତ୍ୟାଚାରର ମୁକାବିଲା କରିବା ପାଇଁ ବିଜୁବାବୁ ତାଙ୍କ ଦ୍ୱିତୀୟ ଥର ମୁଖ୍ୟମନ୍ତ୍ରୀ କାଳରେ ବିବାହ ଖର୍ଚ୍ଚ ପାଇଁ ୨୫ ହଜାର ଟଙ୍କା ଭିତରେ ସୀମିତ ରଖିବା ପାଇଁ ଏକ ପ୍ରଶାସନିକ ନିର୍ଦ୍ଦେଶ ଦେଇଥିଲେ । ଯୌତୁକ ରାକ୍ଷସ କବଳରୁ

ମହିଳାମାନଙ୍କୁ ମୁକ୍ତ କରିବା ଥିଲା ଏହି ନିର୍ଦ୍ଦେଶର ଅସଲ ଉଦ୍ଦେଶ୍ୟ । ଏ ଦିଗରେ ବିଜୁବାବୁ ବୁଝିପାରିଥିଲେ ଯେ ପୁରୁଷ ଯେତେ ପ୍ରତିପତ୍ତିଶାଳୀ ହେଉପଛେ ଘରେ ବା ପରିବାରରେ ମହିଳାମାନେ ହିଁ ହେଉଛନ୍ତି ପ୍ରକୃତ ମୁରବୀ । କୌଣସି ବଧୂ ଉପରେ ନିର୍ଯାତନା ସମ୍ଭବ ନୁହେଁ । ତେଣୁ ଏହି ଧରଣର ନିର୍ଯାତନାରେ ଶାଶୁ ଓ ନଣନ୍ଦମାନଙ୍କୁ ଜବତ୍ କରିବା ପାଇଁ ଗୋଟିଏ ସ୍ଲୋଗାନ୍ ପ୍ରଣୟନ କରିଥିଲେ– 'ଶାଶୁ ହାତକଡ଼ି ନଣନ୍ଦ ବେଡ଼ି' । ବିଜୁବାବୁ ଏପରି ନିର୍ଦ୍ଦେଶ ଦେବାପରେ ଏହି ଧାରା ସମଗ୍ର ରାଜ୍ୟରେ କାର୍ଯ୍ୟକାରୀ ହେଲା ସେତେବେଳେ ଦେଖାଦେଲା ଯେ ଯୌତୁକ ହତ୍ୟା ଓ ଯୌତୁକ ନିର୍ଯାତନା ଘଟଣା ଅନେକାଂଶରେ କମିଛି । ଏହା କେବଳ ଯୌତୁକ ଦାବୀ କରୁଥିବା ଓ ଦାବୀ ମୁତାବକ ଯୌତୁକ ପାଇ ନଥିବା ଲୋକମାନଙ୍କ ମନରେ ଭୀତି ସଂଚାର କଲା ନାହିଁ, ବରଂ ଏହା ନବବଧୂମାନଙ୍କୁ ସେମାନଙ୍କର ସଂପର୍କୀୟମାନଙ୍କ ତାଡ଼ନା ଓ ନିର୍ଯାତନା ସଂପର୍କରେ ଅଭିଯୋଗ କରିବାକୁ ସାହସ ଯୋଗାଇଦେଲା । ବିଜୁବାବୁଙ୍କର ଏହି ଏକମାତ୍ର ସ୍ଲୋଗାନ ମାଧ୍ୟମରେ ଯେଉଁ ସାମାଜିକ ବିପ୍ଳବ ସଂଗଠିତ ହୋଇଥିଲା ତାହାର ପ୍ରଭାବ ଥିଲା ସୁଦୂରପ୍ରସାରୀ ।

ସମାଜରେ ପୁରୁଷମାନଙ୍କ ସହିତ ମହିଳାମାନେ ଯେପରି କାନ୍ଧକୁ କାନ୍ଧ ମିଶାଇ ଚଳିପାରିବେ, ସମାନ ସମ୍ମାନ ଓ ମର୍ଯ୍ୟାଦାର ଅଧିକାରୀ ହେବେ ସେ ଦିଗରେ ମଧ୍ୟ ସେ ଅନେକ ପଦକ୍ଷେପ ଗ୍ରହଣ କରିଥିଲେ । ତାଙ୍କରି ନିର୍ଦ୍ଦେଶ ବଳରେ ଆଜିକାଲି ସ୍କୁଲ୍ କଲେଜରେ ପିଲାମାନଙ୍କର ନାମଲେଖାବେଳେ ବାପାଙ୍କ ନାମ ସହିତ ମାଙ୍କ ନାମ ମଧ୍ୟ ଲେଖାଯାଇଅଛି । ବୋର୍ଡ଼ ସାର୍ଟିଫିକେଟ୍‌ରେ ମଧ୍ୟ ମାଆଙ୍କ ନାମ ଉଲ୍ଲେଖ କରିବା ବାଧ୍ୟତାମୂଳକ ହୋଇଛି । ଯେଉଁମାନେ ସରକାରୀ ଜମି ଲିଜ୍ ନେଉଛନ୍ତି ସେମାନଙ୍କୁ ଦିଆଯାଉଥିବା ପଟ୍ଟାରେ ଉଭୟ ସ୍ୱାମୀ ଓ ସ୍ତ୍ରୀଙ୍କ ନାମ ରହିବାର ବ୍ୟବସ୍ଥା ତାଙ୍କରି ଅମଳରୁ ଆରମ୍ଭ ହୋଇଅଛି । ମହିଳାମାନଙ୍କ ବିରୋଧରେ ହେଉଥିବା ଅପରାଧର ତଦନ୍ତ ଓ ନିୟନ୍ତ୍ରଣ ପାଇଁ ସେ ହିଁ ଆରମ୍ଭ କରିଥିଲେ ସ୍ୱତନ୍ତ୍ର ମହିଳା ଥାନା ବ୍ୟବସ୍ଥା । ତାଙ୍କରି ସମୟରେ ଆରମ୍ଭ ହୋଇଥିଲା ମହିଳା ହୋମଗାର୍ଡ଼, ଏସ୍ ଆଇ ଓ ଏ.ଏସ୍ ଆଇ ନିଯୁକ୍ତି କରିବା ପ୍ରକ୍ରିୟା । ସେ ହିଁ ଥିଲେ ଓଡ଼ିଶାରେ ନାରୀ ସଶକ୍ତିକରଣର ଆଦ୍ୟ ଉଦ୍ୟୋକ୍ତା ।

ବିଜୁବାବୁ ଥିଲେ ଏପରି ଜଣେ ନେତା ଯାହାଙ୍କର ସଦାସର୍ବଦା ଲୋକମାନଙ୍କ ସମସ୍ୟା ପ୍ରତି ଦରଦ ଥିଲା । ସେ ନିଜେ ସାହସୀ ଥିଲେ ଓ ସାହସୀ ଲୋକମାନଙ୍କୁ ପସନ୍ଦ କରୁଥିଲେ । ସେ ଥରେ କୌଣସି ଏକ ଆଦିବାସୀ ଅଞ୍ଚଳ ଗସ୍ତରେ ଯାଇଥିଲେ । ଗାଡ଼ିରେ ଗଲାବେଳେ ଦେଖିଲେ ନଇଁ ପଡ଼ିଥିବା ଜଣେ ଅଧିବାସୀ ବୁଢ଼ୀ କାଦୁଅ ବିଲରେ ଧାନ ରୋଉଥିବାର । ସେ ଗାଡ଼ିରୁ ଓହ୍ଲାଇ ତାକୁ ଡ଼ାକିଲେ । ଜଣେ ଡ଼େଙ୍ଗା ଚଉଡ଼ା ଧୋବଧାବଳିଆ ଲୋକଟିଏ ଡ଼ାକୁଥିବାରୁ ବୁଢ଼ୀଟି କାମଛାଡ଼ି ଆସିଲା । ସେ ତାକୁ ତା'ର ଦିନର ମଜୁରି ବିଷୟରେ ପଚାରିଲେ ଓ ସେହି ମଜୁରିରେ ତା'ର ଗୁଜରାଣ ମେଣ୍ଟୁଛି କି ନାହିଁ ଜିଜ୍ଞାସା କଲେ । ବୁଢ଼ୀଟି କହିଲା ଦିନକୁ ସାତ ଆଠ ଟଙ୍କା ମଜୁରି କ'ଣ ପେଟ ପୋଷି ପାରିବ ? ଅତି କମ୍‌ରେ ୨୫ ଟଙ୍କା ମଜୁରି ମିଳିଲେ ଚଳିହେବ । ସେହି ଗସ୍ତରୁ ଫେରିବା ପରେ ବିଜୁବାବୁ ଏକାଥରକେ ରାଜ୍ୟର ସର୍ବନିମ୍ନ ମଜୁରି ୨୫ଟଙ୍କାକୁ ବଢ଼ାଇ ଦେଇଥିଲେ ।

'ଗାଁ କୁ କାମ, ମାଆ କୁ ସମ୍ମାନ', ସ୍ଲୋଗାନର ପ୍ରଣେତା ହେଲେ ବିଜୁ ପଟ୍ଟନାୟକ । ଏଇ ଗୋଟିଏ ସ୍ଲୋଗାନରୁ ହିଁ ମହିଳାମାନଙ୍କ ପ୍ରତି ବିଜୁବାବୁ କି ପ୍ରକାର ଆଭିମୁଖ୍ୟ ପୋଷଣ କରୁଥିଲେ ତାହା ସ୍ପଷ୍ଟ ହୋଇଯାଏ । ମହିଳାମାନଙ୍କୁ ସେ ମାଆର ଆସନରେ ବସାଇଥିଲେ । ମହିଳାମାନଙ୍କର ଉନ୍ନତି ହେଲା ଯାଏ, ସେମାନଙ୍କର ସାମାଜିକ, ଆର୍ଥିକ ଓ ରାଜନୈତିକ ପ୍ରତିଷ୍ଠାର ପୁନଃ ସଂସ୍ଥାପନ ନହେଲା ଯାଏ ସାରା ସମାଜର ଉନ୍ନତି ଓ ପ୍ରଗତି ଅସମ୍ଭବ ବୋଲି ସେ ବୁଝିଥିଲେ । ସେ ବୁଝିଥିଲେ ଯେ ମହିଳାମାନେ ହେଉଛନ୍ତି ଭବିଷ୍ୟତର ଦିଗବାରେଣୀ ଖୁଣ୍ଟ । ମାଆମାନେ ହେଉଛନ୍ତି ପିଲାମାନଙ୍କର ପ୍ରଥମ ଶିକ୍ଷୟିତ୍ରୀ, ସେଇମାନଙ୍କ ମାଧ୍ୟମରେ ହିଁ ଗୋଟିଏ ସମୃଦ୍ଧ, ସ୍ୱାଭିମାନୀ ଓ ସାହସୀ ଜାତି ଗଢ଼ିବା ସମ୍ଭବପର ହେବ । ଏହି ଉଦ୍ଦେଶ୍ୟରେ ସେ କାଳକାଳର ଗୃହବନ୍ଦୀ ମହିଳାମାନଙ୍କୁ ସବୁଦିନ ପାଇଁ ସମାଜିକ ଦାସତ୍ୱରୁ ମୁକ୍ତ କରି ରାଜନୈତିକ ସ୍ୱାଧୀନତା ପ୍ରଦାନ କରିଥିଲେ । ୧୯୯୦ ଦଶକରେ ସେ ଯେଉଁ ସ୍ୱତନ୍ତ୍ର ପଞ୍ଚାୟତ ଆଇନ୍ ପ୍ରଣୟନ କରିଥିଲେ ସେଥିରେ ମହିଳାମାନଙ୍କ ପାଇଁ ପଞ୍ଚାୟତର ଏକ ତୃତୀୟାଂଶ ପଦବୀ ସଂରକ୍ଷଣ କରିଥିଲେ । ଏହା ଥିଲା ସର୍ବ ଭାରତୀୟ ସ୍ତରରେ ଏକ ବୈପ୍ଳବିକ ପଦକ୍ଷେପ ।

ଏହାର ପ୍ରାୟ ତିନି ବର୍ଷପରେ ଭାରତ ସରକାର ଏପରି ଏକ ଆଇନ୍ ପ୍ରଣୟନ କରିଥିଲେ ଓ ଓଡ଼ିଶାର ଆଇନ୍ ଅନୁସରଣରେ ସର୍ବଭାରତୀୟ ସ୍ତରରେ ପଞ୍ଚାୟତ ପଦପଦବୀ କ୍ଷେତ୍ରରେ ମହିଳାମାନଙ୍କ ପାଇଁ ଏକତୃତୀୟାଂଶ ସଂରକ୍ଷଣ ବ୍ୟବସ୍ଥା ଲାଗୁ ହୋଇଥିଲା। ସେହି କ୍ରମରେ ଆଜି ସେହି ମହାନାୟକଙ୍କ ପାଇଁ ଓଡ଼ିଶାର ପଞ୍ଚାୟତ ପ୍ରତିନିଧିଙ୍କ ମଧ୍ୟରେ ମହିଳାମାନଙ୍କର ରାଜନୀତିକ ପ୍ରତିନିଧି ଭାବରେ ରାଜ୍ୟର ସାମାଜିକ, ଅର୍ଥନୀତିକ ଓ ରାଜନୀତିକ ପରିବର୍ତ୍ତନର ସୂତ୍ରଧର ହୋଇପାରିଛନ୍ତି। ତାଙ୍କର ସୁଯୋଗ୍ୟ ସନ୍ତାନ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ମହିଳା ସଶକ୍ତିକରଣ ପାଇଁ ମିଶନ ଶକ୍ତି ମାଧ୍ୟମରେ ସ୍ୱୟଂ ସହାୟକ ଗୋଷ୍ଠୀ ଗଠନ କରି ମହିଳାମାନଙ୍କୁ ଉପାର୍ଜନକ୍ଷମ କରିପାରିଛନ୍ତି ତଥା ସେମାନଙ୍କ ରାଜନୈତିକ ଶକ୍ତିବୃଦ୍ଧି ପାଇଁ ପଞ୍ଚାୟତିରାଜ ବ୍ୟବସ୍ଥାରେ ମହିଳାଙ୍କ ପାଇଁ ୫୦% ସଂରକ୍ଷଣ ବ୍ୟବସ୍ଥା କରିଛନ୍ତି।

ବିଜୁବାବୁ ଦ୍ୱିତୀୟବାର ମୁଖ୍ୟମନ୍ତ୍ରୀ ଥିବା ସମୟରେ ଦୁଇଜଣ ଆଦିବାସୀ ମହିଳା ସୁମନୀ ଝୋଡ଼ିଆ ଓ ଅନ୍ଧାରୀ ମଦ ବିରୋଧରେ ଆନ୍ଦୋଳନ ଆରମ୍ଭ କରିଥିଲେ। ଏହି ଖବର ତାଙ୍କର କର୍ଣ୍ଣପାତ ହେବାକ୍ଷଣି ସେ ଦୁଇଜଣଙ୍କୁ ଭୁବନେଶ୍ୱରକୁ ଡ଼କାଇଲେ ଓ ସେମାନେ ଆସିବା ପାଇଁ ସବୁ ବନ୍ଦୋବସ୍ତ ମଧ୍ୟ କରିଥିଲେ। ସୁମନୀ ଓ ଅନ୍ଧାରୀଙ୍କ ନେତୃତ୍ୱରେ ପ୍ରାୟ ୧୭ ଜଣ ମହିଳା ଆସି ବିଜୁବାବୁଙ୍କୁ ତାଙ୍କ ସଚିବାଳୟସ୍ଥ ଅଫିସ୍‌ରେ ଭେଟିଲେ। ବିଜୁବାବୁ ସେମାନଙ୍କର ଅଭାବ ଅସୁବିଧା, ଆନ୍ଦୋଳନ ଆଦି ସଂପର୍କରେ ବିଭିନ୍ନ ପ୍ରଶ୍ନ ପଚାରି ବୁଝିଥିଲେ। ସବୁ ଶୁଣିଲା ପରେ ସେ ସେହି ଆଦିବାସୀ ମହିଳାମାନଙ୍କୁ କହିଲେ ତମେମାନେ ଯାଇ ମଦଭାଟି ଭାଙ୍ଗ, ମଦ ତିଆରି ପାଇଁ ସମସ୍ତ ସାମଗ୍ରୀ ନଷ୍ଟ କରିଦିଅ । ଏହା ଶୁଣି ସେହି ଆଦିବାସୀ ମହିଳାମାନେ ପୋଲିସ୍ ଓ ଗୁଣ୍ଡାଙ୍କ କଥା କହିବାରୁ ସେ ସଚିବମାନଙ୍କୁ ଡ଼ାକି ସେହି ମହିଳାମାନେ ତାଙ୍କର ପରାମର୍ଶଦାତା ହେଲେ ବୋଲି ନିର୍ଦ୍ଦେଶ ଦେଲେ। ସେମାନଙ୍କୁ ପୋଲିସ୍ କ୍ଷମତା ସହିତ ଆବଶ୍ୟକ ପରିଚୟପତ୍ରର ମଧ୍ୟ ବ୍ୟବସ୍ଥା କରିଥିଲେ । ଏହାପରଠାରୁ ଆଦିବାସୀ ଅଞ୍ଚଳରେ ମଦବିରୋଧୀ ଆନ୍ଦୋଳନ ଅଧିକ ଦୃଢ଼ ଓ ବ୍ୟାପକ ହେବାରେ ଲାଗିଲା ।

ଓଡ଼ିଶା ଶାସନରୁ ଦୁର୍ନୀତି ଓ ଭ୍ରଷ୍ଟାଚାର ଲୋପ କରି ଏକ ଦକ୍ଷ ଓ ସ୍ୱଚ୍ଛ ସରକାର ପ୍ରତିଷ୍ଠା କରିବା ଥିଲା ତାଙ୍କର ରାଜନୈତିକ ଚିନ୍ତାଧାରା। ଓଡ଼ିଶା ଓ ଓଡ଼ିଆମାନଙ୍କୁ ସେ ଏମିତି ନିବିଡ଼ ଭାବରେ ଭଲ ପାଉଥିଲେ ଯେ ତାଙ୍କ ପରଲୋକରେ ସମଗ୍ର ଓଡ଼ିଶା ସ୍ତବ୍ଧ ହୋଇଯାଇଥିଲା। ସେ କୋଟିପତିରୁ ସାଧାରଣ ମଣିଷ ପାଲଟି ଯାଇଥିଲେ ସିନା, ତାଙ୍କର ଅସାଧାରଣ ବ୍ୟକ୍ତିତ୍ୱ, ତ୍ୟାଗ, ନିଷ୍ଠା ଏବଂ ଜାତି ଗଠନର ସ୍ୱପ୍ନ ତାଙ୍କୁ ଅସାଧାରଣ ମହାନ ମଣିଷର ସମ୍ମାନ ଆଣି ଦେଇଥିଲା। ମୋ ଭଳି ଅନେକଙ୍କ ପାଇଁ ସେ ଜଣେ ଆଦର୍ଶ ପୁରୁଷ ପାଲଟି ଯାଇଥିଲେ। ମୋର ସୌଭାଗ୍ୟ ସ୍ୱଳ୍ପକାଳ ପାଇଁ ତାଙ୍କୁ ନିକଟରୁ ଦେଖିବାର ସୁଯୋଗ ପାଇଥିଲି। ଓଡ଼ିଶା ଓ ଓଡ଼ିଆମାନଙ୍କ ପାଇଁ ତାଙ୍କର ଆବେଗକୁ ଅନୁଭବ କରିପାରୁଥିଲି। ଅବଲୀଳାକ୍ରମେ ମୁଁ ତାଙ୍କର ଜଣେ ଅନୁଗୃହୀତ ଅନୁଗତ ଭାବେ ଦୁନିଆ ଦାଣ୍ଡରେ ନିଜ ପାଇଁ ପରିଚୟ ସୃଷ୍ଟି କଲି। ଆଧୁନିକ ଓଡ଼ିଆ ଜାତିର ପଥପ୍ରଦର୍ଶକ ଏହି ମହାନ୍ ନାୟକ ଆଜି ଆମ ଗହଣରେ ନାହାନ୍ତି। କିନ୍ତୁ ତାଙ୍କରି ନୀତି ଓ ଆଦର୍ଶର ଅନୁସରଣ କରି ତାଙ୍କରି ସ୍ୱପ୍ନ ଓ ସଂକଳ୍ପକୁ ସାକାର କରି ଏକ ସ୍ୱାଭିମାନୀ ଓ ସମୃଦ୍ଧ ଓଡ଼ିଶା ଗଠନ କରିବା ପାଇଁ ତାଙ୍କର ସୁପୁତ୍ର ନବୀନ ପଟ୍ଟନାୟକ ସଂକଳ୍ପବଦ୍ଧ। ଜୀବିତାବସ୍ଥାରେ ତାଙ୍କର ଯଶଖ୍ୟାତି ଯେତିକି ବିଦିତ ଥିଲା ମୃତ୍ୟୁବେଳକୁ ତାହା ସହସ୍ରଗୁଣ ବିଦିତ ହୋଇଗଲା। ଯଥାର୍ଥରେ କହିବାକୁ ଗଲେ ସେ ଥିଲେ ଝଡ଼ର ଇଗଲ। ଓଡ଼ିଆଙ୍କ ପାଇଁ ସେ ପାଲଟି ଯାଇଥିଲେ ପ୍ରବାଦ ପୁରୁଷ।

କ୍ରିଷ୍ଟା ଟାୱାର, ଭୁବନେଶ୍ୱର



# ଶ୍ରୀମନ୍ଦିରରେ ଦୋଳ ଉତ୍ସବ

ଡକ୍ଟର ଶ୍ରୀହରି ପଣ୍ଡା

ଦୋଳଯାତ୍ରା ସାରା ଭାରତବର୍ଷରେ ଆନନ୍ଦ ଓ ଉତ୍ସାହର ସହିତ ମହା ଆଡ଼ମ୍ବରରେ ପାଳନ କରାଯାଇଥାଏ । ଏକଦା କୃଷ୍ଣ ମାତା ଯଶୋଦାଙ୍କ ପାଖରେ ଅଭିଯୋଗ କରିଥିଲେ ସେ କାହିଁକି କଳା ଓ ରାଧା କାହିଁକି ଗୋରା ? ମାତା ଯଶୋଦା କୃଷ୍ଣଙ୍କ ଅଭିଯୋଗରେ କହିଥିଲେ ରାଧାଙ୍କୁ କଳାବୋଳି କଳା କରିଦେବାକୁ । କୃଷ୍ଣ ମାଆଙ୍କ କଥାରେ ରାଧାଙ୍କୁ ଫାଲ୍‌ଗୁନ ପୂର୍ଣ୍ଣମୀରେ ରଙ୍ଗ ବୋଳିଥିବାରୁ ତାହା ହୋଲି ଉତ୍ସବ ଭାବରେ ବିଦିତ ହେଲା । ଏହି ଉତ୍ସବ ଗୋପପୁରରେ ମହା ଆଡମ୍ବରରେ ପାଳିତ ହୋଇ ଆସୁଛି । ସେହିଦିନର ସେହି ସ୍ମୃତିକୁ ମନେ ପକାଇବା ପାଇଁ ଦୀର୍ଘ ଚାଳିଶ ଦିନବ୍ୟାପୀ ଉତ୍ସବ ଗୋପପୁରରେ ପାଳିତ ହୋଇଥାଏ । ଭିନ୍ନ ଏକକଥା ଅନୁସାରେ ହିରଣ୍ୟକଶ୍ୟପୁ ପ୍ରହ୍ଲାଦକୁ ମାରିବା ପାଇଁ ହୋଲିକାଙ୍କୁ ନିର୍ଦ୍ଦେଶ ଦେଇଥିଲେ । ଅଗ୍ନିରେ ନଜଳିବାର ବର ପାଇଥିବା ହୋଲିକା ପ୍ରହ୍ଲାଦକୁ ନେଇ ଅଗ୍ନିରେ ପ୍ରବେଶ କରିବାରୁ ବର ପାଇଥିଲେ ମଧ୍ୟ ଅନ୍ୟାୟ କର୍ମ କରୁଥିବାରୁ ହୋଲିକା ନିଆଁରେ ପୋଡ଼ି ଯାଇଥିଲେ, ମାତ୍ର ଧର୍ମ ସହାୟତା ବଳରେ ପ୍ରହ୍ଲାଦ ରକ୍ଷା ପାଇ ଯାଇଥିଲେ । ସେହି ସ୍ମୃତିକୁ ମନେ ପକାଇବା ପାଇଁ ଆଜି ବି ଅଗ୍ନି ପ୍ରଜ୍ଜ୍ୱଳିତ ପୂର୍ବକ ଖୁସିର ନିଦର୍ଶନ ରଙ୍ଗ ଫୋପଡ଼ା ଯାଇଥାଏ । ପୁଣି ଏକ କିମ୍ବଦନ୍ତୀ ଅନୁସାରେ ଶିବଙ୍କ କାମଦେବ ଦହନ ପ୍ରସଙ୍ଗ ମଧ୍ୟ ହୋଲିକୁ ମନେ ପକାଇ ଦେଇଥାଏ । ହୋଲିକୁ ନେଇ ବିଭିନ୍ନ କଥା ପ୍ରଚଳିତ ଥିଲେ ମଧ୍ୟ ପୂର୍ଣ୍ଣମୀରେ ରାଧାକୃଷ୍ଣଙ୍କ ହୋଲିଖେଳ ମୁଖ୍ୟ । ଏହିଦିନ କୃଷ୍ଣ ଶୁଖିଲା ପଳାଶ ଫୁଲରେ ହୋଲି ଖେଳିଥିବାରୁ ଆଜି ମଧ୍ୟ ପଳାଶ ଫୁଲରେ ସଜ୍ଜିତ କରାଯାଇ ଦୋଳଗୋବିନ୍ଦଙ୍କୁ ଦୋଳି ଖେଳା ଯାଉଥିବା ଦେଖାଯାଏ । ଏହି ଉତ୍ସବରେ ରାଧାଗୋବିନ୍ଦ ବିଗ୍ରହଙ୍କର ରାସଯାତ୍ରା ଅନୁଷ୍ଠିତ ହୁଏ । ଏହି ଉତ୍ସବକୁ ଅବିର ବା ଫଗୁଖେଳର ଯାତ୍ରା ବୋଲି ମଧ୍ୟ କୁହାଯାଏ । ବିଭିନ୍ନ ସ୍ଥାନରେ ଏହି ଯାତ୍ରାର ଅବଧି ଦୋଳପୂର୍ଣ୍ଣିମା ତିଥିକୁ କେନ୍ଦ୍ରକରି ଏପରିକି ମାସେ ପର୍ଯ୍ୟନ୍ତ ପାଳିତ ହେଉଥିବାର ଦେଖାଯାଏ । ଏହି ଦୋଳ ଉତ୍ସବ ଶ୍ରୀମନ୍ଦିରରେ ମଧ୍ୟ ଅନୁଷ୍ଠିତ ହୋଇଥାଏ । ଶ୍ରୀମନ୍ଦିରରେ ଅନୁଷ୍ଠିତ ହେଉଥିବା ଶ୍ରୀଜଗନ୍ନାଥଙ୍କର ଏହି ଦୋଳ ଉତ୍ସବର ବିଭିନ୍ନ ବିଧିବିଧାନଗୁଡ଼ିକ ଉପରେ ଆସନ୍ତୁ ସାମାନ୍ୟ ଦୃଷ୍ଟି ପକାଇବା ।

ସ୍କନ୍ଦ ପୁରାଣ ଅନୁସାରେ ମହାପ୍ରଭୁଙ୍କର ଦ୍ୱାଦଶ ଯାତ୍ରା ମଧ୍ୟରୁ ଏହିଯାତ୍ରା ଅନ୍ୟତମ । ଶ୍ରୀମନ୍ଦିରରେ ଅନୁଷ୍ଠିତ ହେଉଥିବା ଯାତ୍ରାମାନଙ୍କ ମଧ୍ୟରୁ ସର୍ବାଧିକ ଯାତ୍ରା ବିଷ୍ଣୁକୈନ୍ଦ୍ରିକ । ବିଷ୍ଣୁକୈନ୍ଦ୍ରିକ ଯାତ୍ରା ମଧ୍ୟରୁ ରାମକୈନ୍ଦ୍ରିକ, କୃଷ୍ଣକୈନ୍ଦ୍ରିକ ଏବଂ ନୃସିଂହକୈନ୍ଦ୍ରିକ ଯାତ୍ରା ପ୍ରଧାନ । ବିଷ୍ଣୁ କୈନ୍ଦ୍ରିକ ଯାତ୍ରା ମଧ୍ୟରୁ ମହା ବିଷୁବ ସଂକ୍ରାନ୍ତି(ହନୁମାନ ଜନ୍ମ), ଶ୍ରୀରାମ ନବମୀ, ନୃସିଂହ ଜନ୍ମ, ରୁକ୍ମିଣୀ ପରିଣୟଏକାଦଶୀ, ଚମ୍ପକ ଏକାଦଶୀ, ବଳଭଦ୍ର ଜନ୍ମ, ଝୁଲଣ, ଜନ୍ମାଷ୍ଟମୀ, ନନ୍ଦୋତ୍ସବ, ବାମନ ଜନ୍ମ, ଭାଗବତ ଜନ୍ମ, ମହା କାର୍ତ୍ତିକ ବ୍ରତ, ରାଧାପାଦ ଦର୍ଶନ ଅନ୍ୟତମ । ଶ୍ରୀକୃଷ୍ଣଙ୍କ ଜନ୍ମ ଉତ୍ସବ ସହିତ କେତେକ ଯାତ୍ରା ଶ୍ରୀମନ୍ଦିରରେ ପାଳିତ ହୁଏ । ସେଗୁଡ଼ିକ ମଧ୍ୟରୁ ବସ୍ତ୍ରହରଣ, ଦାବାଗ୍ନି ଲୀଳା, ନିକୁଞ୍ଜ ଲୀଳା, ଅନ୍ଧ ଲୀଳା, କୃଷ୍ଣ ଲୀଳା, ଲବଣୀ ଖେଳ, ମଥୁରା ହାଟଲୀଳା ଆଦି ପାଳନ କରାଯାଏ । ଜଗନ୍ନାଥ ବଲ୍ଲଭ ଖଳାରେ ଅକ୍ରୁର ପ୍ରସ୍ତାବ, ରଜକ ପ୍ରସ୍ତାବ, ଧନୁଘର ପ୍ରସ୍ତାବ, ମଲ୍ଲଯୁଦ୍ଧ, କୁବୁଜା ଉଦ୍ଧାର, ମଥୁରା ହାଟଜୁର, କୁବଳୟା ବଧପ୍ରସ୍ତାବ, କଂସ ବଧ ହୁଏ ଓ ଉଗ୍ରସେନକୁ ଗାଦି ଦିଆଯାଏ ।

ଫାଲ୍‌ଗୁନ ଦଶମୀଠାରୁ ଦୋଳ ପୂର୍ଣ୍ଣିମା ପର୍ଯ୍ୟନ୍ତ ମହାପ୍ରଭୁ ବାହାର ବୁଲାରେ ଯାଆନ୍ତି । ଏହି ସମୟରେ ମହାପ୍ରଭୁ ବାହାରେ ବୁଲି ଭକ୍ତମାନଙ୍କଠାରୁ ପ୍ରୀତି ସହକାରେ ଫଙ୍କି ଭୋଜନ କରନ୍ତି । ଭଗବାନ ଭକ୍ତ ସହିତ ମିଳିତ ହୋଇ ମହାନନ୍ଦରେ ଭକ୍ତର ପୂଜା ଗ୍ରହଣ କରନ୍ତି ବୋଲି ଫନ୍ତି ଶବ୍ଦର ବ୍ୟବହାର ହୋଇଛି । ବାହାରେ ବୁଲା ସରିଲା ପରେ ଦୋଳପୂର୍ଣ୍ଣିମା ଦିନ ମହାପ୍ରଭୁ ଦୋଳ ବେଦୀରେ ଦୋଳି ଖେଳନ୍ତି । ଦୋଳ ବେଦୀରେ ଦୋଳି ଖେଳୁଥିବାରୁ ଏହି ପୂର୍ଣ୍ଣମୀକୁ ଦୋଳପୂର୍ଣ୍ଣିମା କୁହାଯାଏ । ଶ୍ରୀଜୀଉମାନଙ୍କର ଦୋଳଯାତ୍ରା ସାତଦିନ ଧରି ଅନୁଷ୍ଠିତ ହୁଏ । ପୂର୍ଣ୍ଣିମାର ପାଞ୍ଚଦିନ ପୂର୍ବରୁ ଏହି ଯାତ୍ରା ଆରମ୍ଭ ହୋଇ ପୂର୍ଣ୍ଣିମା ପରଦିନ ଅର୍ଥାତ୍ ପ୍ରତିପଦା ତିଥିରେ ସମାପ୍ତ ହୋଇଥାଏ । ଦଶମୀଠାରୁ ଚତୁର୍ଦ୍ଦଶୀ ଭିତରେ ତିଥି କ୍ଷୟ ଥିଲେ ତାହା ପାଞ୍ଚଦିନ ପରିବର୍ତ୍ତେ ଚାରିଦିନ ନହୋଇ ଫାଲ୍‌ଗୁନ ଶୁକ୍ଳ ନବମୀଠାରୁ ପାଳନ କରାଯାଏ ।

ସର୍ବତ୍ର ରାଧାକୃଷ୍ଣଙ୍କର ଦୋଳଯାତ୍ରାର ପ୍ରସିଦ୍ଧି ଥିଲେ ମଧ୍ୟ ଶ୍ରୀକ୍ଷେତ୍ରରେ ଶ୍ରୀଦେବୀ ଓ ଭୂଦେବୀଙ୍କ ସହ ଦୋଳଗୋବିନ୍ଦଙ୍କର ଦୋଳଯାତ୍ରା ପରେ ଏକତ୍ରାବସ୍ଥାନ ଶ୍ରୀକ୍ଷେତ୍ରର ଓ ଶ୍ରୀମନ୍ଦିରର ମାହାତ୍ମ୍ୟ ପୃଥକ ଭାବରେ ଚିହ୍ନାଇ ଦିଏ । ଅତୀତରେ ଦୋଳମଣ୍ଡପ ସାହି ଜହ୍ନିମୁଣ୍ଡିଆରେ ଦୋଳବେଦୀ ଉପରେ ମହାପ୍ରଭୁ ଆସି ଦୋଳି ଖେଳୁଥିଲେ, ଏବେ ଦୋଳ ବେଦୀ ଶ୍ରୀମନ୍ଦିରର ଉତ୍ତର-ପୂର୍ବ ଦିଗରେ ଅବସ୍ଥିତ । ଶୁକ୍ଳ ଦଶମୀଠାରୁ ତ୍ରୟୋଦଶୀ ପର୍ଯ୍ୟନ୍ତ ମଧ୍ୟାହ୍ନ ଧୂପ ପରେ ଚାଚେରୀ ବେଶ, ଚାଚେରୀ ଭୋଗ, ଫଗୁଲାଗି, ଜଗନ୍ନାଥ ବଲ୍ଲଭ ପର୍ଯ୍ୟନ୍ତ ଯାତ୍ରା ଓ ବନ୍ଦାପନାଦିକୁ ଫଗୁଖେଳ ବିଧି କୁହାଯାଏ । ଶୁକ୍ଳ ଚତୁର୍ଦ୍ଦଶୀ ଦିନ ଚାଚେରୀ ବେଶ, ଭୋଗ, ଫଗୁଲାଗି, ଅଗ୍ନିଉତ୍ସବ ଗୃହକୁ ଯାତ୍ରା, ଗୃହଦାହ ଭୋଗ ଏବଂ ବନ୍ଦାପନାଦିକୁ ଅଗ୍ନିଉତ୍ସବ ବିଧି କୁହାଯାଏ । ପୂର୍ଣ୍ଣିମା ଦିନ ସକାଳେ ଖଇକୋରା ଭୋଗ ପରେ ଲାହିକଟା ମଣ୍ଡପକୁ ଯାତ୍ରା ଓ ତତ୍ରତ୍ୟ ବିଧି, ଦୋଳ ମଣ୍ଡପ ଯାତ୍ରା ପ୍ରଦକ୍ଷିଣ, ତିନି ଧୂପର ନୈବେଦ୍ୟ, ଆଳତି ବନ୍ଦାପନା, ଦୋଳି ଓ ଫଗୁଖେଳ ସହ ମନ୍ଦିରକୁ ବିଧି ପୂର୍ବକ ପ୍ରତ୍ୟାଗମନ ଏବଂ ଶ୍ରୀମନ୍ଦିରସ୍ଥ ଶ୍ରୀଜୀଉଙ୍କର ସମସ୍ତ ପର୍ବଗତ ବିଧି ଓ ରାଜବେଶାଦି ବିଧିକୁ ଦୋଳସବ ବିଧି କୁହାଯାଏ ଏବଂ ସର୍ବଶେଷ ପ୍ରତିପଦା ଦିନ ମଧ୍ୟାହ୍ନ ଧୂପ ପରେ ନରେନ୍ଦ୍ର ପୁଷ୍କରିଣୀ ନିକଟକୁ ଯାତ୍ରା, ଚନ୍ଦନ ଓ ହରିଦ୍ରା ଜଳ ସେବକ ଓ ବନ୍ଦାପନାଦି ବିଧିକୁ ହୋଲି ଉତ୍ସବ ବିଧି କୁହାଯାଏ । ଏଥି ମଧ୍ୟରୁ ଦୋଳସବ ବିଧି ଦୋଳ ପୂର୍ଣ୍ଣିମାରେ ସମ୍ପାଦିତ ହେଉ ଥିବାରୁ ଏହି ପୂର୍ଣ୍ଣିମା ବିଧିର ଶାସ୍ତ୍ରୀୟ ବ୍ୟବସ୍ଥାନୁସାରେ ପୂର୍ବୋକ୍ତ ପାଞ୍ଚଦିନ ଓ ଉପରୋକ୍ତ ଦିବସଟି ନିର୍ଣ୍ଣିତ ହୋଇଛି ।

ଅନୁମାନ କରାଯାଏ ଯେ, ଦୋଳ ଉତ୍ସବ ଶ୍ରୀଚୈତନ୍ୟଙ୍କ ସମୟରେ ଆରମ୍ଭ କରାଯାଇଥିଲା । ଶ୍ରୀଚୈତନ୍ୟଙ୍କ ଖ୍ରୀ.୧୫୦୯ରେ ଓଡ଼ିଶା ଆଗମନ ପରେ ରାଧାକୃଷ୍ଣ ସଂକୀର୍ତ୍ତନର ଧାରା ପ୍ରବାହିତ ହୋଇଥିଲା । ଦୋଳଯାତ୍ରା ସେହି ସମୟରୁ ସୃଷ୍ଟି ହୋଇଥିବାର ଅନୁମାନ ହୁଏ । ମହାପ୍ରଭୁଙ୍କର ଚଳନ୍ତି ପ୍ରତିମାଙ୍କର ବିଭିନ୍ନ ପର୍ବର ବିଭିନ୍ନ ନାମ ରହିଛି । ଚନ୍ଦନ ଯାତ୍ରାରେ ମଦନମୋହନ, ଦୁର୍ଗାପୂଜାରେ ଦୁର୍ଗାମାଧବ, ଦୋଳରେ ଦୋଳଗୋବିନ୍ଦ ଆଦି ନାମ ରହିଛି ।

ଶ୍ରୀଜୀଉଙ୍କର ଦୋଳୋତ୍ସବରେ ରାଜବେଶ ଓ ପର୍ବ ଯାତ୍ରାବିଧି ସର୍ବଦା ଅନ୍ୟତ୍ର ଦୁର୍ଲଭ ଅଟେ ।

ଗୌଡ଼ଗାଁ, କପ୍ତିପଦା, ମୟୂରଭଞ୍ଜ



# ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କର ଭୂମିକା

ହୃଦାନନ୍ଦ ବେହେରା

୧୫୬୮ ଖ୍ରୀଷ୍ଟାବ୍ଦରେ ଭୋଇ ବଂଶର ଶାସକ ମୁକୁନ୍ଦଦେବଙ୍କର ପତନ ପରେ ଓଡ଼ିଶାରେ ଆଫ୍‌ଗାନ, ମୋଗଲ, ମରହଟ୍ଟା ଓ ଇଂରେଜମାନେ କ୍ରମାଗତ ଭାବେ ଶାସନ କରି ଆସୁଥିଲେ । ସେହି ସମୟରୁ ଓଡ଼ିଶା ଓ ଓଡ଼ିଆ ଭାଷାର ପତନ ଆରମ୍ଭ ହୋଇଯାଇଥିଲା କହିଲେ ଚଳେ । ଓଡ଼ିଆ ଭାଷାକୁ ସ୍ୱତନ୍ତ୍ର ଏକ ଭାଷା ବୋଲି ମାନ୍ୟତା ଦେବା ପାଇଁ ସେତେବେଳୁ ଆରମ୍ଭ ହୋଇଯାଇଥିଲା ଜନଜାଗରଣ । ବଙ୍ଗଳାର ପଣ୍ଡିତ ବା ଶିକ୍ଷାବିତ୍‌ମାନେ ଓଡ଼ିଶା ଏକ ସ୍ୱତନ୍ତ୍ର ରାଜ୍ୟ ଓ ଓଡ଼ିଆ ଏକ ସ୍ୱତନ୍ତ୍ର ସାଧୁ ଭାଷା ବୋଲି ସହଜରେ ଗ୍ରହଣ କରିପାରୁ ନଥିଲେ ।

୧୭୫୭ରେ ହୋଇଥିବା ପଲାସୀ ଯୁଦ୍ଧରେ ଇଂରେଜମାନଙ୍କ ଦ୍ୱାରା ବଙ୍ଗର ଶାସକ ସିରାଜଦ୍ଦୌଲା ପରାସ୍ତ ହୋଇଥିଲେ ଏବଂ ସେବେଠାରୁ ବଙ୍ଗଳାର ଶାସନ ଇଂରେଜମାନଙ୍କ ହାତକୁ ଯାଇଥିଲା । ସେହି ସମୟରେ ଓଡ଼ିଶାରେ ମରହଟ୍ଟାମାନେ ଶାସନ କରୁଥିଲେ । ଇଂରେଜମାନେ କଲିକତାରୁ ମାନ୍ଦ୍ରାଜ ଯିବା ପାଇଁ ଓଡ଼ିଶା ହିଁ ଏକମାତ୍ର ବାଟ ଥିଲା । ତେଣୁ ସେମାନେ ଓଡ଼ିଶାକୁ ହାତମୁଠାକୁ ନେବାକୁ ଚାହୁଁଥିଲେ । ଇଂରେଜମାନେ ଗୁପ୍ତ ଭାବରେ ଅନୁଧ୍ୟାନ କରି ଦେଖିଲେ ଯେ, ଓଡ଼ିଶାରେ ମରହଟ୍ଟାମାନଙ୍କ ଶାସନରେ ଓଡ଼ିଶାବାସୀ ବୀତସ୍ପୃହ ହୋଇପଡିଛନ୍ତି । ତେଣୁ ଓଡ଼ିଶାକୁ ହାତମୁଠାକୁ ନେବା ପାଇଁ ଇଂରେଜମାନେ ପ୍ରଥମେ ଗଂଜାମ ଉପକୂଳକୁ ନିଜ ଦଖଲକୁ ନେଇଯାଇଥିଲେ ଓ ପରେ ପୁରୀକୁ ମଧ୍ୟ ନିଜ ଅକ୍ତିଆରକୁ ନେଇଯାଇଥିଲେ । ପୁରୀକୁ ଯିବାପାଇଁ ଇଂରେଜମାନଙ୍କୁ କେହି ବାଧା ମଧ୍ୟ ଦେଇ ନଥଲେ । ସେତେବେଳେ ଶାସନ କେନ୍ଦ୍ର କହିଲେ କଟକକୁ ବୁଝାଉଥିଲା ଏବଂ ମରହଟ୍ଟା ଶାସକମାନେ ଲାଲ୍‌ବାଗରେ ରହି ଶାସନ କାର୍ଯ୍ୟ ତୁଲାଉଥିଲେ । ଇଂରେଜମାନଙ୍କୁ ଲାଲ୍‌ବାଗ ଓ ବାରବାଟୀ ଦୁର୍ଗକୁ ଜୟ କରିବା ପାଇଁ ବିଶେଷ କିଛି ପରିଶ୍ରମ କରିବାକୁ ପଡ଼ିନଥିଲା । ମରହଟ୍ଟାମାନେ ଭୟଭୀତ ହୋଇ ଲାଲ୍‌ବାଗ ଓ ବାରବାଟୀ ଦୁର୍ଗକୁ ଛାଡ଼ି ପଳାୟନ କରିଥିଲେ ।

ଗଂଜାମ, ପୁରୀ ଓ କଟକ ପରେ ଇଂରେଜମାନେ ଚାହିଁଲେ ବାଲେଶ୍ୱର ନିଜ ଦଖଲକୁ ଆସିଗଲେ ମାନ୍ଦ୍ରାଜକୁ ସ୍ଥଳପଥରେ ଯିବାକୁ ସହଜ ହେବା ସଙ୍ଗେ ସଙ୍ଗେ ବାଣିଜ୍ୟ ବ୍ୟବସାୟ ସେମାନଙ୍କ ପାଇଁ ସୁବିଧାଜନକ ହେବ । ବାଲେଶ୍ୱରକୁ ଦଖଲ କରିବା ପାଇଁ ଇଂରେଜମାନେ ସମୁଦ୍ର ପଥକୁ ବାଛି ଥିଲେ । ଏହି ସମୟରେ ଇଂରେଜ ବାହିନୀର ଦାୟିତ୍ୱ ନେଇଥିଲେ କ୍ୟାପ୍‌ଟେନ ମର୍ଟାନ୍ । ବାଲେଶ୍ୱର ଅଞ୍ଚଳର ଜଣେ ଜମିଦାର ରାଜେନ୍ଦ୍ର ମହାପାତ୍ର ଇଂରେଜମାନଙ୍କୁ ବହୁ ସାହାଯ୍ୟ କରିଥିଲେ । ଏହି ଅଞ୍ଚଳରେ ଥିବା ମରହଟ୍ଟା ବାହିନୀ ଇଂରେଜମାନଙ୍କୁ ବାଧା ଦେଇ ପରାସ୍ତ ହୋଇଥିଲେ । ବାଲେଶ୍ୱରର ମରହଟ୍ଟା ଦୁର୍ଗକୁ ଦଖଲକୁ ନେଲାପରେ ଇଂରେଜ ବାହିନୀ ସ୍ଥଳପଥରେ ଓଡ଼ିଶାର ମୁଖ୍ୟସ୍ଥାନ କଟକକୁ ଅଗ୍ରସର ହୋଇଥିଲେ ଏବଂ ପୂର୍ବରୁ କଟକରେ ଥିବା ଇଂରେଜ ସେନାଙ୍କ ସହ ଯୋଗ ଦେଇଥିଲେ । ବିଶେଷ କରି ଓଡ଼ିଶାର ତତ୍କାଳୀନ ମୁଖ୍ୟ ସ୍ଥାନ କୁହାଯାଉଥିବା ଗଂଜାମ, ପୁରୀ, କଟକ ଓ ବାଲେଶ୍ୱରକୁ ଦଖଲ କରିବାକୁ ଇଂରେଜ ସେନାଙ୍କୁ ବହୁତ କମ୍ ସମୟ ଲାଗିଥିଲା ଏବଂ ଇଂରେଜ ସେନା ମଧ୍ୟ ବହୁତ କମ୍ ମୃତ୍ୟୁବରଣ କରିଥିଲେ ।

ଏହିପରି ଭାବେ ବିଦେଶୀମାନଙ୍କ ଦ୍ୱାରା କବଳିତ ଉତ୍କଳ ଜନନୀ ନିଜର ଶ୍ରୀ ହରାଇ ବସିଥିଲା । ଇଂରେଜମାନେ ନିଜର ଶାସନଗତ ସୁବିଧା ନିମନ୍ତେ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ଭାଷାଭିତ୍ତିକ ରାଜ୍ୟର ମାନ୍ୟତା ନ ଦେଇ ମାନ୍ଦ୍ରାଜ, ମଧ୍ୟପ୍ରଦେଶ, ବଙ୍ଗ ଓ ବିହାର ସହିତ ମିଶାଇ ଦେଇଥିଲେ । ପଡ଼ୋଶୀ ରାଜ୍ୟମାନଙ୍କ ସହିତ ଓଡ଼ିଶାର ବିଭିନ୍ନ ଭାଗକୁ ମିଶାଇ ଦିଆଯିବା ଦ୍ୱାରା ଓଡ଼ିଶା ଓ ଓଡ଼ିଆ ଭାଷା ନିଜର ସ୍ଥିତି ହରାଇ ବସିଥିଲା । ଗଂଜାମ ମାନ୍ଦ୍ରାଜ ପ୍ରେସିଡେନ୍ସିରେ ସମ୍ବଲପୁର ମଧ୍ୟପ୍ରଦେଶ ସହିତ, ମେଦିନୀପୁର ଅଞ୍ଚଳ ବଙ୍ଗ ଡିଭିଜନ୍ ସହିତ ଓ ସିଂହଭୂମି ପ୍ରଭୃତି ଅଞ୍ଚଳ ବିହାର ସହିତ ମିଶିଯାଇଥିଲା । ଇଂରେଜମାନେ ଶାସନଗତ ସୁବିଧା ନିମନ୍ତେ ଓଡ଼ିଶାର ବିଭିନ୍ନ ଅଂଶକୁ ଅନ୍ୟାନ୍ୟ ରାଜ୍ୟ ସହିତ ମିଶାଇ ଦେଇଥିଲେ । ଓଡ଼ିଆ ଭାଷାର ସ୍ୱତନ୍ତ୍ରତାକୁ ବଜାୟ ରଖିବା ପାଇଁ ଯେଉଁ ନେତାମାନେ ସ୍ୱର ଉତ୍ତୋଳନ କରୁଥିଲେ ଓ ବ୍ରିଟିଶ୍ ଦରବାରରେ ନିଜର ବଳିଷ୍ଠ ଯୁକ୍ତି ବାଢୁଥିଲେ ସେମାନଙ୍କ ମଧ୍ୟରୁ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଥିଲେ ଅନ୍ୟତମ ।

ଓଡ଼ିଆ ଭାଷାକୁ ଏକ ସ୍ୱତନ୍ତ୍ର ଭାଷାର ମାନ୍ୟତା ଦେବା ନିମନ୍ତେ ୧୮୮୨ ମସିହାରେ କଟକଠାରେ ଉତ୍କଳ ସଭା ନାମକ ଏକ ସଂଗଠନ ଗଠିତ ହୋଇଥିଲା । ଏହି ସଭା ମାଧ୍ୟମରେ ସାରା ଓଡ଼ିଶା, ଗଡ଼ଜାତ ଏବଂ ଓଡ଼ିଶା ଡିଭିଜନ ବାହାରେ ଥିବା ଲୋକମାନଙ୍କ ମନରେ ଓଡ଼ିଆ ଭାଷା ଓ ସ୍ୱତନ୍ତ୍ର ରାଜ୍ୟର ଭାବନା ଉଜ୍ଜୀବିତ ନିମନ୍ତେ ତତ୍କାଳୀନ ବୁଦ୍ଧିଜୀବୀମାନେ ନିଜର ପ୍ରଚେଷ୍ଟା ଜାରି ରଖିଥିଲେ ।

ମହାରାଜା କୃଷ୍ଣଚନ୍ଦ୍ର ଗଜପତି ୧୮୯୨ ମସିହା ଅପ୍ରେଲ ୨୬ ତାରିଖରେ ପାରଳାଖେମୁଣ୍ଡିର ରାଜବଂଶରେ ଜନ୍ମଗ୍ରହଣ କରିଥିଲେ । ତାଙ୍କୁ ଯେତେବେଳେ ୧୨ ବର୍ଷ, ସେତେବେଳେ ସେ ନିଜ ପିତାଙ୍କୁ ହରାଇଥିଲେ । ତାଙ୍କର ଶିକ୍ଷା ସମାପନ ହେବା ପୂର୍ବରୁ ତାଙ୍କୁ ତାଙ୍କ ଜମିଦାରୀର ଦାୟିତ୍ୱ ନେବାକୁ ପଡ଼ିଥିଲା । ସେ ଜମିଦାରୀର ଦାୟିତ୍ୱ ନେବା ସମୟରୁ ପ୍ରଜାମଙ୍ଗଳ କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ । ସେ ଜଣେ ପ୍ରଜାବତ୍ସଳ, ଉଦାରମନା, ସଚ୍ଚୋଟ ଓ ଜାତୀୟତାବାଦୀ ବ୍ୟକ୍ତି ଥିଲେ । ଜମିଦାରୀ ଦାୟିତ୍ୱ ବୁଝାବୁଝି କରିବା ସଙ୍ଗେ ସଙ୍ଗେ ଗଂଜାମ ଜିଲ୍ଲାକୁ ମାନ୍ଦ୍ରାଜ ପ୍ରଦେଶରୁ ଅଲଗା କରି ଓଡ଼ିଶାରେ ମିଶାଇବା ନିମନ୍ତେ କାର୍ଯ୍ୟ ଆରମ୍ଭ କରିଥିଲେ । ତେଣୁ ସେ ଓଡ଼ିଆ ଭାଷାଭାଷୀ ଅଞ୍ଚଳରେ ଲାଗି ରହିଥିବା ଓଡ଼ିଆ ଆନ୍ଦୋଳନ ସହିତ ସମ୍ପର୍କ ଜାରି ରଖିଥିଲେ । ତାଙ୍କରି ପ୍ରଚେଷ୍ଟାରେ ୧୯୧୪ ମସିହା ଡିସେମ୍ବର ମାସରେ ପାରଳାଖେମୁଣ୍ଡିଠାରେ ଉତ୍କଳ ସମ୍ମିଳନୀର ଦଶମ ଅଧିବେଶନ ଆୟୋଜିତ ହୋଇଥିଲା । ଏହି ଅଧିବେଶନରେ ଫକୀର ମୋହନ ସେନାପତି, ମଧୁସୂଦନ ଦାସ, ବିଶ୍ୱନାଥ କର, ଗୋପବନ୍ଧୁ ଦାସ, ଶଶୀଭୂଷଣ ରାୟ ପ୍ରଭୃତି ନେତାମାନେ ଯୋଗଦେଇ ନିଜ ନିଜର ମତପୋଷଣ କରିଥିଲେ ।

୧୯୨୪ ମସିହାରେ ଫିଲିପ୍–ଡଫ୍ କମିଟି ନିକଟରେ ଗଂଜାମ ଜିଲ୍ଲାକୁ ଓଡ଼ିଶା ସହିତ ମିଶ୍ରଣ କରିବା ନିମନ୍ତେ ସେ ଦୃଢ ଦାବୀ ଉପସ୍ଥାପନ କରିଥିଲେ । ଏହି ସମୟରେ ଉତ୍କଳଗୌରବ ମଧୁସୂଦନଙ୍କ ନେତୃତ୍ୱରେ ଉପକୂଳ ଓଡ଼ିଶା ଓ ପଶ୍ଚିମ ଓଡ଼ିଶାରେ ସ୍ୱତନ୍ତ୍ର ରାଜ୍ୟ ନିମନ୍ତେ ଆନ୍ଦୋଳନ ଜୋରଦାର୍ ଆରମ୍ଭ ହୋଇଯାଇଥାଏ । ବିଭିନ୍ନ ସମୟରେ ମଧୁବାବୁ କଂଗ୍ରେସ ଦଳ ମାଧ୍ୟମରେ ନିଜର ମତାମତ ବ୍ରିଟିଶ୍ ସରକାରଙ୍କ ନିକଟରେ ଉପସ୍ଥାପନା କରିଚାଲିଥିଲେ । ୧୯୦୨ ମସିହାରେ ମାନ୍ଦ୍ରାଜଠାରେ ବସିଥିବା ଜାତୀୟ କଂଗ୍ରେସ ଅଧିବେଶନରେ ଓଡ଼ିଆ ଭାଷାଭିତ୍ତିକ ରାଜ୍ୟ ନିମନ୍ତେ ଓ ମାନ୍ଦ୍ରାଜ ପ୍ରେସିଡେନ୍ସିରୁ ଗଂଜାମକୁ ମୁକ୍ତ କରି ଓଡ଼ିଶା ସହ ମିଶାଇବାକୁ ମଧୁବାବୁ ଓ ଗୌରୀଶଙ୍କର ରାୟ ଦୃଢ ଦାବି କରିଥିଲେ । ମଧୁବାବୁ ଓ ଗୌରୀଶଙ୍କର ଏହି ଦାବିକୁ କଂଗ୍ରେସ କର୍ତ୍ତୃପକ୍ଷ ଗୁରୁତ୍ୱ ଦେଇନଥିଲେ । ଫଳରେ ମଧୁବାବୁ କଂଗ୍ରେସ ପ୍ରତି ବୀତସ୍ପୃହ ହୋଇ ପଡିଥିଲେ ଏବଂ କଂଗ୍ରେସଠାରୁ ନିଜକୁ ଦୂରେଇ ନେଇଥିଲେ । ମଧୁବାବୁ କଂଗ୍ରେସଠାରୁ ନିଜକୁ ଦୂରେଇ ନେବା ପରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ନିମନ୍ତେ ଜୋରଦାର୍ ଉଦ୍ୟମ ଜାରି ରଖିଥିଲେ । ବିଭିନ୍ନ ପ୍ରଶାସନିକ ଦପ୍ତରରେ ଓଡ଼ିଆ ଭାଷାକୁ ଏକ ସ୍ୱତନ୍ତ୍ର ଭାଷାର ମାନ୍ୟତା ଦେବାପାଇଁ ଦାବି ଉପସ୍ଥାପନ କରୁଥିଲେ ।

୧୯୨୭ ମସିହାରେ ବ୍ରିଟିଶ୍ ସରକାର ଭାରତ ଶାସନ ସଂସ୍କାର ସମ୍ବନ୍ଧରେ ଭାରତୀୟମାନଙ୍କର ମତ ଜାଣିବା ନିମନ୍ତେ ସାର୍–ଜନ୍ ଆଲସାବ୍ରକ ସାଇମନ୍ଙ୍କ ନେତୃତ୍ୱରେ ଏକ କମିଶନଙ୍କୁ ଭାରତକୁ ପଠାଇଥିଲେ । ଏହି କମିଶନରେ ଭାରତର କୌଣସି ଜ୍ଞାନୀ ବା ନେତୃସ୍ଥାନୀୟ ବ୍ୟକ୍ତି ସଭ୍ୟ ନଥିଲେ । ଫଳରେ କଂଗ୍ରେସ ଜରିଆରେ ସାଇମନ କମିଶନ ଭାରତରେ

ବିରୋଧର ସମ୍ମୁଖୀନ ହୋଇଥିଲେ । ଯେହେତୁ ମଧୁବାବୁ କଂଗ୍ରେସଠାରୁ ନିଜକୁ ଦୂରେଇ ନେଇଥିଲେ, ତେଣୁ ଓଡ଼ିଶାରେ ସାଇମନ୍ କମିଶନଙ୍କୁ ସ୍ୱାଗତ କରିବା ନିମନ୍ତେ ସେ ସ୍ଥିର କଲେ । ଏଥିନିମନ୍ତେ ଓଡ଼ିଶାର ତତ୍କାଳୀନ କଂଗ୍ରେସ ନେତୃମଣ୍ଡଳୀ ମଧୁବାବୁଙ୍କ ଚିନ୍ତାଧାରାକୁ ଗୁରୁତ୍ୱ ନଦେଇ ସାଇମନ କମିଶନଙ୍କୁ ଓଡ଼ିଶାରେ ବିରୋଧ କରିବା ପାଇଁ ସ୍ଥିର କଲେ । ମଧୁବାବୁ ଜାଣିପାରିଲେ ଯେ ଓଡ଼ିଶାରେ କମିଶନଙ୍କୁ ସ୍ୱାଗତ କରିହେବ ନାହିଁ । ତେଣୁ ତାଙ୍କର ଅନୁଗତ କନିକାର ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓଙ୍କୁ ଚିଠି ଦ୍ୱାରା ଜଣାଇ ଦେଲେ ଯେ, କମିଶନଙ୍କୁ ଓଡ଼ିଶା ନ ଆଣି ପାଟଣା ରେଳ ଷ୍ଟେସନରେ ଭବ୍ୟ ସମ୍ବର୍ଦ୍ଧନା ଦେବାର ବନ୍ଦୋବସ୍ତ କର । ମଧୁବାବୁଙ୍କ ନିର୍ଦ୍ଦେଶାନୁସାରେ କନିକାର ରାଜା ଓ ତାଙ୍କର ସହକର୍ମୀ ବ୍ରଜସୁନ୍ଦର ଦାସ ପାଟଣା ରେଳ ଷ୍ଟେସନରେ କମିଶନଙ୍କୁ ଭବ୍ୟ ସମ୍ବର୍ଦ୍ଧନା ଦେଇଥିଲେ । ସେହି ଦିନର ସମ୍ବର୍ଦ୍ଧନା ହିଁ ପ୍ରାୟତଃ ଏକ ଭାଷା ଓ ସଂସ୍କୃତି ଭିତ୍ତିକ ପ୍ରଦେଶ ଗଠନ ନିମନ୍ତେ ବାଟ ଫିଟାଇଥିଲା । ମଧୁବାବୁଙ୍କର ଚିନ୍ତାଧାରା ସତ୍ୟରେ ପରିଣତ ହୋଇଥିଲା । ସାଇମନ କମିଶନ ମଧୁବାବୁଙ୍କ ଓଡ଼ିଶା ଲିବେରାଲ୍‌ଲିଗ୍‌ର ଯୁକ୍ତିକୁ ଯଥାର୍ଥ ଅନୁଭବ କରିଥିଲେ ଓ ଏକ ଭାଷାଭିତ୍ତିକ ସ୍ୱତନ୍ତ୍ର ରାଜ୍ୟ ଗଠନ ନିମନ୍ତେ ସର୍ବସମ୍ମତି ଭାବେ ସ୍ୱୀକୃତି ପ୍ରଦାନ କରିଥିଲେ । ସାଇମନ କମିଶନଙ୍କ ରିପୋର୍ଟ ପ୍ରକାଶିତ ହେବା ପରେ ବ୍ରିଟିଶ୍ ସରକାର ଅଟ୍‌ଲି ସବ୍‌କମିଟି ନାମକ ଏକ ସୀମା ନିର୍ଦ୍ଧାରଣ କମିଟି ଗଠନ କରିଥିଲେ । ସି.ଆର. ଅଟ୍‌ଲି ଏହି କମିଟିର ଅଧ୍ୟକ୍ଷ ଥିଲେ । ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ନେଇ ଏକ ସୀମା ନିର୍ଦ୍ଧାରଣ କରି ଉକ୍ତ କମିଟି ବ୍ରିଟିଶ୍ ସରକାରଙ୍କୁ ପ୍ରସ୍ତାବ ମାଧ୍ୟମରେ ଜଣାଇଥିଲେ ।

କୃଷ୍ଣଚନ୍ଦ୍ର ଗଜପତି ମଧ୍ୟ ପ୍ରକାଶ୍ୟରେ ସାଇମନ୍ କମିଶନଙ୍କୁ ସ୍ୱାଗତ କରୁଥିଲେ । ସେ ମଧୁବାବୁଙ୍କ ଭଳି ଭଲଭାବେ ଜାଣିଥିଲେ ଯେ, ଯଦି ସାଇମନ୍ କମିଶନଙ୍କୁ ଖୁସି କରାଯାଇପାରିବ, ତେବେ ହୁଏତ ଓଡ଼ିଶା ଭାଷାଭାଷୀ ଅଞ୍ଚଳକୁ ନେଇ ଏକ ସ୍ୱତନ୍ତ୍ର ରାଜ୍ୟ ଗଠନ ନିମନ୍ତେ ବ୍ରିଟିଶ୍ ସରକାର ଚିନ୍ତା କରିବେ । ସେ ଓଡ଼ିଶାର ଅଧିବାସୀମାନଙ୍କୁ ଆହ୍ୱାନ ଦେଇ କହିଥିଲେ ବର୍ତ୍ତମାନର ସୁଯୋଗକୁ ହାତଛଡା କରିବା ଉଚିତ୍ ନୁହେଁ । ଆମ ସ୍ୱାର୍ଥକୁ ସୁରକ୍ଷା କରିବାକୁ ପଡ଼ିବ । ଅନ୍ୟ କେହି ବା କାହାଠାରୁ ସାହାଯ୍ୟ ପାଇବା ଆଶା କରିବା ବୃଥା । ଗଂଜାମ ନିର୍ବାଚନ ମଣ୍ଡଳୀରୁ କୃଷ୍ଣଚନ୍ଦ୍ର ଗଜପତି ୧୯୩୦ ମସିହାରେ ମାନ୍ଦ୍ରାଜ ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ସେହିବର୍ଷ ଓଡ଼ିଆମାନଙ୍କର ଦାବି ଇଂରେଜ ସରକାରଙ୍କ ନିକଟରେ ପହଞ୍ଚାଇବା ନିମନ୍ତେ ଇଂଲଣ୍ଡରେ ଅନୁଷ୍ଠିତ ହେଉଥିବା ପ୍ରଥମ ଗୋଲଟେବୁଲ ବୈଠକରେ ଯୋଗଦେଇ ନିଜର ବକ୍ତବ୍ୟ ଉପସ୍ଥାପନ କରିଥିଲେ । ଓଡିଆମାନଙ୍କର ଦାବି ଉପସ୍ଥାପନ ନିମନ୍ତେ ବିହାର ସରକାର ତାଙ୍କର ନାମକୁ ସୁପାରିଶ କରିଥିଲେ । ଫଳରେ କୃଷ୍ଣଚନ୍ଦ୍ର ଗଜପତିଙ୍କୁ ଓଡ଼ିଶାର ଲୋକମାନଙ୍କର ଯୁକ୍ତିକୁ ଦର୍ଶାଇବା ନିମନ୍ତେ ଏକ ସୁଯୋଗ ମିଳିଯାଇଥିଲା । ଗୋଲଟେବୁଲ ବୈଠକରେ ସେ ବିସ୍ତୃତ ଭାବରେ ନିଜର ଯୁକ୍ତି ବାଢ଼ିଥିଲେ । ଇଂଲଣ୍ଡରେ ରହଣି ସମୟରେ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଇଂଲଣ୍ଡର ଭାରତ ସଚିବ ସାର୍ ସାମୁଏଲ୍ ଏବଂ ଗୋଲଟେବୁଲ ବୈଠକର ଅନ୍ୟ ସଭ୍ୟମାନଙ୍କୁ ଭେଟି ଓଡ଼ିଶାର ରାଜନୈତିକ ସ୍ଥିତି, ସୀମା ନିର୍ଦ୍ଧାରଣ, ସଂସ୍କୃତି ଓ ଭାଷା ସମ୍ବନ୍ଧରେ ଅବଗତ କରାଇଥିଲେ । ତାଙ୍କର ଦୃଢ଼ ମନୋବଳ ଓ ଯୁକ୍ତିକୁ ହୃଦୟଙ୍ଗମ କରି ବ୍ରିଟିଶ୍ ସରକାର ଓଡ଼ିଆ ଭାଷାଭିତ୍ତିକ ଏକ ସ୍ୱତନ୍ତ୍ର ରାଜ୍ୟ ଗଠନ ନିମନ୍ତେ ସ୍ୱୀକୃତି ପ୍ରଦାନ କରିଥିଲେ ।

ଏହି ଗୋଲଟେବୁଲ ବୈଠକକୁ ସେତେବେଳେ କଂଗ୍ରେସ ବର୍ଜନ କରିଥିଲା । ଯେହେତୁ କୃଷ୍ଣଚନ୍ଦ୍ର ଗଜପତି ଏହି ବୈଠକରେ ଯୋଗ ଦେଇଥିଲେ, ତେଣୁ ସେତେବେଳର କଂଗ୍ରେସର ନେତୃମଣ୍ଡଳୀ ତାଙ୍କୁ ଭଲ ଭାବେ ଗ୍ରହଣ କରିପାରୁ ନଥିଲେ । ସେ ଗୋଲଟେବୁଲ ବୈଠକରେ ଯୋଗ ଦେଇଥିବାରୁ ଓଡ଼ିଶା ଏକ ସ୍ୱତନ୍ତ୍ର ରାଜ୍ୟରେ ପରିଣତ ହେବା ପାଇଁ ପଥ ପରିଷ୍କାର ହୋଇଯାଇଥିଲା ।

୧୯୩୧ ମସିହା ସେପ୍ଟେମ୍ବର ମାସରେ ଓଡନେଲ୍ ସୀମା ନିର୍ଦ୍ଧାରଣ କମିଟି ଗଠିତ ହୋଇଥିଲା । ଏହି କମିଟିରେ ପାରଳାର ମହାରାଜା କୃଷ୍ଣଚନ୍ଦ୍ର ଗଜପତି ସଭ୍ୟ ଥିଲେ । କୃଷ୍ଣଚନ୍ଦ୍ର ଗଜପତିଙ୍କର ଦାବି ଶୁଣି ତେଲୁଗୁ ନେତୃମଣ୍ଡଳୀ କୃଷ୍ଣଚନ୍ଦ୍ରଙ୍କୁ ଘୋର ବିରୋଧ କରିବା ଆରମ୍ଭ କରି ଦେଇଥିଲେ । ସେମାନଙ୍କର ଦାବି ଥିଲା ମାନ୍ଦ୍ରାଜରୁ କୌଣସି ଅଂଶ ଓଡ଼ିଶାକୁ ଦିଆ ହେବନାହିଁ । ମହାରାଜାଙ୍କର ଯୁକ୍ତିକୁ ହୃଦୟଙ୍ଗମ କରି ପାରଳାଖେମୁଣ୍ଡିର ଓଡ଼ିଆ ଲୋକମାନେ ଓଡ଼ିଶା ସହିତ ମିଶି ରହିବା ପାଇଁ ଓଡନେଲ୍ କମିଟି ଆଗରେ ଦାବି ଜଣାଇଲେ । ନିଜେ ମହାରାଜା ତାଙ୍କ ଜମିଦାରୀକୁ ଓଡ଼ିଶାରେ ମିଶାଇ ଦେବା

ପାଇଁ ମଧ ଚେଷ୍ଟା ଜାରି ରଖିଥିଲେ । ଓଡ଼ିଶାର ବିଭିନ୍ନ ପ୍ରାନ୍ତରର ଦାବିକୁ କମିଟି ଅନୁଧାନ କରି ଶେଷରେ ଓଡ଼ିଶାର ସୀମା ନିର୍ଦ୍ଧାରଣ ରିପୋର୍ଟ ପ୍ରକାଶ କରିଥିଲେ, ଯେଉଁଥିରେ କି ପାରଳାଖେମୁଣ୍ଡି, ମେଦିନୀପୁର ଏବଂ ସିଂହଭୂମି ଓଡ଼ିଶାର ସୀମା ମଧରେ ନଥିଲା । ଏହି ସୀମା ନିର୍ଦ୍ଧାରଣ ରିପୋର୍ଟକୁ ଓଡ଼ିଶାର ତତ୍କାଳୀନ ନେତୃମଣ୍ଡଳୀ ସହଜରେ ଗ୍ରହଣ କରି ପାରିନଥିଲେ । ଏହି ସୀମା ନିର୍ଦ୍ଧାରଣକୁ ବିରୋଧ କରି ଉତ୍କଳ ସମ୍ମିଳନୀର ବ୍ରହ୍ମପୁର ସହରରେ ଏକ ବୈଠକରେ ସ୍ଥିରିକୃତ ହେଲା ଯେ, ଓଡନେଲ୍ କମିଟିର ସୀମା ନିର୍ଦ୍ଧାରଣକୁ ବିରୋଧ କରାଯାଇ ପାରଳା ମହାରାଜାଙ୍କ ଜରିଆରେ ବଡଲାଟ୍‌ଙ୍କୁ ଜଣାଇ ଦିଆଯିବ । କୃଷ୍ଣଚନ୍ଦ୍ର ଗଜପତିଙ୍କ ସହ ଅନ୍ୟ କେତେଜଣ ନେତୃମଣ୍ଡଳୀ ସିମଲାଠାରେ ବଡଲାଟ୍ ଲର୍ଡ ଉଇଲଂଡନ୍‌ଙ୍କୁ ଭେଟି ନିଜର ଅସନ୍ତୋଷ ଜଣାଇଥିଲେ । ୧୯୩୩ ମସିହାରେ ଓଡ଼ିଶାର ସୀମା ନିର୍ଦ୍ଧାରଣ ନିମନ୍ତେ ବ୍ରିଟିଶ୍ ସରକାରଙ୍କ ଦ୍ୱାରା ଏକ ଶ୍ୱେତପତ୍ର ପ୍ରକାଶିତ ହୋଇଥିଲା । ଏହି ଶ୍ୱେତପତ୍ରରେ ଓଡ଼ିଶାର ଜୟପୁର ଓ ପାରଳାଖେମୁଣ୍ଡି ଓଡ଼ିଶାର ସୀମା ମଧରେ ନଥିବା ଦର୍ଶାଯାଇଥିଲା । ଏହି ଶ୍ୱେତପତ୍ରର ରିପୋର୍ଟ ଦେଖି କୃଷ୍ଣଚନ୍ଦ୍ର ଗଜପତି ବହୁତ ମ୍ରିୟମାଣ ହୋଇପଡିଥିଲେ । ତାଙ୍କର ପ୍ରଗାଢ ଚେଷ୍ଟା ସତ୍ତ୍ୱେ ନିଜର ଜମିଦାରୀ ଯେ ଓଡ଼ିଶା ପ୍ରଦେଶରେ ନରହି ବାହାର ରାଜ୍ୟ ସହିତ ମିଶିବ, ଏହା ତାଙ୍କୁ ହତାଶ କରିଦେଇଥିଲା । ବ୍ରିଟିଶ୍ ସରକାରଙ୍କର ଏହି ମନମୁଖୀ କାର୍ଯ୍ୟକଳାପ ବିରୁଦ୍ଧରେ ସେ ଦବି ଯାଇନଥିଲେ । ତାଙ୍କରି ନେତୃତ୍ୱରେ ପୁନଶ୍ଚ ପାରଳାଖେମୁଣ୍ଡିରେ ଉତ୍କଳ ସମ୍ମିଳନୀ ଡକାଯାଇ ସ୍ଥିରୀକୃତ ହେଲା ଯେ ଜୟପୁର ଓ ପାରଳାଖେମୁଣ୍ଡି ଜମିଦାରୀ ଦୁଇଟିକୁ ଓଡ଼ିଶାରେ ମିଶାଇବା ପାଇଁ ଇଂରେଜ ସରକାରଙ୍କ ନିକଟରେ ଦାବି କରାହେବ ।

ଉତ୍କଳ ସମ୍ମିଳନୀରେ ସ୍ଥିର ହୋଇଥିବା ଦୁଇଟି ଦାବି ସମ୍ବନ୍ଧରେ କୃଷ୍ଣଚନ୍ଦ୍ର ଗଜପତି ଲଣ୍ଡନ ଯାଇ ଭାରତ ସଚିବଙ୍କ ନିକଟରେ ପାରଳାଖେମୁଣ୍ଡି ଓ ଜୟପୁରକୁ ଓଡ଼ିଶା ସହିତ ମିଶାଇବା ପାଇଁ ଦାବି କରିଥିଲେ । ତେଲୁଗୁ ପ୍ରତିନିଧି ଓ ମାନ୍ଦ୍ରାଜ ସରକାର ଉତ୍କଳ ସମ୍ମିଳନୀର ଏହି ଦାବିକୁ ଘୋର ବିରୋଧ କରୁଥିଲେ । ଯେହେତୁ ପାରଳାଖେମୁଣ୍ଡିର ଅଧିକାଂଶ ଲୋକ ତେଲୁଗୁ ଭାଷୀ ହୋଇଥିବାରୁ ଇଂରେଜ ସରକାର ପାରଳାଖେମୁଣ୍ଡିକୁ ଓଡ଼ିଶାରେ ଅନ୍ତର୍ଭୁକ୍ତ କରାଇବା ପାଇଁ ଚାହିଁ ନ ଥିଲେ ଓ ଜୟପୁର ଜମିଦାରୀ ଓଡ଼ିଶା ପ୍ରଦେଶରେ ରହିବା ପାଇଁ ପ୍ରକାରାନ୍ତରରେ ରାଜି ହୋଇଯାଇଥିଲେ । ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଅନ୍ୟ ଉପାୟ ନ ପାଇ ନିଜ ଜମିଦାରୀକୁ ଦୁଇଭାଗ କରିବା ପାଇଁ ଚିନ୍ତାକଲେ । ସେ ନିଜର ଜମିଦାରୀକୁ ମାନ୍ଦ୍ରାଜ ଓ ଓଡ଼ିଶା ମଧରେ ବିଭାଜନ କରି ଭାରତ ସଚିବ ଓ ମାନ୍ଦ୍ରାଜ ସରକାରଙ୍କ ନିକଟକୁ ଏକ ପ୍ରସ୍ତାବ ପଠାଇଥିଲେ । ମହାରାଜାଙ୍କର ଏହି ପ୍ରସ୍ତାବକୁ ସେତେବେଳର ମାନ୍ଦ୍ରାଜ ସରକାର ଓ ଭାରତ ସରକାର କେହି ଗ୍ରହଣ କରିନଥିଲେ । ଏତେ ବିରୋଧ ସତ୍ତ୍ୱେ ମଧ କୃଷ୍ଣଚନ୍ଦ୍ର ଗଜପତି ଚୁପ୍ ହୋଇ ବସି ନଥିଲେ । ତାଙ୍କର ପ୍ରବଳ ଇଚ୍ଛାଶକ୍ତି ଯୋଗୁଁ ସେ ଉତ୍କଳ ସମ୍ମିଳନୀ ମାଧମରେ ନିଜର ଜମିଦାରୀକୁ ଓଡ଼ିଶାରେ ମିଶ୍ରଣ କରିବା ନିମନ୍ତେ ଉଦ୍ୟମ ଜାରି ରଖିଥିଲେ । ଭାରତ ଶାସନ ବିଧେୟକ ସମ୍ବନ୍ଧରେ ଜାଣିବା ପାଇଁ ସରକାର ଏକ ଜଏଣ୍ଟ ସିଲେକ୍ଟ କମିଟି ନିଯୁକ୍ତି କରିଥିଲେ । ଏହି କମିଟିର ଅଧକ୍ଷ ଲର୍ଡ଼ ଲିନ୍‌ଲିଥଗୋଙ୍କ ସହିତ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କର ପୂର୍ବରୁ ଭଲ ସମ୍ପର୍କ ଥିଲା । ତେଣୁ କମିଟିର ଅଧକ୍ଷଙ୍କୁ ସେ ବ୍ୟକ୍ତିଗତ ଭାବେ ଦେଖାକରି ନିଜର ମତ ରଖିଥିଲେ । କୃଷ୍ଣଚନ୍ଦ୍ରଙ୍କ କଥାର ଗୁରୁତ୍ୱ ଅନୁଭବ କରି କମିଟିର ଅଧକ୍ଷ ଲିନ୍‌ଲିଥଗୋ ଗଜପତିଙ୍କ ଉକ୍ତ ପ୍ରସ୍ତାବକୁ ଗ୍ରହଣ କରିଥିଲେ ।

ଶେଷରେ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ପ୍ରଗାଢ଼ ଚେଷ୍ଟା ଓ ଇଚ୍ଛାଶକ୍ତି ଯୋଗୁଁ ଓଡ଼ିଶା ୧୯୩୬ ମସିହା ଅପ୍ରେଲ ମାସ ୧ ତାରିଖ ଦିନ ବିଧିବଦ୍ଧଭାବେ ସ୍ୱତନ୍ତ୍ର ପ୍ରଦେଶରେ ପରିଣତ ହେଲା । ଏହି ଅପ୍ରେଲ ୧ ତାରିଖ ସାରା ଓଡ଼ିଶାବାସୀଙ୍କ ନିମନ୍ତେ ଏକ ଅବିସ୍ମରଣୀୟ ଦିନ ହୋଇ ରହିଗଲା । ଭାରତ ଶାସନ ଆଇନ୍ ଧାରା ୨୮୯ ଅନୁସାରେ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ମାନ୍ୟତା ଲାଭକଲା ।

ସୂର୍ଯ୍ୟ ନିବାସ, ସା. ସୁଭଦ୍ରାପୁର
ପୋ. ଉତ୍ତମାପୁର, କଟକ



# ଇଂଲଣ୍ଡ ପାର୍ଲିଆମେଣ୍ଟରେ ଓଡିଶା ପ୍ରଦେଶ ଗଠନ ବିଲ୍ - ୧୯୩୫

ଇଂ. ଗୋବର୍ଦ୍ଧନ ଦୋରା

ଉତ୍କଳ ସମ୍ମିଳନୀର ପ୍ରଚେଷ୍ଟା, ଅନେକଗୁଡିଏ କମିଟିର ମତ ଗ୍ରହଣ ପରେ ଓଡିଶା ଏକ ସ୍ୱତନ୍ତ୍ର ପ୍ରଦେଶ ହେବ ବୋଲି ବ୍ରିଟିଶ ସରକାର ରାଜି ହେଲେ । ଜଏଣ୍ଟ୍ ପାର୍ଲିଆମେଣ୍ଟାରୀ କମିଟିର ସୁପାରିଶକୁ 'ହାଉସ ଅଫ କମନ୍ସ' ଗ୍ରହଣ କରିବା ପରେ ମାର୍ଚ୍ଚ ୧୩,୧୯୩୫ରେ ଓଡିଶା ପ୍ରଦେଶ ଗଠନ ପାଇଁ ଏକ ବିଲ୍ ପାର୍ଲିଆମେଣ୍ଟରେ ଉପସ୍ଥାପିତ ହେଲା । ଏ ବିଲରେ ଯେଉଁମାନେ ଅଂଶଗ୍ରହଣ କରି ମତାମତ ଦେଇଥିଲେ, ସେମାନଙ୍କ କଥା ବର୍ତ୍ତମାନ ପିଢିର ଓଡିଆଙ୍କ ପାଇଁ ପ୍ରଣିଧାନଯୋଗ୍ୟ ।

ପ୍ରଥମରେ ବିତର୍କରେ ବିରୋଧୀ ଭୂମିକାରେ ଅଂଶଗ୍ରହଣ କରି କର୍ଣ୍ଣେଲ୍ ଉଏଜ୍ ଉଡ୍ କହିଲେ ଏହି ପ୍ରଦେଶ (ଓଡିଶା) ଗଠନ କରାଗଲେ, ମୁଁ ପୂର୍ବରୁ କହିଥିବା ଉତ୍ତର -ପଶ୍ଚିମ ସୀମାନ୍ତ ପ୍ରଦେଶ ପରି ମୁସଲମାନ ବହୁଳ ରାଜ୍ୟରେ ସଂଖ୍ୟାଲଘୁ ହିନ୍ଦୁଙ୍କ ଉପରେ ଅତ୍ୟାଚାର ସମ୍ଭାବନା ନଥାଇପାରେ । କାରଣ ଏଠାରେ ମୁସଲମାନ ସଂଖ୍ୟା ଅତି କମ୍ । ମାତ୍ର ମୁଁ ଅନ୍ୟ ପ୍ରସଙ୍ଗ କଥା କହୁଛି । ଓଡିଶାର ୧୬,୦୦୦୦୦୦ ଲୋକଙ୍କମଧ୍ୟରୁ ପ୍ରାୟ ଅଧା ଆଦିବାସୀ । ରୁଡିୟାର୍ଡ କିପ୍ଲିଂ ଲିଖିତ 'ଅରଣ୍ୟପୁସ୍ତକ' (Jungle Book) ଓଡିଶାର ବିଭିନ୍ନ ଆଦିବାସୀଙ୍କ ଉପରେ ବର୍ଣ୍ଣିତ । ଏହି ଲୋକମାନେ ତାଙ୍କର ଅନୁନ୍ନତ ପଣ ପାଇଁ ସିଧାସଳଖ ବ୍ରିଟିଶ୍ଙ୍କ ଦ୍ୱାରା ଶାସିତ ହେବା ଦରକାର । ଓଡିଶାର ଅଧେ ଯେ ମାଡ୍ରାସ୍ ପ୍ରଦେଶରେ ଅଛି, ତାହା ଗ୍ରହଣୀୟ ନୁହେଁ । ଏହି ପ୍ରଦେଶର ଅର୍ଦ୍ଧାଧିକ ଜଙ୍ଗଲରେ ପରିପୂର୍ଣ୍ଣ । ଉପକୂଳ ଅଞ୍ଚଳ ବିହାର ଏବଂ ମାନ୍ଦ୍ରାଜରେ ସାମିଲ ହୋଇଅଛି । ପ୍ରକୃତ ପକ୍ଷେ ଦେଖିବାକୁ ଗଲେ ଓଡିଶା ପ୍ରଦେଶ ଗଠନର କୌଣସି ବଳିଷ୍ଠ ଯୁକ୍ତି ନାହିଁ । ପୁଣି ସେ କହିଲେ ନିଜ ଶାସିତ ପ୍ରଦେଶ (ରାଜ୍ୟପାଳ ଶାସିତ ପ୍ରଦେଶ) ଓଡିଶା ଏବଂ ସ୍କଟ୍ଲ୍ୟାଣ୍ଡର ଯୁକ୍ତି ଅତି ଦୁର୍ବଳ । ଏହି ପ୍ରଦେଶ ଗଠନ କଲେ, ଗରିବ ଟିକସ୍ଦାତାଙ୍କ ଉପରେ, ଆର୍ଥିକ ଦୃଷ୍ଟିରୁ ବୋଝ ଉପରେ ନଳିତାବିଡା ପରି ହେବ । ସବୁ ଦୃଷ୍ଟିରୁ ଭଲ ଜଣେ ଗୋରା ସାହେବ୍ ଏହି ପ୍ରଦେଶକୁ ସିଧାସଳଖ (Chief Commissioner's State) ଶାସନ କଲେ ବହୁତ ଭଲ ହେବ ।

ବିତର୍କରେ ଅଂଶଗ୍ରହଣ କରି ମେଜର ଅଟଲି, ଉଏଜ୍ ଉଡ୍ଙ୍କ ଓଡିଶା ଉପରେ, ଭୂଗୋଳ ଜ୍ଞାନ, ଲୋକସଂଖ୍ୟା, ଲୋକଙ୍କ ମତ ଏବଂ ଆର୍ଥିକ ସଂକେତ ଇତ୍ୟାଦି ଗ୍ରହଣ ନକରି କହିଲେ ସାଇମନ୍ କମିଶନ୍ ବହୁତ ପରୀକ୍ଷା ନୀରିକ୍ଷା ପରେ, ଓଡିଶା ଗଠନ ସପକ୍ଷରେ ମତ ପୋଷଣ କରିଛନ୍ତି । ଅବଶ୍ୟ ଓଡିଶାର ଲୋକସଂଖ୍ୟା ବହୁତ କମ୍ । ମାତ୍ର ନିଜେ ଉଏଜ୍ ଉଡ୍ ପାଲେଷ୍ଟାଇନ ପରି କ୍ଷୁଦ୍ର ଦେଶ ସପକ୍ଷରେ ଯୁକ୍ତି କଲାବେଳେ ତାଙ୍କର ଏହି ବିପରୀତ ଆଭିମୁଖ୍ୟ ପାଇଁ କାରଣ ସେ ଖୋଜି ପାଉନାହାଁନ୍ତି । ଅଟଲି ଯୁକ୍ତି କଲେ ଓଡିଆମାନେ ଅନ୍ୟାନ୍ୟ ପ୍ରଦେଶରେ ସଂଖ୍ୟା ଲଘୁ ହିସାବରେ ରହି ଯଥା ମାନ୍ଦ୍ରାଜ ଭଳି ବିରାଟ ପ୍ରଦେଶରେ ରହି ନିଜର ଶାସନ ଅଥବା ଭାଷା ପରିପ୍ରକାଶ ପାଇଁ ସଂପୂର୍ଣ୍ଣ ଅକ୍ଷମ । ବିହାର ଓଡିଶା ପ୍ରଦେଶରେ କଟକ ପାଟନାଠାରୁ ୬୫୦ ମାଇଲ ଦୂର । ଅଟ୍ଲି ପୁଣି କହିଲେ ଓଡିଶାରେ ବହୁତ ଆଦିବାସୀ ଅଛନ୍ତି ସତ, ମାତ୍ର ସେମାନେ ଓଡିଆ ଭାଷା କହନ୍ତି । ଯଦି ଏହି ଆଦିବାସୀମାନେ ବୃହତ୍ ଅଣ-ଆଦିବାସୀ ମାନ୍ଦ୍ରାଜ ଅଥବା ବିହାର ଓଡିଶା

ପ୍ରଦେଶରେ ରହନ୍ତି ତାଙ୍କର ସ୍ୱର ଶୁଣାଯିବ ନାହିଁ । ତେଣୁ ଓଡିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ କରି ଏମାନଙ୍କୁ ଏକ ସ୍ୱତନ୍ତ୍ର ଶାସନାଧୀନ କରିବା ଦରକାର । ଖାଲି ଆର୍ଥିକ ଦୃଷ୍ଟିରୁ ଦେଖି ଲୋକପ୍ରିୟ ସ୍ୱୟଂ ଶାସନରୁ ବଂଚିତ କରିବା ଠିକ୍ ହେବନାହିଁ । ଯଥା ସମୟରେ ଓଡିଶାର ଟିକସ୍‌ଦାତାଗଣ ଅଧିକ ଟିକସ ଦେଇ ବକେୟା ଭରଣା କରିବେ । ମାତ୍ର ବିହାର-ଓଡିଶା ରାଜ୍ୟ ପରି ଅସାମଞ୍ଜସ୍ୟ ରାଜ୍ୟରେ ରହିବାକୁ ପସନ୍ଦ କରିବେ ନାହିଁ । ରାଜ୍ୟ ସୀମା ବାସିନ୍ଦାଙ୍କ ଉଲ୍ଲେଖ କରି ଅଟଲି କହିଲେ ଯେ ଭାରତର ସବୁ ପ୍ରଦେଶର ଉପାନ୍ତ ଅଞ୍ଚଳରେ, ବିଭିନ୍ନ ଭାଷାଭାଷୀଙ୍କ ସମସ୍ୟା ରହିଛି । ମାତ୍ର ବର୍ତ୍ତମାନର ପ୍ରସ୍ତାବିତ ଓଡିଶାର ଉପାନ୍ତ ଅଞ୍ଚଳର ଲୋକମାନଙ୍କର ଆଦୌ ଦ୍ୱି-ଭାଷା ସମସ୍ୟା ନାହିଁ କହିଲେ ଚଳେ ।

ବି. ନିକଲସନ୍ ଏହି ବିତର୍କରେ ଅଂଶଗ୍ରହଣ କରି କହିଲେ ଅଟ୍‌ଲି ହେଉଛନ୍ତି ଓଡିଶାର ବାପ ପରି ଏବଂ ପ୍ରସ୍ତାବିତ ନୂତନ ଓଡିଶାର ଧରମ ବାପା । ଭାଷା ଏବଂ ସଂସ୍କୃତିର ସୁରକ୍ଷା ପାଇଁ ଓଡିଶା ପ୍ରଦେଶ ଗଠନ ପାଇଁ ବହୁତ କିଛି ବଳିଷ୍ଠ ଯୁକ୍ତି ଅଛି । ବଙ୍ଗଳାର ମେଦିନିପୁରରେ ମାତ୍ର ୪୦/୪୫ ବର୍ଷ ତଳେ ୫ ଲକ୍ଷ ଓଡିଆ ଥିଲା ବେଳେ ୧୯୩୧ ମସିହା ଜନ ସୁମାରୀରେ ସେମାନଙ୍କର ସଂଖ୍ୟା କମିଆସିଲା ମାତ୍ର ୪୫ ହଜାରକୁ । ମାତ୍ର ଏହି ପ୍ରସ୍ତାବିତ ପ୍ରଦେଶରେ ଓଡିଆ, ବଙ୍ଗାଳୀ, ଉର୍ଦ୍ଦୁଭାଷା, କନ୍ଧଭାଷା, ସଂସ୍କୃତ ଓ ଇଂରାଜୀ କିପରି ରହିବ ସେ ଏ ବିଷୟରେ ସନ୍ଦିହାନ୍ । ନିକଲ୍‌ସନ୍ ପୁଣି ଆଶଙ୍କା କରି କହିଲେ, ଆମେ ଯଦି ଓଡିଆଙ୍କ ସ୍ୱାର୍ଥରକ୍ଷା ପାଇଁ ସ୍ୱତନ୍ତ୍ର ଓଡିଶା ଗଠନ କରିବା, ତେବେ ସ୍ୱତନ୍ତ୍ର ରାଜ୍ୟ ପାଇଁ ତେଲୁଗୁ, କାନରା, ମରହଟ୍ଟା ଅଞ୍ଚଳ ପାଇଁ ଦାବି ଉଠିବ । ବର୍ତ୍ତମାନର ସ୍ଥିତି ଭାଷାଭିତ୍ତିକ ଆନ୍ଦୋଳନ ଫଳରେ ଆଘାତ ପାଇବ । ବହୁତ କିଛି ହୋମ୍‌ରୁଲ ମୁଭମେଣ୍ଟ ଏବଂ ଆୟାରଲ୍ୟାଣ୍ଡର ଜୀବାଣୁ ସାରା ଭାରତରେ ବିଚ୍ଛୁରିତ ହେବେ ।

ସାର୍ ରେଜିନାଲ୍ଡ୍ କ୍ରାଡକ୍ ବିରୋଧୀ ଭୂମିକା ନେଇ କହିଲେ କମିଶନର ଦ୍ୱାରା ଶାସିତ ହେବା ଅଞ୍ଚଳକୁ ରାଜ୍ୟପାଳ ଶାସନ କରିବା ଏକ ବିଡମ୍ବନା । ସେ ଆଶଙ୍କା କଲେ ସବୁଦିନ ପାଇଁ ବର୍ଷକୁ ୩୦ ଲକ୍ଷଟଙ୍କା ନିଅଣ୍ଟ ପଡିବ । ସେ ଉଦାହରଣ ଦେଇ କହିଲେ ଖାଲି ଓଡିଆମାନେ ଯେ ଓଡିଆଙ୍କ ସଙ୍ଗରେ ମିଶିକରି ରହିଲେ ସବୁ ଭଲ ହେବ, ଏହା ଭୁଲ୍ । ସମ୍ବଲପୁର ବାସିନ୍ଦାମାନେ ଦରଖାସ୍ତ ଦେଇ ମଧ୍ୟପ୍ରଦେଶରୁ ଆସି ଓଡିଶାରେ ମିଶିଲେ, ଏବେ ସେମାନେ ପସ୍ତେଉଛନ୍ତି । କେତେକ ଓଡିଆ କଟକରୁ ଆସି ସମ୍ବଲପୁରର ବ୍ରାହ୍ମଣମାନଙ୍କୁ ସେମାନଙ୍କ ଘରଡିହରୁ ଉଚ୍ଛେଦ କରୁଛନ୍ତି । କିଛି ନ୍ୟସ୍ତସ୍ୱାର୍ଥ ଓଡିଆ ସେମାନଙ୍କର ଭୋଗ ବିଳାସର କାମନାକୁ ଚରିତାର୍ଥ କରିବା ପାଇଁ ଓଡିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବାରେ ଲାଗିଛନ୍ତି । ସେ ପୁଣି କହିଲେ ଯେ ରାଜ୍ୟ ସୀମାପାରିରେ ଏପଟେ ଏବଂ ସେପଟେ ଦ୍ୱିଭାଷୀ ଯଥା ଓଡିଆ ଓ ତେଲୁଗୁମାନେ ଅଛନ୍ତି । ତେଣୁ ଏ ପ୍ରଦେଶ ଗଠନ କଲେ ଶତକଡା ୫୦ଭାଗ ଲୋକ ଅସନ୍ତୁଷ୍ଟ ହିଁ ହେବେ । ତେଣୁ ଓଡିଶାକୁ ଏକ ଚିଫ୍ କମିଶନରର ଶାସିତ ରାଜ୍ୟ କରିଦେଲେ ଲୋକମାନେ ନିଜକୁ ଭାଗ୍ୟବାନ ମନେକରିବେ । ସରକାର ଏପରି କାର୍ଯ୍ୟ କରିବା ଦରକାର ଯେପରି ତେଲୁଗୁମାନେ ଅସନ୍ତୁଷ୍ଟ ହେବେନାହିଁ । କ୍ରାଡକ୍ ପୁଣି କହିଲେ ଏହି ବିଲ୍‌ରେ ହାଇକୋର୍ଟ କିମ୍ବା ବିଶ୍ୱବିଦ୍ୟାଳୟର ପ୍ରସ୍ତାବ ନାହିଁ । ଯଦି ଓଡିଆମାନେ ନ୍ୟାୟ ଏବଂ ଶିକ୍ଷା ପାଇବା ପାଇଁ ଅନ୍ୟ ପ୍ରଦେଶକୁ ଯିବେ, ତେବେ ଏକ ନୂତନ ପ୍ରଦେଶ ଗଠନର ମୂଲ୍ୟକିଛି ନାହିଁ । କ୍ରାଡକ୍ କହିଲେ ଯେ ୬୦ଲକ୍ଷ ଓଡିଆଙ୍କ ପାଇଁ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କଲେ ୧୮୦ ଲକ୍ଷ ତେଲୁଗୁ ମଧ୍ୟ ନିଜର ରାଜ୍ୟ ପାଇଁ ଦାବି କରିପାରନ୍ତି । ଏତେ ବର୍ଷ ଧରି ଦୁଇ ଗୋଷ୍ଠୀ (Race) ଯଦି ଗୋଟିଏ ପ୍ରଦେଶରେ ରହି ନପାରିବେ ତେବେ ବ୍ରିଟିଶ୍ ଶାସନରେ ଥିବା ସମସ୍ତ ଗୋଷ୍ଠୀ ଏକ ଦେଶ ବୋଲି ପରିଚିତ ହେବେ କିପରି ? ପ୍ରଦେଶ ଗଠନ ଶାସନ ଦୃଷ୍ଟିରୁ ମୂର୍ଖାମୀ, ଆର୍ଥିକ ଦୃଷ୍ଟିରୁ ଅପବ୍ୟୟ ଏବଂ ରାଜନୈତିକ ଦୃଷ୍ଟିରୁ ଏକ ଛଳନା ।

ନକାରାତ୍ମକ ପ୍ରସ୍ତାବର ଉତ୍ତର ଦେବାକୁ ଯାଇ ମି.ବଟଲର୍, ଅର୍ଦ୍ଧସ୍ତନ ଭାରତ ସଚିବ କହିଲେ ଉଏଜ୍ ଉଡ୍ କହିବା ‘ଜଙ୍ଗଲବୁକ୍’ ଓଡିଶା ସଂବନ୍ଧୀୟ ନୁହେଁ । ଏହା ଯୋଧପୁର (ରାଜସ୍ଥାନ)ର ଆଦିବାସୀଙ୍କ କଥା । ଓଡିଶାର ଐତିହ୍ୟ ଅତି ପ୍ରାଚୀନ ଏବଂ ମହାନ୍ । ଏହା ହିନ୍ଦୁଧର୍ମ ଏବଂ ସଂସ୍କୃତିର ଏକ ପେଣ୍ଠସ୍ଥଳ । ଓଡିଶାର ପ୍ରାଚୀନ କାରୁକାର୍ଯ୍ୟ ବିମଣ୍ଡିତ ମନ୍ଦିରଗୁଡିକୁ ଉପାସନା ପାଇଁ ସାରା ଭାରତରୁ ଯାତ୍ରୀମାନେ ଏଠାକୁ ଆସନ୍ତି ।

ବିଖଣ୍ଡିତ ଓଡିଆମାନେ ଚାହିଁ ବସିଛନ୍ତି କେବେ ସେ ସୁଦିନ ଆସିବ, ସେମାନେ ଏକାଠି ହୋଇ ଗୋଟିଏ ପ୍ରଦେଶରେ ବସବାସ କରିବେ । ସେ (ବଟ୍‌ଲର)ଆଶା କରନ୍ତି ଓଡିଆମାନଙ୍କ ପଛରେ ଥିବା ଏହି ସଭ୍ୟତାର ମହତ୍ତ୍ୱ ମାନ୍ୟବର ସଭ୍ୟମାନେ ବୁଝିପାରୁଥିବେ ।

ଅଟ୍‌ଲିଙ୍କ ଉପରେ ନିକଲ୍‌ସନ୍‌ଙ୍କ ଟିପ୍‌ଣୀ ବିଷୟରେ ମତାମତ ଦେଇ ବଟ୍‌ଲର୍ କହିଲେ ଯେ ଅଟ୍‌ଲି ହିଁ ଓଡିଶା ଏବଂ ଓଡିଆମାନଙ୍କ ଉପରେ ବହୁତ କିଛି ଜାଣନ୍ତି । ଭବିଷ୍ୟତରେ ଶାସନକାର୍ଯ୍ୟ କିପରି ଭଲରେ ଚାଲିବ ସେ ବହୁତ କିଛି ଆଶାବାଦୀ । ବଟଲର୍ ପୁଣି କହିଲେ ଯେ ନୂତନ ଓଡିଶା ପ୍ରଦେଶ ପାଇଁ ୩୦ ଲକ୍ଷ ଟଙ୍କା ଲାଗିବ । ୧୫ ଲକ୍ଷ ଟଙ୍କା ଓଡିଶାରୁ ଆଦାୟ ହେବ ଏବଂ ବାକି ୧୫ଲକ୍ଷ ଟଙ୍କା କେନ୍ଦ୍ରରୁ ଭରଣା ହେବ ।

କର୍ଣ୍ଣେଲ୍ ଉଏଜ୍ ଉଡ୍ ଦ୍ୱିତୀୟ ଥର ପାଇଁ ବିତର୍କରେ ଭାଗନେଇ କହିଲେ ୧୦୦ଲକ୍ଷ ଲୋକଙ୍କ ପାଇଁ ୩୦ ଲକ୍ଷ ଟଙ୍କା ଖର୍ଚ୍ଚ କରିବା ଅପେକ୍ଷା କଟକ-ପାଟଣାର ୬୦୦ମାଇଲ୍ ଦୂରତ୍ୱର ସମାଧାନ ପାଇଁ ୩୦ ଲକ୍ଷ ଟଙ୍କାରୁ ଯଥେଷ୍ଟ କମ୍ ଖର୍ଚ୍ଚ କରି ଏରୋପ୍ଲେନ୍‌ରେ ନେବା ଆଣିବା କଲେ ବେଶ୍ ଭଲହୁଅନ୍ତା । ସେ ପୁଣି କହିଲେ ଓଡିଶାର ଆର୍ଥିକ ଅସଂଗତିକୁ ସମାଧାନ କରିବାପାଇଁ ପ୍ରସ୍ତାବିତ ଓଡିଶାର ଦକ୍ଷିଣମୁଣ୍ଡ ଅତ୍ୟନ୍ତ ଦକ୍ଷିଣକୁ ଯାଇ ମାନ୍ଦ୍ରାଜ ପ୍ରଦେଶର ତେଲୁଗୁବାସୀଙ୍କୁ ନୂତନ ଓଡିଶାରେ ସ୍ଥାନିତ କରାଯାଇଛି । ତେଣୁ ଏ ବିଷୟରେ ପୁନର୍ବିଚାର ହେଉ ।

ମେଜର ଅଟ୍‌ଲି ଉତ୍ତରରେ କହିଲେ ଯେ ଓଡିଆମାନେ ତାଙ୍କୁ ଯଥେଷ୍ଟ ସମାଲୋଚନା କରୁଛନ୍ତି । କାରଣ ସବୁ ଅତ୍ୟାଚାରିତ ଜାତି ପରି ସେମାନେ ତାଙ୍କର ପାରିପାର୍ଶ୍ୱିକ ଅଞ୍ଚଳ ଚାହୁଁଛନ୍ତି । ସେ ଅତି ବିନୟର ସହିତ ମାନ୍ୟବର ସଭ୍ୟମାନଙ୍କୁ ଅଧିକ ବିତର୍କ ନକରି ପ୍ରସ୍ତାବିତ ପ୍ରଦେଶ ଗଠନ ବିଲ୍‌କୁ ଗ୍ରହଣ କରିବାକୁ ନିବେଦନ କଲେ । ସଂଶୋଧନ ପ୍ରସ୍ତାବ କାଟ୍ ଖାଇଲା । ବଟ୍‌ଲର, ଆଉ ଜଣେ ସଭ୍ୟ ମୋରଗାନ୍ ଜୋନ୍‌ସଙ୍କୁ ଉତ୍ତରରେ କହିଲେ ଯେ ଜଏଣ୍ଟ ପାର୍ଲିଆମେଣ୍ଟାରୀ କମିଟି ଦେଇଥିବା ରିପୋର୍ଟ ଅନୁଯାୟୀ ସୀମା ବଳବତ୍ତର ରହିବ ଏବଂ ଆଉ କିଛି ଅଦଳ ବଦଳ ହେବନାହିଁ ।

ବ୍ରିଟିଶ୍ ଶାସନ ସମୟରେ ଓଡିଶା ହିଁ ଏକମାତ୍ର ପ୍ରଦେଶ, ଯାହାକି ଅନେକ ଦେଶପ୍ରେମୀ, ତ୍ୟାଗୀଙ୍କ ଦୀର୍ଘ ଅର୍ଦ୍ଧଶତାବ୍ଦୀର ସଂଗ୍ରାମ, ପ୍ରଚେଷ୍ଟା, ନିଷ୍ଠା ଓ ତ୍ୟାଗ ବଳରେ ପ୍ରଥମ ଓ ଶେଷଥର ପାଇଁ ଏକ ଭାଷାଭିତ୍ତିକ ପ୍ରଦେଶ ଗଠନ ହୋଇଥିଲା । ଅନ୍ୟ ଯେଉଁ ପ୍ରଦେଶ ଗଠନ ହୋଇଥିଲା, ତାହା ବ୍ରିଟିଶ୍‌ମାନେ ନିଜ ଶାସନର ସୁବିଧା ପାଇଁ କରିଥିଲେ ।

**ସହାୟକ ଗ୍ରନ୍ଥସୂଚୀ:**


- S.C Patro, The formation of Orissa Province,1979
- G. Dora, Thesaurus of Events & Dates of Orissa, 2003


ଏଲ-୧୮୪, ଫକୀରମୋହନ ନଗର, ବରମୁଣ୍ଡା
ଭୁବନେଶ୍ୱର-୭୫୧୦୦୩



# ଉତ୍କଳ ଦିବସର ଅନୁଚିନ୍ତା

**ନିଶିକାନ୍ତ ପାଢୀ**

'ଉତ୍କଳ' ଉତ୍କୃଷ୍ଟ କଳାର ଦେଶ । ଉତ୍କଳର କାରୁକାର୍ଯ୍ୟ, ପର୍ବପର୍ବାଣି, ପ୍ରଥା ଓ ପରମ୍ପରା ବିଶ୍ୱବିଦିତ । ଇତିହାସର ପୃଷ୍ଠା ଉତ୍କଳୀୟମାନଙ୍କର ବୀରତ୍ୱ, ତ୍ୟାଗ ଓ ଆଦର୍ଶରେ ଚର୍ଚ୍ଚିତ । ଅତୀତରେ ଆମର ଏହି ଉତ୍କଳ ଥିଲା ଛିନ୍ନମସ୍ତା । ଉତ୍କଳ ବୋଲି ଏକ ନିର୍ଦ୍ଦିଷ୍ଟ ଭୂଖଣ୍ଡ ନଥିଲା । ଉତ୍କଳୀୟମାନଙ୍କର ସ୍ୱତନ୍ତ୍ର ପରିଚୟ ବି ନ ଥିଲା । ୧୯୩୬ ମସିହା ଏପ୍ରିଲ୍ ମାସ ଥିଲା ଓଡିଆ ଜାତି ପାଇଁ ଏକ ସ୍ମରଣୀୟ ଦିବସ । ଏହି ଦିନ ଓଡିଶା ଏକ ସ୍ୱତନ୍ତ୍ର ପ୍ରଦେଶରେ ପରିଣତ ହେଲା । ଇତିମଧ୍ୟରେ ୧୯୩୬ରୁ ୨୦୧୬ ଦୀର୍ଘ ୮୦ ବର୍ଷ ବିତିଯାଇଛି । ବ୍ୟକ୍ତି ହେଉ କିମ୍ବା ଜାତି ହେଉ ଆତ୍ମ ପରିଚୟ ହିଁ ତା'ର ନିଜସ୍ୱ ଜୀବନର ମହାର୍ଘ ପୁଞ୍ଜି । ବିନା ଆତ୍ମ ପରିଚୟରେ କୌଣସି ଜାତି ନିଜକୁ ବିଶ୍ୱ ଦରବାରରେ ଉପସ୍ଥାପନ କରିପାରି ନ ଥାଏ । ଓଡିଆ ଜାତିର ଭାଷା, ସାହିତ୍ୟ ଓ ସଂସ୍କୃତି ହିଁ ଉତ୍କଳ ପ୍ରଦେଶର ଏକ ସ୍ୱତନ୍ତ୍ର ପରିଚୟ ବହନ କରିଛି । ବର୍ଷ ବର୍ଷ ଧରି ପରାଧୀନତାର ଶୃଙ୍ଖଳରେ ବନ୍ଧାହୋଇ ମଧ୍ୟ ଓଡିଶାବାସୀ ଜାବୁଡି ଧରିଛନ୍ତି ନିଜର ଭାଷା, ସାହିତ୍ୟ, ସଂସ୍କୃତି ତଥା ପରମ୍ପରାକୁ । ଯେତେ ଗରିବ ହେଲେ ମଧ୍ୟ ଉତ୍କଳର ଗୌରବୋଜ୍ଜ୍ୱଳ ଐତିହ୍ୟ ଏ ଜାତିର ଆତ୍ମ ଉପଲବଧି ଓ ଆତ୍ମ ପରିଚୟର ସଂଜ୍ଞା ବହନ କରିଆସୁଛି । ଉତ୍କଳ ଦିବସର ମହାନତା ଆଜି ଓଡିଆ ଜାତିର ଇତିହାସ ଓ ଓଡିଆ ଜାତିର ପ୍ରାଚୀନ ଗୌରବ ଓ ଆଭିଜାତ୍ୟକୁ ମନେପକାଇ ଦେବା ସଙ୍ଗେ ସଙ୍ଗେ ଆମର ସ୍ୱାଭିମାନ ଜାଗ୍ରତ କରିବା ପାଇଁ ଅଜସ୍ର ପ୍ରେରଣା ଯୋଗାଇଥାଏ । ଉତ୍କଳ ଦିବସ ହିଁ ପ୍ରତ୍ୟେକ ଓଡିଆର ଆତ୍ମବିଶ୍ୱାସର ମାପକାଠି । ଯେଉଁ ମହାନ୍ ଓଡିଆମାନଙ୍କ ତ୍ୟାଗ, ତପସ୍ୟା ଓ ସାଧନାର ଫଳସ୍ୱରୁପ ଓଡିଶା ଆଜି ଏକ ସ୍ୱତନ୍ତ୍ର ପରିଚୟ ପାଇପାରିଛି, ସେମାନଙ୍କୁ ଆଜିର ଏହି ପବିତ୍ର ଦିବସରେ ଭକ୍ତିପୂତ ପ୍ରଣାମ । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପରେ ଭାରତବର୍ଷ ସ୍ୱାଧୀନ ହୋଇଛି । ପରାଧୀନତାର ଶୃଙ୍ଖଳରୁ ମୁକ୍ତ ହୋଇଛି ଉତ୍କଳ । ଆଜି ଅବଶ୍ୟ ଅନେକ ବର୍ଷ ବିତିଗଲାଣି । ଓଡିଶାରେ ଅନେକ ପ୍ରଗତିମୂଳକ କାର୍ଯ୍ୟ ହୋଇଛି । ଶିଳ୍ପ, ଶିକ୍ଷା, ସ୍ୱାସ୍ଥ୍ୟ, କଳା, ସଂସ୍କୃତି ତଥା ପର୍ଯ୍ୟଟନ କ୍ଷେତ୍ରରେ ଓଡିଆ ଅନେକ ବାଟ ଆଗେଇଯାଇଛି । ତଥାପି ଓଡିଶା ଏକ ଗରିବ ରାଜ୍ୟର ପରିଚୟ ବହନ କରିଆସୁଛି । ଛିନ୍ନ ବିଛିନ୍ନ ଉତ୍କଳର ଏକତ୍ରିକରଣ ପାଇଁ ଗଠନ କରାଯାଇଥିଲା ଉତ୍କଳ ସମ୍ମିଳନୀ । ଏତିକି ବେଳେ ମଧୁସୂଦନ ଦାସ ଲେଖିଥିଲେ–

ଏହି ସମ୍ମିଳନୀ ଜାତିପ୍ରାଣ ବିନ୍ଦୁ<br>
କୋଟି ପ୍ରାଣବିନ୍ଦୁ ଧରେ<br>
ତୋର ପ୍ରାଣବିନ୍ଦୁ ମିଶାଇ ଦେ ଭାଇ<br>
ଡେଇଁ ପଡି ସିନ୍ଧୁ ନୀରେ । (ମଧୁସୂଦନ ଦାସ)

ଗୋପବନ୍ଧୁ ମଧ କବିତାରେ ଲେଖିଥିଲେ –

ମିଶୁ ମୋର ଦେହ ଏ ଦେଶ ମାଟିରେ<br>
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ<br>
ଦେଶର ସ୍ୱରାଜ୍ୟ ପଥେ ଯେତେ ଗାଡ<br>
ପୁରୁ ତହିଁ ପଡି ମୋର ମାଂସ ହାଡ ।

ପ୍ରତି ରକ୍ତବିନ୍ଦୁରେ ଦେଶପ୍ରେମର ଭାବ ଜାଗ୍ରତ କରାଏ । ମଧୁସୂଦନ ଦାସ, ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ, କୃଷ୍ଣଚନ୍ଦ୍ର ଗଜପତି, ବ୍ୟାସକବି ଫକୀରମୋହନ, ଗୋପବନ୍ଧୁ ଦାସ, ପଣ୍ଡିତ

ଗୋଦାବରୀଶ ମିଶ୍ର, କର୍ମବୀର ଗୌରୀ ଶଙ୍କର, ସ୍ୱଭାବ କବି ଗଙ୍ଗାଧର ମେହେର ତଥା ଉତ୍କଳ କେଶରୀ ମହତାବଙ୍କର ନିଷ୍ଠାପର ସାଧନା ତଥା ଉଦ୍ୟମରେ ଉତ୍କଳ ଆଜି ତା'ର ଏକ ସ୍ୱତନ୍ତ୍ର ସ୍ଥିତି ପାଇପାରିଛି । ଆଜି ବି ଆମକୁ ଉଦ୍‌ବୁଦ୍ଧ କରାଏ ସେହି କାଳଜୟୀ ପଦ –

ମାତୃଭୂମି ମାତୃଭାଷାରେ ମମତା
ଯା ହୃଦେ ଜନମି ନାହିଁ
ତାକୁ ଯଦି ଜ୍ଞାନୀ ଗଣରେ ଗଣିବା
ଅଜ୍ଞାନୀ ରହିବେ କାହିଁ ।
(ଗଙ୍ଗାଧର ମେହେର)

ଆଜି ଅନେକ ଓଡିଆ ଭାଷାଭାଷୀ ଅଞ୍ଚଳ ଆନ୍ଧ୍ର, ମଧ୍ୟପ୍ରଦେଶ, ପଶ୍ଚିମବଙ୍ଗ ମଧ୍ୟରେ ମିଶିରହିଛି, ଯାହାକୁ ଏକତ୍ରିକରଣ କରାଯାଇ ପାରୁନାହିଁ । ଫଳରେ ପୂର୍ଣ୍ଣାଙ୍ଗ ଉତ୍କଳ ଗଠନର ସ୍ୱପ୍ନ ସତେ ଯେପରି ଆଜି ଅଧୁରା ରହିଯାଇଛି । ତଥାପି ଆଜି ପ୍ରବାସୀ ଓଡିଆମାନେ ଓଡିଆ ଭାଷା ଓ ସଂସ୍କୃତିକୁ ନିଜର ବୋଲି ଭାବିବା ସଙ୍ଗେ ସଙ୍ଗେ ନିଜକୁ ଓଡିଆ ବୋଲି ଭାବି ଗର୍ବ କରନ୍ତି ।

ସାରା ବିଶ୍ୱର ମାନଚିତ୍ରରେ ଉତ୍କଳ ସୃଷ୍ଟି କରିଛି ଏକ ସ୍ୱତନ୍ତ୍ର ପରିଚୟ । ଇତିହାସର ଉତ୍କଳ, କଳିଙ୍ଗ, କଙ୍ଗୋଦ ତୋଷଳ, କାନ୍ତାର, ଉଡ୍ର, ଓଡ୍ର ରାଜ୍ୟ ହିଁ ଆଜିର ଓଡିଶା । ଓଡିଶାର ମାଟି ତଳେ ଭରି ରହିଛି ପ୍ରଚୁର ଖଣିଜ ସମ୍ପଦ । ଓଡିଆମାନେ ଉନ୍ନତ ବୁଦ୍ଧି, କୌଶଳ, ମନପ୍ରାଣ ଓ ସାହସ ଦେଇ ଏହି ଖଣିଜ ସଂପଦର ସୁବିନିଯୋଗ କରିପାରିଲେ ବିଶ୍ୱଦରବାରରେ ଓଡିଶା ଏକ ଉନ୍ନତ ରାଜ୍ୟଭାବେ ପରିଗଣିତ ହୋଇପାରିବ ।

ଆଜି ଓଡିଶାରେ ଯେଉଁ ସମସ୍ୟା ଉପୁଜିଛି ସେଥିରେ ଭାଷା ସମସ୍ୟା ହେଉଛି ମୁଖ୍ୟ । ଓଡିଆ ଭାଷା ଶାସ୍ତ୍ରୀୟ ମାନ୍ୟତା ପାଇଛି ସତ, ହେଲେ ଭାଷା ପ୍ରତି ଓଡିଆମାନଙ୍କର ଆନ୍ତରିକତାର ଅଭାବବୋଧ ପରିଲକ୍ଷିତ ହେଉଛି । ଦିନକୁ ଦିନ ଓଡିଆ ଭାଷାର ବ୍ୟବହାର ସଙ୍କୁଚିତ ହେବାରେ ଲାଗିଛି । ଆମ ଖାଦ୍ୟପେୟ ତଥା ସାମାଜିକ ଚଳଣିରେ ମଧ୍ୟ ପରିବର୍ତ୍ତନ ଆସିଛି । ଆମେ ସମସ୍ତେ ଯେପରି ଓଡିଆଟିଏର ପରିଚୟ ଦେଇ ବଞ୍ଚିବାକୁ ଆଉ ଚାହୁଁ ନାହୁଁ । ଆମର ଭାଷା, ସଂସ୍କୃତି ଓ ପରମ୍ପରା ସବୁ ଯେପରି କାଳର କରାଳ ଗତିରେ ଲୀନ ହେବାକୁ ବସିଲାଣି । ଆମର ଦେହ ଦେଶୀ ଓ ମନ ସବୁ ବିଦେଶୀ ପାଲଟିଗଲାଣି । ଆମ ପିଲାମାନଙ୍କର ମୁହଁରୁ ଇଂଲିଶ ଭାଷା ଦିପଦ ଶୁଣି ଆମେ ଯେପରି କୃତ୍ୟକୃତ୍ୟ ହେଉଛୁ ଓଡିଆ ଭାଷାର ଅନ୍ଧାରୀ ଭବିଷ୍ୟତ ବିଷୟରେ ଥରେ ବି ଚିନ୍ତା କରିବାକୁ ସୁଯୋଗ ପାଉନାହୁଁ । ହେଲେ ବିଳପି ଉଠୁଛି ଆଜି ମା ଉତ୍କଳର ଆତ୍ମା । ଅଶ୍ରୁଳ ଆଖିରେ ସେ ଚାହିଁ ରହିଛି ଉତ୍କଳୀୟମାନଙ୍କର ଦୟା ଆଉ ଅନୁକମ୍ପାକୁ । ଆଜି ସମୟ ଆସିଛି ଚିନ୍ତା କରିବାର । ଉତ୍କଳର ଭାଷା, ସଂସ୍କୃତି ତଥା ପରମ୍ପରାକୁ ସବୁଦିନ ବଞ୍ଚାଇ ରଖିବାକୁ ହେଲେ ପ୍ରତ୍ୟେକ ଓଡିଆକୁ ମନ ଓ ହୃଦୟରେ ଏକ ପରିବର୍ତ୍ତନ ଆଣିବାକୁ ହେବ । ଭାଷା, ସଂସ୍କୃତି ଓ ପରମ୍ପରା ପ୍ରତି ଗଭୀର ଆନ୍ତରିକତା ତଥା ଶ୍ରଦ୍ଧା ରଖିବାକୁ ହେବ । ସ୍ୱାର୍ଥ, ଲୋଭ ଓ ମୋହଠାରୁ ଦୂରରେ ରହି ଉତ୍କଳ ମାଆର ସେବାରେ ଜୀବନକୁ ଉତ୍ସର୍ଗ କରିବାକୁ ହେବ । ଏହି ହିଁ ଆଜିର ଏହି ପବିତ୍ର ଦିବସରେ ପ୍ରତ୍ୟେକ ଓଡିଆର ହୋଇଉଠୁ ଏକ ଆଦର୍ଶ ଅନୁଚିନ୍ତା, ଯେଉଁ ଅନୁଚିନ୍ତା ଗଢିତୋଳୁ ଏକ ନବ ଉତ୍କଳ ।

ଜୟ ମା' ଉତ୍କଳ ଜନନୀ
ତୁମ ଚରଣେ ଶତ ପ୍ରଣାମ ।

୩୯୦/୨୪୪୮, ଓ୍ୱାଟରସିଟି
ଲକ୍ଷ୍ମୀସାଗର, ଭୁବନେଶ୍ୱର



# କବି ଡକ୍ଟର ସଚ୍ଚିଦାନନ୍ଦ ରାଉତରାୟ

**ଜବାହରଲାଲ ସୁବୁଦ୍ଧି**

ଆଧୁନିକ ଓଡ଼ିଆ ସାହିତ୍ୟରେ ବରେଣ୍ୟ କବି ଡକ୍ଟର ସଚ୍ଚିଦାନନ୍ଦ ରାଉତରାୟ ଅବିଭକ୍ତ ପୁରୀ ଜିଲ୍ଲା ଅନ୍ତର୍ଗତ ଖୋର୍ଦ୍ଧା ନିକଟସ୍ଥ ଗୁରୁଜଙ୍ଗ ଗ୍ରାମରେ ଏକ ଆଭିଜାତ୍ୟ ପରିବାରରେ ଜନ୍ମ ଗ୍ରହଣ କରିଥିଲେ ୧୯୧୬ ମସିହା ମଇମାସ ୧୩ ତାରିଖ ଦିନ । ଛାତ୍ରାବସ୍ଥାରେ ପ୍ରତ୍ୟକ୍ଷ ରାଜନୀତି ସହିତ ଜଡ଼ିତ ଥିଲେ ହେଁ, ପରବର୍ତ୍ତୀ କାଳରେ ରାଜନୀତି ସହିତ ତାଙ୍କର କୌଣସି ସମ୍ପର୍କ ନଥିଲା । ସେଥିପାଇଁ ତାଙ୍କ କାବ୍ୟ କବିତାରେ ରାଜନୈତିକ ନିଷ୍ପାର ଅଭାବ ପରିଲକ୍ଷିତ ହୋଇଥାଏ – ଏପରିକି ବିରୋଧାଭାଷ ମଧ୍ୟ । କବି ସଚ୍ଚିଦାନନ୍ଦ ରାଉତରାୟ ସଦାସର୍ବଦା ମନେ କରିଛନ୍ତି ଯେ କବିର ପରିଚୟ ହେଉଛି ସେ କବି ! ଓଡ଼ିଆ କାବ୍ୟ ସାହିତ୍ୟରେ ପ୍ରଗତିବାଦୀ ଆନ୍ଦୋଳନର ସେ ଅନ୍ୟତମ ପ୍ରବକ୍ତା ଭାବରେ ସ୍ୱୀକୃତିଲାଭ କରିଅଛନ୍ତି । ଜାତୀୟ ଓ ଆନ୍ତର୍ଜାତିକ ସାହିତ୍ୟର ଗତିଧାରା ସହିତ ସଂଯୋଗ ସ୍ଥାପନ କରି ଓଡ଼ିଆ ସାହିତ୍ୟରେ ବୈପ୍ଳବିକ ପରିବର୍ତ୍ତନ ଆଣିବାରେ ସେ ହେଉଛନ୍ତି ଜଣେ ଅନନ୍ୟ ସାରସ୍ୱତ ସାଧକ ।

ଏହି ମହାନ୍ କବି ଖୋର୍ଦ୍ଧାସ୍ଥ ବି.ଜେ.ବି ହାଇସ୍କୁଲର ଛାତ୍ର ଥିଲାବେଳେ ସେ କେବଳ ନିଜକୁ ସ୍ୱାଧୀନତା ସଂଗ୍ରାମରେ ସାମିଲ କରିନଥିଲେ, ପରନ୍ତୁ ନିଜର ସୃଜନଶୀଳ ପ୍ରତିଭାକୁ ସେହି ଦିଗରେ ଅଗ୍ରଗାମୀ କରାଉଥିଲେ । ତାଙ୍କୁ ଯେତେବେଳେ ଏଗାର ବର୍ଷ ବୟସ, ସେ କବିତା ରଚନା ଆରମ୍ଭ କଲେ । ଶ୍ରୀ ରାଉତରାୟଙ୍କ ପ୍ରଥମ କବିତା ସଂଗ୍ରହ ହେଉଛି 'ପାଥେୟ' । ତାଙ୍କର କବିତାଗୁଡ଼ିକ ମଧ୍ୟରେ ଅଧିକାଂଶ ଥିଲା ବିପ୍ଳବର ସ୍ୱର । ପରବର୍ତ୍ତୀ କାଳରେ ବ୍ରିଟିଶ ସରକାର ସିନା ନିଷିଦ୍ଧ ଘୋଷଣା କରିଦେଲେ, ମାତ୍ର ଶ୍ରୀ ରାଉତରାୟଙ୍କୁ ଜଣେ କବି ଭାବେ ପ୍ରତିଭାତ କରିବା ପାଇଁ ଯେଉଁ ଉପାଦାନର ଆବଶ୍ୟକତା ଥିଲା, ତାହା ମିଳି ଯାଇଥିଲା । ଦୀର୍ଘ ଅର୍ଦ୍ଧଶତାବ୍ଦୀ ଧରି କବିତାର ବାଙ୍ମୟତାକୁ ବିଭିନ୍ନ ରୂପରେ ଚିତ୍ରିତ କରି ପାଠକୀୟ ଚେତନାକୁ ଉଦ୍‌ବୁଦ୍ଧ କରିବାର ଦାୟିତ୍ୱ ପୋଷଣ କରିଥିବା ବ୍ୟକ୍ତିତ୍ୱ ହେଉଛନ୍ତି ଡକ୍ଟର ସଚ୍ଚି ରାଉତରାୟ । କବି ଶ୍ରୀଯୁକ୍ତ ରାଉତରାୟଙ୍କ ସମସାମୟିକ କବିମାନେ ଯେତେବେଳେ କବିତାର ଗତାନୁଗତିକ ଧାରାରେ ଲେଖିଚାଲିଥିଲେ ସେତେବେଳେ ସଚ୍ଚିରାଉତରାୟ ନିଜ କବିତାର ସ୍ୱରକୁ ଲୋକାଭିମୁଖୀ କରିବା ପାଇଁ ସତତ ଚେଷ୍ଟିତ ଥିଲେ । ସାହିତ୍ୟର ବିଭିନ୍ନ ବିଭାଗ ମଧ୍ୟରେ କେବଳ କବିତା କାହିଁକି ଗଳ୍ପ, ଉପନ୍ୟାସ, ପ୍ରବନ୍ଧ, ସମାଲୋଚନା ଓ ଆଲୋଚନା ମଧ୍ୟ ତାଙ୍କ ସାରସ୍ୱତ ସାଧନାର ଗୋଟିଏ ଗୋଟିଏ ଅବିସ୍ମରଣୀୟ କ୍ଷେତ୍ର ଥିଲା । କବି ଶ୍ରୀ ରାଉତରାୟଙ୍କ କାବ୍ୟ କବିତାରେ ସାଧାରଣ ଲୋକମାନଙ୍କ କଥା, ଖଟିଖିଆ, ମୂଲିଆ, ମଜ୍ଦୁର ଓ ନିଃସହାୟ ଲୋକଙ୍କ ଚିତ୍ର 'ଛୋଟ ମୋର ଗାଁଟି' ଠାରୁ ଆରମ୍ଭ କରି ଢେଙ୍କାନାଳର ବାଜିରାଉତ–୧୯୪୧, ପଲ୍ଲିଶ୍ରୀ – ୧୯୪୨ ପାଣ୍ଡୁଲିପି–୧୯୪୬, ମଶାଣିର ଫୁଲ – ୧୯୪୬, କବିତା–୧୯୬୨, ଭାନୁମତିର ଦେଶ, ଅଭିଯାନ, କବିତା –୧୯୭୭, କବିତା–୧୯୮୭, କବିତା – ୧୯୯୦ ପ୍ରଭୃତି କାବ୍ୟ କବିତାରେ ଦେଖିବାକୁ ମିଳେ । ସମାଲୋଚକମାନଙ୍କ ମତରେ କବି ଶ୍ରୀ ରାଉତରାୟଙ୍କ ଅନେକ କାବ୍ୟକବିତା ଗୁଣାତ୍ମକ ଦୃଷ୍ଟିକୋଣରୁ ଓଡ଼ିଆ କବିତାର ଗୋଟିଏ ଗୋଟିଏ ଶ୍ରେଷ୍ଠ ସମ୍ପଦ ।

ଓଡ଼ିଆ ସାହିତ୍ୟରେ ଅନେକ ସାହିତ୍ୟିକଙ୍କ ରଚନାରେ କାଳ ସଚେତନତା ଦେଖିବାକୁ ମିଳି ନଥିବା ବେଳେ କବି ଶ୍ରୀ ରାଉତରାୟଙ୍କ ରଚନାରେ କାଳ ସଚେତନତା ଦେଖିବାକୁ ମିଳିଥାଏ । ଉଦାହରଣ ସ୍ୱରୂପ ତାଙ୍କର ବାଜିରାଉତ କବିତା ମାଧ୍ୟମରେ ଢେଙ୍କାନାଳର ଗୋଟିଏ ସାଧାରଣ ନାଉରିଆ ବାଳକ ବାଜିରାଉତ ଅତ୍ୟାଚାର, ଶୋଷଣ ଓ ନିଷ୍ପେଷଣ–ପ୍ରପୀଡ଼ିତ ସମାଜର ଯଥାର୍ଥ ପ୍ରତିନିଧିତ୍ୱ କରିବାରେ ସମର୍ଥ

ହୋଇଅଛି । ବାଜିରାଉତ ହେଉଛି ତାଙ୍କର ଏକ କାଳଜୟୀ କାବ୍ୟ ସୃଷ୍ଟି । ଓଡ଼ିଶାର ଜନମାନସରେ ବାଜିରାଉତ କବିତା ମାଧ୍ୟମରେ କବିଙ୍କର ବୈପ୍ଳବିକ ଚିନ୍ତାଧାରାର ଚିତ୍ର ଓ ଛୋଟ ମୋର ଗାଆଁଟି କବିତା ସବୁରି ହୃଦୟରେ ସ୍ଥାନିତ ହୋଇ କବି ଶ୍ରୀ ରାଉତରାୟଙ୍କ ଛବି ଓ ଲେଖନୀ ବାରମ୍ବାର ପ୍ରତିଧ୍ୱନି ସୃଷ୍ଟି କରୁଛି । ଏତଦ୍‌ବ୍ୟତୀତ କବିଙ୍କ ପାଣ୍ଡୁଲିପି ଏ ଯୁଗର ଏକ ଉଲ୍ଲେଖଯୋଗ୍ୟ ସଂକଳନ । ଏଥିରେ ବହୁ କବିତା ରୋମାଂଟିକ୍ କାବ୍ୟଧାରାର ପ୍ରେମ, ପ୍ରକୃତି, ଜାତୀୟତା ଭାବ ଥିଲେ ମଧ୍ୟ ଏଥିରେ ବିପ୍ଳବ ଓ ଜାଗରଣ ବାର୍ତ୍ତା ସହିତ କବି ଓଡ଼ିଆ କବିତା ରାଜ୍ୟରେ ପ୍ରଥମ କରି ରୋମାଂଟିକ୍ ଭାବ କଳ୍ପନାର ଆରୋପ କରିଛନ୍ତି । ଶୈଳୀ ଓ ବିଷୟବସ୍ତୁ ଦୃଷ୍ଟିରୁ ପୂର୍ବ ପ୍ରଚଳିତ କାବ୍ୟରୀତିକୁ ଭାଙ୍ଗିଦେଇ ପାଣ୍ଡୁଲିପି ଏକ ନୂତନ ପରିବର୍ତ୍ତିତ ଯୁଗ ଚେତନାର ବାର୍ତ୍ତାବହ ରୂପେ ଆଲୋକ ସ୍ତମ୍ଭ ଭଳି ସ୍ୱାଧୀନତା ପରବର୍ତ୍ତୀ କାବ୍ୟ ଚେତନାର ମାର୍ଗ ନିର୍ଦ୍ଦେଶ କରିଥିଲେ । ଉପମା ଓ ଚିତ୍ରକଳ୍ପ ପ୍ରୟୋଗରେ ଏବଂ ସମାଜ ଓ ଜୀବନ ପ୍ରତି ଏକ ବ୍ୟଙ୍ଗାତ୍ମକ ଦୃଷ୍ଟିକୋଣର ପରିପ୍ରକାଶରେ କବି ଶ୍ରୀ ରାଉତରାୟଙ୍କ କବି-ଦୃଷ୍ଟି ଓ ସମାଜ ଚେତନା ସୁପ୍ରତିଷ୍ଠିତ ହୋଇ ଓଡ଼ିଆ କବିତାର ଗତି ପରିବର୍ତ୍ତନରେ ସମର୍ଥ ହେଲା । ଓଡ଼ିଆ କାବ୍ୟ କବିତାରେ କବି ସର୍ବଦା ସଚ୍ଚିଦାନନ୍ଦଙ୍କର ସୃଷ୍ଟି ଯୁଗ ଚେତନାର ନୂତନ ଦୃଷ୍ଟିଭଙ୍ଗୀ ଆଣିପାରିଛି ତଥା ଏକ ଚେତନାଶୀଳ ଓ ବୌଦ୍ଧିକ ଭାଷାରୀତି, ଆଧୁନିକ ଜୀବନ ପ୍ରତି ବ୍ୟଙ୍ଗାତ୍ମକ ଦୃଷ୍ଟିଭଙ୍ଗୀ, ନାନାବିଧ ପ୍ରତୀକ ଓ ଚିତ୍ରକଳ୍ପର ପ୍ରୟୋଗଦ୍ୱାରା କବି ଶ୍ରୀ ରାଉତରାୟଙ୍କ କାବ୍ୟ ସାଧନା ଆଧୁନିକ କାଳରେ ମଧ୍ୟ ପ୍ରଭାବଶାଳୀ ହୋଇପାରିଛି ।

ଡକ୍ଟର ସଚ୍ଚିଦାନନ୍ଦ ରାଉତରାୟ ଏକାଧାରରେ ଜଣେ ଲୋକପ୍ରିୟ କବି, ସାର୍ଥକ ଗାଳ୍ପିକ, ଔପନ୍ୟାସିକ, ପ୍ରଭାବଶାଳୀ ପ୍ରାବନ୍ଧିକ ଓ ସମାଲୋଚକ ଥିଲେ ମଧ୍ୟ ତାଙ୍କର ପରିଚିତ ହେଉଛି ଓଡ଼ିଆ କାବ୍ୟ ସାହିତ୍ୟରେ ପ୍ରଗତିବାଦୀ ଆନ୍ଦୋଳନର ସେ ଅନ୍ୟତମ ପ୍ରବକ୍ତା ଭାବରେ ସର୍ବଜନ ସ୍ୱୀକୃତି ଲାଭ କରି ଅଛନ୍ତି । କବି ନିଜର ସାହିତ୍ୟିକ ଅବଦାନ ପାଇଁ ଅନେକ ସର୍ବଭାରତୀୟ ସମ୍ମାନରେ ଭୂଷିତ ହୋଇଅଛନ୍ତି । ତାଙ୍କର କାଳଜୟୀ ସୃଷ୍ଟି ବାଜି ରାଉତ କାବ୍ୟ ବିଭିନ୍ନ ଭାଷାରେ ଅନୁମୋଦିତ ଓ ଚର୍ଚ୍ଚିତ । ହରୀନ୍ଦ୍ର ନାଥ ଚଟ୍ଟୋପାଧ୍ୟାୟ ତାଙ୍କର ପୁସ୍ତକ ବାଜିରାଉତକୁ ଇଂରାଜୀରେ ଅନୁବାଦ କରିବା ପରେ ଏହା ଭାରତୀୟ ଭାଷା ସାହିତ୍ୟର ଏକ ଅମୂଲ୍ୟ ସମ୍ପଦ ହୋଇ ରହିଛି । ତାଙ୍କର ଅନ୍ୟାନ୍ୟ ରଚନା ମଧ୍ୟରେ ମଶାଣିର ଫୁଲ ଏବଂ ଅନ୍ୟାନ୍ୟ ଗଳ୍ପ ଓଡ଼ିଆ ସାହିତ୍ୟର ଅମୂଲ୍ୟ ସଂପଦ । ତାଙ୍କର ସ୍ୱାଧୀନତା ପରବର୍ତ୍ତୀ ରଚନାବଳୀରେ ଦୁର୍ବୋଦ୍ଧତା ଯେ ନାହିଁ ତାହା ନୁହେଁ, କିନ୍ତୁ କବିର ବ୍ୟାପକ ଦୃଷ୍ଟିକୋଣ, ଗଭୀର ସମାଜ ଚେତନା, ବୌଦ୍ଧିକ ଅନ୍ତର୍ଦୃଷ୍ଟି ଏବଂ ସର୍ବୋପରି କାବ୍ୟିକ ଅନୁଭୂତିର ବିଶାଳ ପରିସର ସହିତ ବ୍ୟକ୍ତି-ସ୍ୱାତନ୍ତ୍ର୍ୟ-ପ୍ରତିଷ୍ଠାର ଗୌରବ ପ୍ରତି ଦୃଷ୍ଟି ଦେଲେ ଅନେକ ଅଭାବ-ଅଭିଯୋଗ କେତେକ ପରିମାଣରେ ଅପସାରିତ ହୋଇଥାଏ ।

ନିଜର ସାହିତ୍ୟିକ ଅବଦାନ ପାଇଁ ସଚ୍ଚିଦାନନ୍ଦ ରାଉତରାୟ ପାଇଛନ୍ତି ବହୁ ସର୍ବଭାରତୀୟ ସମ୍ମାନ ଓ ସ୍ୱୀକୃତି । ସେଗୁଡ଼ିକ ମଧ୍ୟରେ କେନ୍ଦ୍ର ସାହିତ୍ୟ ଏକାଡେମୀ ସମ୍ମାନ-୧୯୬୪, ପଦ୍ମଶ୍ରୀ ଉପାଧି-୧୯୬୨, ସୋଭିଏତ ଦେଶ ନେହେରୁ ପୁରସ୍କାର-୧୯୬୫, ଜ୍ଞାନପୀଠ ପୁରସ୍କାର-୧୯୮୬ ଏବଂ ମର୍ଯ୍ୟାଦାଜନକ କେନ୍ଦ୍ର ସାହିତ୍ୟ ଏକାଡେମୀ ଫେଲୋ-୧୯୯୬ ପ୍ରଭୃତି ଉଲ୍ଲେଖଯୋଗ୍ୟ । ତାଙ୍କର ଉଚ୍ଚକୋଟିର ସାହିତ୍ୟ ସର୍ଜନାକୁ ସମ୍ମାନ ଜଣାଇ ଆନ୍ଧ୍ର ବିଶ୍ୱବିଦ୍ୟାଳୟ ଏବଂ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ କବି ଡକ୍ଟର ସଚ୍ଚିଦାନନ୍ଦ ରାଉତରାୟଙ୍କୁ ସମ୍ମାନଜନକ ଡି.ଲିଟ୍ ଉପାଧିରେ ଭୂଷିତ କରିଅଛନ୍ତି । ସେ ଛାତ୍ରଜୀବନରୁ ଭାରତର ସ୍ୱାଧୀନତା ଆନ୍ଦୋଳନ, ଗଡ଼ଜାତ ପ୍ରଜା-ଆନ୍ଦୋଳନ ଏବଂ ବାମପନ୍ଥୀ ନେତୃତ୍ୱର ପରିଚାଳିତ ଚାଷୀ-ଆନ୍ଦୋଳନରେ ଅଂଶ ଗ୍ରହଣ କରି ଯଶସ୍ୱୀ ହୋଇଛନ୍ତି । ତାଙ୍କ ଲିଖିତ କାବ୍ୟ କବିତାରେ ଏହି ଆନ୍ଦୋଳନର ପ୍ରତିଫଳନ ନିଚ୍ଛକ ଓ ସ୍ୱାଭାବିକ । ବୈପ୍ଳବିକ ଅନୁଚିନ୍ତାମୂଳକ ରକ୍ତଶିଖା-୧୯୩୯ ଏବଂ ଉଠ ଜାଗ ଭୋକିବନ୍ଦୀ-୧୯୪୩ କବିତା ପୁସ୍ତକ ଦ୍ୱୟର ଅଗ୍ନିଗର୍ଭ ଆଭିମୁଖ୍ୟ ପାଇଁ ଔପନିବେଶିକ ଇଂରେଜ ଶାସକମାନେ ଉକ୍ତ ଗ୍ରନ୍ଥଦ୍ୱୟଙ୍କୁ ସେତେବେଳେ ବାଜ୍ୟାପ୍ତ କରିଦେଇ ଥିଲେ ।

୨୦୦୪ ମସିହା ଅଗଷ୍ଟ ୨୧ ତାରିଖରେ ଏହି କାଳଜୟୀ ସ୍ରଷ୍ଟାଙ୍କର ଦେହାନ୍ତ ହେଲା । ମାତ୍ର ନିଜର ସୃଷ୍ଟି ସମ୍ଭାର ଏବଂ ସାମଗ୍ରିକ ସୃଜନ କର୍ମ ଯୋଗୁ ସେ ଏବେବି ଓଡ଼ିଆ ଜନମାନସରେ ଜୀବନ୍ତ ତଥା ଅମର ହୋଇ ରହିଛନ୍ତି ଓ ଚନ୍ଦ୍ରସୂର୍ଯ୍ୟଙ୍କ ଆତଜାତ ହେବା ପର୍ଯ୍ୟନ୍ତ ସେ ଏ ଜାତିର ଚିରସ୍ମରଣୀୟ ହୋଇ ରହିବେ । ଏହି ମହାନ୍ ସାରସ୍ୱତ ସାଧକ ଆମର ଚିର ନମସ୍ୟ ।

ଅବସରପ୍ରାପ୍ତ ପ୍ରଧାନ ଶିକ୍ଷକ
ବଡ଼ତୋଟା, ଜଟଣୀ, ଖୋରଧା

# ସଙ୍କଟମୋଚନ ଜୟ ହନୁମାନ

କୁଞ୍ଜ ବିହାରୀ ସାହୁ

ଉତ୍କଳୀୟ ପରମ୍ପରାରେ ବିଷୁବ ସଂକ୍ରାନ୍ତି ଓଡିଆ ନବବର୍ଷର ଅୟମାରମ୍ଭ । ପ୍ରତି ଉତ୍କଳୀୟର ଭକ୍ତିମୟ ନିବେଦନ । ଏହି ପବିତ୍ର ବିଷୁବ ସଂକ୍ରାନ୍ତିରେ ମହାପ୍ରଭୁ ହନୁମାନଙ୍କର ଜନ୍ମ । ଶ୍ରୀ ହନୁମାନ ମଙ୍ଗଳରୂପୀ, ପରମଦୟାଳୁ, କରୁଣାର ଅମୃତଝର । ବିଶେଷତଃ ଭଗବାନ ଶ୍ରୀରାମଙ୍କର ପରମ ଭକ୍ତ ରୂପେ ଦିଗବିଦିଗ ବିଦିତ ।



ପୁରାଣ ଶାସ୍ତ୍ରାନୁଯାୟୀ ଶ୍ରୀ ହନୁମାନ ବଜ୍ରସମ ମଜଭୁତ ଶରୀରର ଆଶୀର୍ବାଦ ପ୍ରାପ୍ତି ହୋଇଥିଲେ । ତେଣୁ ତାଙ୍କୁ ବଜରଙ୍ଗବାଲୀ ଭାବେ ଉତ୍ତର ଭାରତରେ ସ୍ମରଣ କରାଯାଇଥାଏ ।

ହନୁମାନ ଏହି ସିଦ୍ଧି ମାତା ସୀତାଙ୍କଠାରୁ ପ୍ରାପ୍ତ ହୋଇଥିଲେ । ଲଙ୍କା ରାଜ୍ୟରେ ପ୍ରବେଶ ପୂର୍ବରୁ ଶହେ ଯୋଜନ ଚଉଡା ସମୁଦ୍ରକୁ ଅତିକ୍ରମିବା ସମୟରେ ନାଗମାତା ସୁରସାଙ୍କ ସହ ବଳ-ବୁଦ୍ଧିର ପ୍ରତିଦ୍ୱନ୍ଦ୍ୱିତା ହୋଇଥିଲା । ସୁରସା ଶହେ ଯୋଜନ ଆଁ କଲେ ବି ଶ୍ରୀ ହନୁମାନ ବୁଦ୍ଧିର ପରାକାଷ୍ଠା ପ୍ରଦର୍ଶନ କରି ଅଣିମା ସିଦ୍ଧି ବଳରେ ମାଛଟିଏ ହୋଇଗଲେ । ସୁରସାର ପାଟି ଭିତରେ ପ୍ରବେଶ କରି କର୍ଣ୍ଣଗହ୍ୱର ଦେଇ ପ୍ରତ୍ୟାବର୍ତ୍ତନ କଲେ । ନିମିଷକରେ ଚକିତ ହୋଇପଡିଲେ ସୁରସା । ନିଜର ମହାନତା ପୂର୍ବକ ଆଶୀର୍ବାଦ ଦେଇ କହିଲେ- ହେ ମହାବୀର ! ଦେବତାମାନେ ତୁମର ବଳବୁଦ୍ଧି ପରୀକ୍ଷା କରିବା ପାଇଁ ମୋତେ ପ୍ରେରଣ କରିଥିଲେ । ତୁମେ ବାସ୍ତବିକ ନିର୍ଭୀକ, ବଳଶାଳୀ, ପ୍ରଖର ବୁଦ୍ଧିମାନ । ତୁମେ ଅଚିରେ ଭଗବାନ ଶ୍ରୀରାମଙ୍କର ସକଳ କାର୍ଯ୍ୟ ପୂର୍ଣ୍ଣ କରିଯାଅ । ସେହି ସିଦ୍ଧିର ଅନୁରୂପ ହେଉଛି ମାଛି ବେଶ ଧାରଣ । ରାତ୍ରିରେ ମାଛି ପରି ଛୋଟ ରୂପ ଧରି ଲଙ୍କାରେ ପ୍ରବେଶ କରିଥିଲେ ।

ହନୁମାନ ସାଧାରଣ ବାନର ନ ଥିଲେ । ସେ ପ୍ରଜ୍ଞାନ ଦାତା ରାମଦୂତ । ସେ ଜ୍ଞାନୀ ଅଗାଧ ପାଣ୍ଡିତ୍ୟର ଅଧିକାରୀ, ତନ୍ତ୍ରଜ୍ଞ, ଶୈବାଚାର୍ଯ୍ୟ, ଶ୍ରେଷ୍ଠ ସେବକ, ଅତୁଳିତ ବଳଶାଳୀ, ସ୍ଥିତପ୍ରଜ୍ଞ, ବିଚାରବନ୍ତ, ସହିଷ୍ଣୁ, ପରୋପକାରୀ । ଗୋସ୍ୱାମୀ ତୁଳସୀ ଦାସ ଶ୍ରୀରାମ ଚରିତ ମାନସରେ ହନୁମାନଙ୍କୁ ସମସ୍ତ ଶକ୍ତିର ଅଧିକାରୀ ବୋଲି ମଣିଛନ୍ତି । ଲଙ୍କାରୁ ଫେରିଛନ୍ତି ଶ୍ରୀହନୁମାନ ଏବଂ ପ୍ରଭୁ ରାମଚନ୍ଦ୍ରଙ୍କୁ ସାକ୍ଷାତ କରିବା ପରେ ଦୁହିଁଙ୍କ ଭିତରେ କଥୋପକଥନ ହୋଇଛି, ଯେଉଁଥିରେ ସମର୍ପଣ ଭାବରେ ଛିଟା ସହଜରେ ବାରି ହୋଇପଡିଛି । ପ୍ରଭୁ ଶ୍ରୀ ରାମଚନ୍ଦ୍ର ପଚାରୁଛନ୍ତି-

କୁହ ହନୁମାନ, ରାବଣ ଦ୍ୱାରା ସୁରକ୍ଷିତ ଲଙ୍କା ଦୁର୍ଗକୁ କିଭଳି ଭାବରେ ଦଗ୍ଧ କଲେ । ଏହାଶୁଣି ପ୍ରଭୁ ପ୍ରସନ୍ନ ବୋଲି ହନୁମାନ ଜ୍ଞାତ ହେଲେ । ନିର୍ଭୀକ ମନୋବାକ୍ୟରେ ବଖାଣିଲେ– ମୁଁ ବାନର ଜାତି ଡାଳରୁ ଡାଳ ଡେଇଁ ସହସ୍ର ଯୋଜନ ସିନ୍ଧୁକୁ ଲଂଘନ କରି ଲଙ୍କାପୁରରେ ପ୍ରବେଶ କଲି । ଲଙ୍କା ଦହନ ଏବଂ ସମସ୍ତ ରାକ୍ଷସ–ରାକ୍ଷସୀଗଣଙ୍କୁ ନିଧନ କଲି । କେବଳ ତୁମର ଆଶୀର୍ବାଦ ଓ ତୁମର ପ୍ରତାପ ହେ ନାଥ । ଏଥିରୁ ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କ ପ୍ରତି ହନୁମାନଙ୍କ ଗଭୀର ସମର୍ପଣ ଭାବର ସୂଚନା ମିଳେ । ଏହି ସମର୍ପଣ ଭାବ କେବଳ ପୌରାଣିକ ଆଖ୍ୟାୟିକାରେ ସୀମାବଦ୍ଧ ନୁହେଁ । ସାମ୍ପ୍ରତିକ ସାମାଜିକ ଚଳଣିରେ ମଧ୍ୟ ଏ ପ୍ରକାର ଭାବନାର ସୂଚନା ମିଳିଛି, ଯେଉଁଠି ଭକ୍ତ ଭଗବାନଙ୍କର ମିଳନ ଘଟିଛି । ଯେତେବଡ ଆସନ ଓ ମର୍ଯ୍ୟାଦା ନେଇ ମନୁଷ୍ୟ ଜୀବନ ଧାରଣ କଲେ ବି ଅହଙ୍କାରଶୂନ୍ୟ ମମତ୍ୱବୋଧରେ ସମର୍ପଣ ଭାବ ରଖିଲେ ସମାଜରେ ପ୍ରେମ ଓ ଶାନ୍ତି ପ୍ରକଟିତ ହୋଇପାରିବ ।

ହନୁମାନ ପ୍ରଭୁ ରାମଚନ୍ଦ୍ର ଓ ମା' ସୀତାକୁ ନେଇ ପ୍ରତ୍ୟକ୍ଷ ଦେଖିଥିବା ରାମାୟଣର ସମସ୍ତ ଘଟଣାକୁ ପ୍ରଥମେ ନିଜ ନଖରେ ପର୍ବତର ଖୋଲମାନଙ୍କରେ ଲେଖିଥିଲେ । ଏହା ଥିଲା ବାସ୍ତବିକ ରାମାୟଣ । ବାଲ୍ମିକୀ ଏହି ରାମାୟଣକୁ ପଠନ କରିଥିଲେ । ବାଲ୍ମିକୀ ଭାବିଥିଲେ ହନୁମାନଙ୍କ ଦ୍ୱାରା ଲିଖିତ ରାମାୟଣ କାଳେ ଅଧିକ ଗ୍ରହଣୀୟ ହେବ, ସେଥିପାଇଁ ଚିନ୍ତାଗ୍ରସ୍ତ ହୋଇପଡିଲେ । ହେଲେ ବିଦ୍ୱାନ ହନୁମାନଙ୍କୁ ଏ କଥା ଅଛପା ରହିଲା ନାହିଁ । ତେଣୁ ଅନ୍ୟ ମନରେ ଦୁଃଖ ନ ଦେବା ଆଶାରେ ନିଜ ଲିଖିତ ରାମାୟଣକୁ ସମୁଦ୍ର ଜଳରେ ବିସର୍ଜନ କରିଦେଲେ । ନିଜର ମହନୀୟତା ପ୍ରଦର୍ଶନ କରିଥିଲେ । ମାତ୍ର ଅଭିଳାଷପୂର୍ଣ୍ଣ ଆଶାରେ ରାମାୟଣ ପାଠ ସମୟରେ ହନୁମାନ ଅଦୃଷ୍ଟ ରୂପରେ ଆସି ରାମାୟଣକୁ ଶୁଣିଥାନ୍ତି ବୋଲି ଲୋକ ବିଶ୍ୱାସ ରହିଛି ।

ରାମଚରିତ ମାନସରେ ମର୍ଯ୍ୟାଦାପୁରୁଷ ଶ୍ରୀରାମ ହନୁମାନଙ୍କ ବିରାଟ ପ୍ରଶସ୍ତି ଗାନ କରିଛନ୍ତି । ହନୁମାନଙ୍କ ପ୍ରତ୍ୟେକ କାର୍ଯ୍ୟରେ ସଫଳତା କାମନା କରିଛନ୍ତି । ଭକ୍ତି ଓ ଭକ୍ତର ଏକ ଆଦର୍ଶ ନମୁନା ବାଢିଛନ୍ତି । ସୁଗ୍ରୀବ ହନୁମାନଙ୍କୁ କହିଛନ୍ତି– ହେ ବାନର ଶ୍ରେଷ୍ଠ, ଜଳ, ସ୍ଥଳ, ଆକାଶ ସବୁଠି ତୁମ ଗତି ରହିଛି । ଅସୁର, ଗନ୍ଧର୍ବ, ନାଗ, ଦେବତା ଏପରିକି ପ୍ରକୃତି ଉପରେ ତୁମର ଅଗାଧ ପାଣ୍ଡିତ୍ୟ ଅଛି । ଏମିତି ଏକ ଅଭୟବାଣୀ ଶୁଣିଲା ପରେ ଶ୍ରୀରାମ ନିଜର ନାମାଙ୍କିତ ମୁଦ୍ରିକାକୁ ହନୁମାନଙ୍କୁ ଅର୍ପଣ କରିଛନ୍ତି । ଆଶୀର୍ବାଦ ଦେଇ କହିଛନ୍ତି– ତୁମେ ହିଁ ମୋ ପ୍ରାଣପ୍ରିୟା ସୀତାଙ୍କୁ ବୁଝେଇପାରିବ । ତୁମେ ଲଙ୍କା ଗମନ କର ଓ ନିଜ କର୍ତ୍ତବ୍ୟକୁ ସୁବିନିଯୋଗ କରି ଶୀଘ୍ର ଫେରିଆସ ।

ହନୁମାନ ନବଗ୍ରହଙ୍କଠାରୁ ଶକ୍ତିପ୍ରାପ୍ତ ହୋଇଥିବାରୁ ସେ ନବଗ୍ରହ ସହ ତୁଳନୀୟ । ସେ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କଠାରୁ ଅଜୟ, ଅମର, ଚିରଂଜୀବୀ ବର ଲାଭ କରିଛନ୍ତି । ନିଜ ଇଛା ମୁତାବକ ସ୍ଥାନକୁ ଗତି କରିବା ସହ ଗ୍ରହ ଦୋଷକୁ ମଧ୍ୟ ଖଣ୍ଡନ କରିପାରିବାର ସାମର୍ଥ୍ୟ ରଖିପାରିଛନ୍ତି । ସମସ୍ତ ପ୍ରକାର ପୁଷ୍ପରାଜିରେ ସେ ପୂଜିତ ହୋଇଥାନ୍ତି । ପ୍ରତି ମଙ୍ଗଳବାର ଓ ଶନିବାରରେ ଏକନିଷ୍ଠ ଭବେ ପୂଜନ କଲେ ସେ ଦୋଷ ଖଣ୍ଡନରେ ସହାୟକ ହୋଇ ଆଶିଷ ବାଢି ଦିଅନ୍ତି । ଦେବୀ ଓ ଦେବ ରୂପରେ ପୂଜିତ ହନୁମାନ ସକଳ ପୂଜାର ଆଧାର । ଏଭଳି ସମନ୍ୱୟ କେବଳ ହନୁମାନଙ୍କଠାରେ ହିଁ ପ୍ରାପ୍ତି ହୋଇଥାଏ । ନିତ୍ୟନୈମିତ୍ତିକ ଶ୍ରୀ ହନୁମାନ ଚାଳିଶା ପାଠ କଲେ ଅସାଧ୍ୟ ସାଧନ ହୋଇପାରେ ବୋଲି ବିଶ୍ୱାସ ରହିଛି । ଯେଉଁଠି ୧୦୮ଟି ହନୁମାନ ବିଗ୍ରହ ରହିଛି, ସେଠାରେ ମାତ୍ର ଏକ ଥର ଚାଳିଶା ମନ–ପ୍ରାଣ–ହୃଦୟରେ ପାଠ କଲେ ୧୦୮ ଥର ଜପିବା ସହ ତୁଳନୀୟ ବୋଲି ପଣ୍ଡିତମାନେ ମତପୋଷଣ କରିଥାନ୍ତି ।

ବିଭିନ୍ନ ସ୍ଥାନରେ ହନୁମାନଙ୍କ ନାମକରଣରେ ବିଭିନ୍ନତା ଥିଲେ ମଧ୍ୟ ହନୁମାନ ଯେ ଦୁଃଖନାଶକ, ସଙ୍କଟମୋଚନ ଏହା ସ୍ୱୀକାର୍ଯ୍ୟ । କେବଳ ଏକନିଷ୍ଠ ସାଧନା ଓ ଭକ୍ତିଭରା ପୂଜନର ଆବଶ୍ୟକତା ରହିଛି ।

ଏଲ୍.ଆଇ.ଜି–୧୫, ନୟାପଲ୍ଲୀ
ବ୍ରିଟ୍ କଲୋନୀ, ଭୁବନେଶ୍ୱର–୭୫୧୦୧୨



# ସ୍ମାର୍ଟ ସିଟି : ସହରାଞ୍ଚଳ ପରିବର୍ତ୍ତନର ପରିକଳ୍ପନା

**କ୍ଷୀରୋଦ ପ୍ରସାଦ ମହାନ୍ତି**

ସ୍ମାର୍ଟ ସିଟିର ସଂଜ୍ଞା ନିରୁପଣ କରିବା ପାଇଁ କୌଣସି ଏକ ନିର୍ଦ୍ଦିଷ୍ଟ ମାଧ୍ୟମ ନାହିଁ ସତ, ହେଲେ ଏଥିପାଇଁ ଅନେକ ମାଧ୍ୟମ ରହିଛି । ଏପରିକି ଏହାର କୌଣସି ସାଧାରଣ ସଂଜ୍ଞା ନାହିଁ । ଆମେରିକାର ବୈଜ୍ଞାନିକ ଓ ବୈଷୟିକ ସୂଚନା



କାର୍ଯ୍ୟାଳୟଙ୍କ ମତରେ ସ୍ମାର୍ଟ ସିଟି ହେଉଛି ଏକ ସହର ଯାହା ଜଟିଳ ଭିତ୍ତିଭୂମିର ସର୍ତ୍ତାବଳୀକୁ ଅନୁବେକ୍ଷଣ କରିବା ସହ ସମନ୍ୱିତ କରେ । ଏହାର ସମ୍ବଳଗୁଡ଼ିକୁ ଅଧିକ ଅଭିବୃଦ୍ଧିମୁଖୀ କରେ । ରକ୍ଷଣାବେକ୍ଷଣ କାର୍ଯ୍ୟକଳାପ ଯୋଜନାକୁ ତ୍ୱରାନ୍ୱିତ କରେ ଏବଂ ସେବା ପ୍ରଦାନ ସମୟରେ ସୁରକ୍ଷା ବିଷୟକୁ ନିୟନ୍ତ୍ରଣ କରେ । ସେହିପରି ବ୍ରିଟେନର ବ୍ୟବସାୟିକ ନବୀନ ପ୍ରକ୍ରିୟା ଏବଂ ଦକ୍ଷତା ବିଭାଗ ସଂଜ୍ଞା ଅନୁସାରେ ଏହା ହେଉଛି, ଏକ ପ୍ରକ୍ରିୟା ବା ପର୍ଯ୍ୟାୟ ଧାରା ଯଦ୍ଦ୍ୱାରା ସହରଗୁଡ଼ିକ ଅଧିକ ବାସୋପଯୋଗୀ ହୋଇଥାଏ ଏବଂ ନବ ଆହ୍ୱାନର ମୁକାବିଲା ଦିଗରେ ସକ୍ଷମ ହୋଇଥାଏ । ଏଣୁ ଉଭୟ ସରକାରୀ ଓ ଘରୋଇ ସେବା ପ୍ରଦାନ ନିମନ୍ତେ ଏହା ସମସ୍ତ କ୍ଷମତା ହାସଲ କରିଥାଏ ଏବଂ ଲୋକମାନଙ୍କ ଆବଶ୍ୟକତାକୁ ପୂରଣ କରିବା ଦିଗରେ ଚେଷ୍ଟିତ ହୁଏ । ବ୍ୟାପକଭାବେ କହିବାକୁ ଗଲେ କାର୍ଯ୍ୟକାରିତା ଦୃଷ୍ଟିକୋଣରୁ ଏକ ସ୍ମାର୍ଟ ସିଟି ଉନ୍ନତ ମାନର ଜୀବନ ସହନଶୀଳ ବିକାଶ ଓ ସମ୍ବଳର ଉନ୍ନତ ପରିଚାଳନା ଦିଗରେ ସକ୍ଷମ ହୁଏ ।

ସ୍ମାର୍ଟ ମିଶନ – ୨୦୦୫ ମସିହାରେ ଆରମ୍ଭ ହୋଇଥିବା ଜବାହରଲାଲ ନେହେରୁ ଜାତୀୟ ସହରାଞ୍ଚଳ ନବୀକରଣ ମିଶନ ଯାହା ଏକ ଦଶନ୍ଧି ପରେ ଅର୍ଥାତ୍ ୨୦୧୫ରେ ବିଭିନ୍ନ କାର୍ଯ୍ୟକ୍ରମ ଯଥା ସ୍ମାର୍ଟ ସିଟି ଓ ଅମୃତ (Atal Mission for Rejuvenation and Urban Transformation) ର ନାମ ନେଇଛି । ସ୍ମାର୍ଟ ସିଟି ମିଶନ ଜରିଆରେ ୨୦୧୫-୧୬ ରୁ ୨୦୧୯-୨୦ ଯାଏଁ ଅର୍ଥାତ୍ ଆସନ୍ତା ୫ ବର୍ଷ ମଧ୍ୟରେ ୧୦୦ଟି ସହରକୁ ସ୍ମାର୍ଟ ସିଟିରେ ପରିଣତ କରିବାକୁ ବ୍ୟବସ୍ଥା ହୋଇଛି । ସହରାଞ୍ଚଳ ବିକାଶ ମନ୍ତ୍ରଣାଳୟ (Ministry of Urban Development)ର ମୂଲ୍ୟାୟନ ଅନୁସାରେ ଏହାର ସଂଖ୍ୟା ଆହୁରି ପରିବର୍ଦ୍ଧିତ

କରାଯିବ ବୋଲି କୁହାଯାଇଛି । ତେଣୁ ସ୍ମାର୍ଟ ସିଟିର ମତ ଓ କୌଶଳ ସର୍ବଦା ପରିବର୍ତ୍ତନଶୀଳ ଅଟେ । ଏହି ମିଶନ ସ୍ମାର୍ଟ ସିଟି ସହରର ବିଭିନ୍ନ ସ୍ମାର୍ଟ ସମାଧାନ ଜରିଆରେ କୌଣସି ଏକ ସହରକୁ ସ୍ମାର୍ଟ କରିଥାଏ । ସ୍ମାର୍ଟ ସମାଧାନ ଅନ୍ତର୍ଭୁକ୍ତ ବିଷୟଗୁଡିକ ହେଉଛି – ଇ ଗଭର୍ଣ୍ଣାନ୍ସ ଓ ଇଲେକ୍ଟ୍ରୋନିକ ଜରିଆରେ ସେବା ପ୍ରଦାନ, ଭିଡିଓ ଜରିଆରେ ଅପରାଧ ନିୟନ୍ତ୍ରଣ, ଜଳ ଯୋଗାଣ ଓ ପରିଚାଳନା ସକାଶେ ସ୍ମାର୍ଟ ମିଟରର ବ୍ୟବହାର, ସ୍ମାର୍ଟ ପାର୍କିଂ ଓ ଗୁଇନ୍ଦାଭିତ୍ତିକ ଟ୍ରାଫିକ୍ ପରିଚାଳନା ବ୍ୟବସ୍ଥା । ଏହା ବ୍ୟତୀତ ଆହୁରି ସ୍ମାର୍ଟ ବ୍ୟବସ୍ଥା ମଧ୍ୟ ରହିଛି । ସ୍ମାର୍ଟ ସମାଧାନଗୁଡିକୁ ପ୍ରୟୋଗ କରିବା ଦ୍ୱାରା ସହରଗୁଡିକ ପ୍ରଯୁକ୍ତି, ସୂଚନା ଏବଂ ତଥ୍ୟଗୁଡିକ ବ୍ୟବହାର ପାଇଁ ସକ୍ଷମ ହୁଅନ୍ତି ଓ ଭିତ୍ତିଭୂମି ତଥା ସେବା କ୍ଷେତ୍ରକୁ ଉନ୍ନତ କରାନ୍ତି । ସ୍ମାର୍ଟ ବ୍ୟବସ୍ଥା ମଧ୍ୟ ସହରର ଉନ୍ନତିକରଣ ଓ ପୁନଃ ବିକାଶ ପାଇଁ ପ୍ରଚେଷ୍ଟା କରେ । ଏହା ବ୍ୟତୀତ କ୍ରମବର୍ଦ୍ଧିଷ୍ଣୁ ସହରାଞ୍ଚଳ ଜନସଂଖ୍ୟାକୁ ଥଇଥାନ କରିବା ପାଇଁ ନୂଆ ଇଲାକା ଗ୍ରୀନଫିଲ୍ଡ ଆଦି ସହର ଚାରିପାଖରେ ବିକାଶ ଲାଭ କରେ । ଏହା ମଧ୍ୟ ଦେଖାଯାଏ ଯେ, ସ୍ମାର୍ଟ ସିଟିର ବିକାଶ ସକାଶେ ପ୍ରଯୁଜ୍ୟ କୌଶଳ ଓ ଅଧିକ ନିଯୁକ୍ତି ସୃଷ୍ଟି କରେ ଓ ଗରିବମାନେ ଅଧିକ ଉପକୃତ ହୁଅନ୍ତି । ଏ କଥାକୁ ମଧ୍ୟ ସମସ୍ତେ ବୁଝନ୍ତି ଯେ, ସ୍ମାର୍ଟ ସିଟିଗୁଡିକ ଅନ୍ତର୍ଭୁକ୍ତିମୂଳକ ।

ସ୍ମାର୍ଟ ସିଟି ଚୟନର ପ୍ରଥମ ପର୍ଯ୍ୟାୟରେ କେନ୍ଦ୍ର ସରକାର ୨୦ଟି ସ୍ମାର୍ଟ ସିଟିର ନାମ ଘୋଷଣା କରିଛନ୍ତି । କେନ୍ଦ୍ର ସହରାଞ୍ଚଳ ବିକାଶ ମନ୍ତ୍ରୀ ଭେଙ୍କୟା ନାଇଡୁଙ୍କ ଘୋଷଣା ତାଲିକାର ଶୀର୍ଷରେ ରହିଛି ଆମ ରାଜଧାନୀ ଭୁବନେଶ୍ୱର । ଅନ୍ୟ ତାଲିକାଭୁକ୍ତ ସହରଗୁଡିକ ହେଲା ୨-ପୁନେ, ୩-ଜୟପୁର, ୪-କୋଚିଂ, ୫-ଅହମ୍ମଦବାଦ, ୬-ଜବଲପୁର, ୭-ବିଶାଖାପାଟଣା, ୮-ସୋଲାପୁର, ୯-ଦେବାଙ୍ଗିରି, ୧୦- ଇନ୍ଦୋର, ୧୧-ନୂଆଦିଲ୍ଲୀ, ମ୍ୟୁନିସପାଲ କର୍ପୋରେସନ, ୧୨-ସୁରଟ, ୧୩-କୋଏମ୍ବାଟୁର, ୧୪-କାକିନଡା, ୧୫-ବେଲଗାଭି (କର୍ଣ୍ଣାଟକ), ୧୬-ଉଦୟପୁର (ରାଜସ୍ଥାନ), ୧୭-ଇନ୍ଦୋର, ୧୮-ଚେନ୍ନାଇ, ୧୯-ଲୁଧିଆନା (ପଞ୍ଜାବ) ଓ ୨୦-ଭୋପାଳ (ମଧ୍ୟପ୍ରଦେଶ) । ପ୍ରଥମ ଦଫାରେ ଯେଉଁ ୨୦ଟି ସହରକୁ ସ୍ମାର୍ଟ ସିଟି ଭାବେ ଚୟନ କରାଯିବ, ସେଥିପାଇଁ କେନ୍ଦ୍ର ସରକାର ରାଜ୍ୟମାନଙ୍କଠାରୁ ମୋଟ ୯୮ଟି ସହରର ପ୍ରସ୍ତାବ ପାଇଥିଲେ । ସହରର ଜନସଂଖ୍ୟା, ରାଜ୍ୟ ବା କ୍ଷେତ୍ରଫଳ ପ୍ରସଙ୍ଗକୁ ଭିତ୍ତି କରା ନଯାଇ ସହରର ଭିତ୍ତିଭୂମିଠାରୁ ଆରମ୍ଭ କରି କେତେ ଅଧିକ ସାଧନ ଉପଲବ୍ଧ ହୋଇପାରିବ ତାହାକୁ ଯୋଗ୍ୟତାର ମାପଦଣ୍ଡ ଭାବେ ଗ୍ରହଣ କରାଯାଇ ତାଲିକା ପ୍ରସ୍ତୁତ କରାଯାଇଥିଲା । ତେଣୁ ରାଜଧାନୀ ଭୁବନେଶ୍ୱର ଏହି ତାଲିକାର ଶୀର୍ଷରେ ରହିବା ବାସ୍ତବିକ ପ୍ରଶଂସନୀୟ ଓ ଓଡିଶାବାସୀଙ୍କ ପାଇଁ ଏକ ବଡ ଖୁସିର ଖବର ।

ସ୍ମାର୍ଟ ସିଟି ରେସ୍ ତାଲିକାରୁ ବାଦ୍ ପଡିଥିବା ସହରଗୁଡିକୁ ଆଗାମୀ ୨ ବର୍ଷ ମଧ୍ୟରେ ସ୍ମାର୍ଟ ସିଟି ଯୋଜନାରେ ସାମିଲ କରାଯିବାର ବ୍ୟବସ୍ଥା ହୋଇଛି । ସେଥିପାଇଁ ଏହି ପ୍ରକଳ୍ପରେ ମୋଟ ୩ ଲକ୍ଷ କୋଟି ଟଙ୍କା ଖର୍ଚ୍ଚ ହେବ । ପ୍ରଥମ ୨୦ଟି ସହର ପାଇଁ ୫ ବର୍ଷରେ ମୋଟ ୫୦ ହଜାର ୮୦୨ କୋଟି ଟଙ୍କା ବ୍ୟୟ କରାଯିବ ବୋଲି ମନ୍ତ୍ରୀ ମହୋଦୟ ସୂଚନା ଦେଇଛନ୍ତି ।

ସ୍ମାର୍ଟ ଭୁବନେଶ୍ୱର ଗଢି ତୋଳିବା ପାଇଁ ଆଗାମୀ ୫ ବର୍ଷ ମଧ୍ୟରେ ଉଭୟ କେନ୍ଦ୍ର ଓ ରାଜ୍ୟ ସରକାର ମିଶି ୧ ହଜାର କୋଟି ଟଙ୍କା ବିନିଯୋଗ କରିବେ । କେନ୍ଦ୍ର ସରକାରଙ୍କ ଅନୁଦାନ ୧୦୦ କୋଟି ଟଙ୍କା ସାଙ୍ଗକୁ ରାଜ୍ୟ ସରକାରଙ୍କ ୧୦୦ କୋଟି ଟଙ୍କା ମିଶି ବର୍ଷକୁ ମୋଟ ୨୦୦ କୋଟି ଟଙ୍କା ଖର୍ଚ୍ଚ ହେବ । ଏହା ବ୍ୟତୀତ ପିପିଓ, ଏସିଆନ ଡେଭଲପମେଣ୍ଟ ବ୍ୟାଙ୍କ ଓ ବିଶ୍ୱବ୍ୟାଙ୍କ ଜରିଆରେ ପ୍ରାୟ ୩୫୦୦ କୋଟି ବ୍ୟୟ କରାଯାଇ ଭୁବନେଶ୍ୱରକୁ ନୂଆ ରୂପ ଦିଆଯିବ ।

ଭୁବନେଶ୍ୱରକୁ ସ୍ମାର୍ଟ ସିଟି କରିବା ପାଇଁ ମୋଟ ୪୫୩୭.୧୫ କୋଟି ଟଙ୍କାର ଏକ ଯୋଜନା ଭୁବନେଶ୍ୱର ମହାନଗର ନିଗମ (ବି.ଏମ.ସି) କରିଥିଲା । ଯେଉଁଥିରେ ୧୦ ବର୍ଷିଆ ଭିଜନ ସହ ୫ ବର୍ଷିଆ ଆକ୍ସନ ପ୍ଲାନ୍ ଥିଲା । ଏଥିରେ ମଡେଲ ଅଞ୍ଚଳଭାବେ ଭୁବନେଶ୍ୱର ଟାଉନ୍ ସେଣ୍ଟର ଡିଷ୍ଟ୍ରିକ୍ଟ (ମାଷ୍ଟର କ୍ୟାଣ୍ଟିନ ଓ ପାର୍ଶ୍ୱବର୍ତ୍ତୀ ଇଲାକା) ର ଆଧୁନିକୀକରଣ ଓ ଉନ୍ନୟନ ପାଇଁ ୪୦୯୫ କୋଟି ଟଙ୍କା, ଯାତ୍ରୀ ପରିବହନ,

ଟ୍ରାଫିକ୍, ବର୍ଜ୍ୟବସ୍ତୁ ପରିଚାଳନା ଆଦି ବ୍ୟବସ୍ଥାର ଆଧୁନିକୀକରଣ ପାଇଁ ୪୪୨.୧୫ କୋଟି ଟଙ୍କାର ପ୍ରସ୍ତାବ ଥିଲା ଓ ଏହି ରିପୋର୍ଟକୁ ବି.ଏମ.ସି ଗତ ଡିସେମ୍ବର ୧୫ରେ କେନ୍ଦ୍ର ସରକାରଙ୍କ ନିକଟରେ ଦାଖଲ କରିଥିଲା ।

ସ୍ମାର୍ଟ ସିଟି ପରିକଳ୍ପନା ଏକ ସ୍ୱାଗତଯୋଗ୍ୟ ପଦକ୍ଷେପ ହୋଇଥିବାରୁ ଏହାକୁ ବାସ୍ତବରେ କାର୍ଯ୍ୟକାରୀ କରାଗଲେ ଭୁବନେଶ୍ୱରର ଏକ ନୂଆ ରୂପ ପ୍ରକାଶ ପାଇବ । ପରିବହନ ବ୍ୟବସ୍ଥା ସଜାଡ଼ି ହେବ, ମନ ମୁତାବକ ପରିବହନ ସେବା ମିଳି ପାରିବ । ଗାଡ଼ିମଟର ସହ ପଥଚାରୀ ଓ ସାଇକେଲ ଚାଳକଙ୍କ ପାଇଁ ରାସ୍ତାରେ ସୁବିଧା ମିଳିବ, ସଂସ୍କୃତି, କଳା ଓ ସୌନ୍ଦର୍ଯ୍ୟକରଣରେ ଉନ୍ନତି ଘଟିବ, ଶିକ୍ଷା ଓ ଅବସର ବିନୋଦନ ବ୍ୟବସ୍ଥାର ଉନ୍ନତି ହେବ, ପିଲାଙ୍କୁ ସୁହାଇଲା ଭଳି ସୁନ୍ଦର ପାର୍କ ଓ ଖୋଲାସ୍ଥାନମାନ ଗଢ଼ି ଉଠିବ, ପର୍ଯ୍ୟଟନର ଉନ୍ନତି ଘଟିବ, ସ୍ଥାନୀୟ ବ୍ୟବସାୟର ଉନ୍ନତି ହେବ ଏବଂ ପୁଞ୍ଜି ନିବେଶ ପାଇଁ ଅଧିକରୁ ଅଧିକ ବ୍ୟବସାୟ ପ୍ରତିଷ୍ଠାନମାନେ ମଧ୍ୟ ପ୍ରୋତ୍ସାହିତ ହେବେ । ଏହିପରି ଅନେକ କିଛି ବିକାଶ ହେବ ଯାହାକୁ ଭୁବନେଶ୍ୱର ସହରବାସୀ ତଥା ଓଡ଼ିଶାର ଲୋକେ ଆଗାମୀ ଦିନରେ ନିଶ୍ଚିତ ରୂପେ ଏହାର ଉପଲବ୍ଧି କରିପାରିବେ ।

**ସହାୟକ ଗ୍ରନ୍ଥସୂଚୀ**


1. R. K. Bhasin - Smart Cities, keeping them secure and disaster free - Yojana, September 15, p64.
2. R.B. Bhagat - Smart City - Concept and Strategies - Yojana September 15 p5.
୩. ପ୍ରମେୟ – ସ୍ମାର୍ଟ ସିଟି ଭୁବନେଶ୍ୱର, ତା ୨୯.୦୧.୨୦୧୬ରିଖ
୪. ପ୍ରମେୟ – ଭୁବନେଶ୍ୱର ସବୁଠୁ ସ୍ମାର୍ଟ – ତା ୨୯.୦୧.୨୦୧୬ରିଖ ।



ପ୍ରାକ୍ତନ ସହକାରୀ ଗ୍ରନ୍ଥାଧ୍ୟକ୍ଷ
ହରେକୃଷ୍ଣ ମହତାବ ରାଜ୍ୟ ଗ୍ରନ୍ଥାଗାର, ଭୁବନେଶ୍ୱର


# ଭୂମିପୁତ୍ର ବିଜୟାନନ୍ଦ


**ସୁଦାମ ଚରଣ ଜେନା**


ମନେପଡ଼େ ଯେବେ ସେଦିନର କଥା
ଗର୍ବେ ଫୁଲିଉଠେ ଛାତି
ଉତ୍କଳ ମାତାର ସୁଯୋଗ୍ୟ ସନ୍ତାନ
ଧନ୍ୟ ହୁଏ ଏଇ ମାଟି ।
ଉତ୍କଳ ଭୂମିର ପ୍ରବାଦ ପୁରୁଷ
ବିଜୁବାବୁ ଆମ ଥିଲେ
ଶିଳ୍ପ ସମୃଦ୍ଧିରେ ରାଜ୍ୟକୁ ଗଢ଼ିଲେ
କୃଷିର ଉନ୍ନତି କଲେ ।
ମଣିଷ ପରି ମଣିଷଟେ ଥିଲ
ଜାତି ସଭ୍ୟତାରେ ଗଢ଼ି ଦେଇଥିଲ
ନୂଆ ସକାଳର ସୂର୍ଯ୍ୟଟିଏ
ଓଡ଼ିଆ ପ୍ରାଣର ପିଣ୍ଡଟିଏ
ଶିକ୍ଷା ସଂସ୍କୃତିର ସ୍ତମ୍ଭଟିଏ ।
ଅମର ସଂଗ୍ରାମୀ ବିଜୟାନନ୍ଦ ହେ
ଭୂମିପୁତ୍ର ହୋଇଗଲ
ବିଶ୍ୱ ଦରବାରେ ଓଡ଼ିଆ ମାଟିର
ସ୍ମୃତିମାଳା ରଖିଗଲ ।


ଉତ୍ତାରଣ, କସର୍ଦ୍ଦା, କଟକ

# ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ ଗଣମାଧ୍ୟମର ଭୂମିକା

**ସୁରେଶ କୁମାର ପ୍ରଧାନ**

ଦେଶ ଓ ଜାତି ଗଠନରେ ସାହିତ୍ୟ ଓ ସମ୍ବାଦପତ୍ରର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । ସମାଜର ନାନା ସମସ୍ୟା ପ୍ରତିଫଳିତ ହୋଇଥିବାରୁ ସାହିତ୍ୟ ଓ ସମ୍ବାଦକୁ ସମାଜର ଆଇନା ବୋଲି କୁହାଯାଇ ଏକ ଅବିଚ୍ଛେଦ୍ୟ ଅଙ୍ଗ ବୋଲି ଧରାଯାଇ ଅଛି । ପ୍ରେରଣାର ଉତ୍ସଭାବେ ମାର୍ଗଦର୍ଶକର ଭୂମିକା ନିର୍ବାହ ପୂର୍ବକ ସମାଜକୁ ଆଗେଇ ଯିବାରେ ଶକ୍ତି ସଞ୍ଚାର କରିଥାଏ ସମ୍ବାଦପତ୍ର । ସମ୍ବାଦପତ୍ର ହେଉଛି ଦେଶର ଜାଗ୍ରତ ପ୍ରହରୀ। ବିଭିନ୍ନ ସମୟରେ ନାନା ସଂସ୍କାରଧର୍ମୀ ଆନ୍ଦୋଳନର ନେତୃତ୍ୱ ନେଇଥାଏ ସମ୍ବାଦପତ୍ର। ବିଶ୍ୱକୋଷରେ ସମ୍ବାଦପତ୍ରର ପ୍ରଭାବଶାଳୀ ଭୂମିକା ସମ୍ପର୍କରେ ଉଲ୍ଲେଖ ରହିଛି ଯେ– 'Newspaper, a periodical publication. The primary function of which is to supply the latest and most accurate information on matters of public importance or human interest, It may be usually does offer views and opinions on current events and articles and features having no close connection with the immediate news may also be included, but the presentation of news, clearly and accurately remains the chief functions of the Newspaper. ସମଗ୍ର ଜାତିର ପ୍ରକୃତ ଶିକ୍ଷକ ହେଉଛି ସମ୍ବାଦପତ୍ର ବୋଲି ଏକଦା ନେପୋଲିଅନ୍ ମୁକ୍ତକଣ୍ଠରେ କହିଥିଲେ। ଏକ ପ୍ରଭାବଶାଳୀ ସମ୍ବାଦପତ୍ର ଯେକୌଣସି ଶକ୍ତିଶାଳୀ ସେନାବାହିନୀ ଅପେକ୍ଷା ଅଧିକ କ୍ଷତିସାଧନ କରିପାରେ। ସମ୍ବାଦପତ୍ର ସମ୍ବନ୍ଧରେ ଜନ୍ ନିଉଟନ୍ କହିଥିଲେ ଯେ, ଈଶ୍ୱର କିପରି ଭାବରେ ଏହି ସଂସାରକୁ ପରିଚାଳନା କରୁଛନ୍ତି, ତାହା ଜାଣିବା ପାଇଁ ମୁଁ ସମ୍ବାଦପତ୍ର ପାଠ କରିଥାଏ। ଯଥାର୍ଥରେ ଗଣମାଧ୍ୟମ ହେଉଛି ଗଣତନ୍ତ୍ରର ଚତୁର୍ଥସ୍ତମ୍ଭ। ସୁପ୍ତ ଓଡ଼ିଆ ଜାତିର ପ୍ରାଣରେ ନବ ଉନ୍ମାଦନା ଜଗାଇ ତା'ର ସ୍ୱାତନ୍ତ୍ର୍ୟ ଫେରି ପାଇବାରେ ତତ୍କାଳୀନ ସମ୍ବାଦପତ୍ର ଯେଉଁ ଭୂମିକା ନିର୍ବାହ କରିଥିଲା, ତାହା କୋଟି ଓଡ଼ିଆଙ୍କ ମାନସପଟରୁ କେବେବି ଲିଭିବ ନାହିଁ । ଓଡ଼ିଆ ଜାତିର କାନେ କାନେ ଜାତୀୟତା ଓ ଭାଷାପ୍ରୀତିର ମହାମନ୍ତ୍ର ଫୁଙ୍କି ଜାଗ୍ରତ କରାଇଥିଲା ଓଡ଼ିଆ ସମ୍ବାଦପତ୍ର । ନିଜସ୍ୱ ଲେଖନୀ ମୁନରେ ଉତ୍କଳ ଜନନୀର ସୁଯୋଗ୍ୟ ସନ୍ତାନଗଣ ମହାମନ୍ତ୍ରର ଶୁଭଶଙ୍ଖ ନିନାଦନ କରି ନିଦ୍ରିତ ଓଡ଼ିଆଙ୍କ ପ୍ରାଣରେ ଶକ୍ତି ସଞ୍ଚାର କରାଇ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ବିନ୍ଧାଣି ସାଜିଥିଲେ ।

ପ୍ରତ୍ୟେକ ଜାତି ପାଇଁ ଭାଷା ହେଉଛି ଏକ ସ୍ପର୍ଶକାତର ପ୍ରସଙ୍ଗ। ତେଣୁ ଯଥାର୍ଥରେ ଭାଷା ହିଁ ଏକ ଜାତିର ଅସଲ ପରିଚୟ । ଭାଷାକୁ ନେଇ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ ସ୍ୱପ୍ନ ହିଁ ପ୍ରଥମେ କେବଳ ଓଡ଼ିଆମାନେ ଦେଖିଥିଲେ । ଇଂରେଜ ଶାସିତ ଭାରତବର୍ଷର ଭାଷାସୂତ୍ରରେ ଗଠିତ ହୋଇଥିବା ପ୍ରଥମ ପ୍ରଦେଶ ହେଉଛି 'ଉତ୍କଳ' । 'ଓଡ଼ିଆ ଏକ ଭାଷା ନୁହେଁ'– ବଙ୍ଗାଳୀମାନଙ୍କ ଏହି ହୀନ ଚକ୍ରାନ୍ତ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ନିମିତ୍ତ ଓଡ଼ିଆମାନଙ୍କୁ ଭାଷା ଆନ୍ଦୋଳନ ନିମିତ୍ତ ପ୍ରେରଣା ଦେଇଥିଲା । ବଙ୍ଗାଳୀମାନଙ୍କ ହୀନ ଉଦ୍ୟମର ପ୍ରତିବାଦ ସର୍ବପ୍ରଥମେ ବିଭିନ୍ନ ସମ୍ବାଦପତ୍ରମାନଙ୍କରେ ପ୍ରତିଫଳିତ ହୋଇ ଓଡ଼ିଆଙ୍କ ଦେହ, ମନ, ପ୍ରାଣରେ ଭାଷା ପ୍ରୀତିର ଭାବନା ଉଦ୍ରେକ କରାଇଥିଲା । ସ୍ୱତନ୍ତ୍ର ଉତ୍କଳ ଓଡ଼ିଆ ଭାଷା, ଉତ୍କଳୀୟ ସଂସ୍କୃତି ଓ ଓଡ଼ିଆ ଜାତିର ପରିକଳ୍ପନାର ସାକାର ରୂପ ପ୍ରଦାନରେ ତତ୍କାଳୀନ ସାହିତ୍ୟ, ସମାଜ ଓ ସାମ୍ବାଦିକତା ପ୍ରମୁଖ ଭୂମିକା ଗ୍ରହଣ କରିଥିଲା । ଏହି ଅବସରରେ ଓଡ଼ିଆ ସମ୍ବାଦପତ୍ର ସାଂସ୍କୃତିକ ନବଜାଗରଣରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା

ବୋଲି ସ୍ୱୀକାର କରିବାକୁ ହେବ । ୧୮୭୦ରୁ ୧୯୦୦ ମସିହା ଭିତରେ ଓଡ଼ିଶାରେ ସାମାଜିକ ସଂସ୍କାର, ଶିକ୍ଷା ସମସ୍ୟା, ଭାଷା ସମସ୍ୟା, ଅର୍ଥନୀତିକୁ ନେଇ ପ୍ରାୟ ୫୦ରୁ ଊର୍ଦ୍ଧ୍ୱ ସମ୍ବାଦପତ୍ର ଓ ପତ୍ରିକାମାନ ଆତ୍ମପ୍ରକାଶ କରିଥିଲା । ଏଥିରେ ଜାତୀୟତାବାଦୀ ଚେତନାର ପ୍ରତିଫଳନ ଉତ୍କଳୀୟ ରାଜନୀତିକ, ସାହିତ୍ୟିକ ଓ ଅର୍ଥନୀତିକ ପ୍ରସଙ୍ଗ ଉପରେ ବୌଦ୍ଧିକ ଆଲୋଚନା ନିମିତ୍ତ ପ୍ରଭାବ ପକାଇଥିଲା । ସୁସ୍ଥ ଜନମତ ସୃଷ୍ଟି କରିବାରେ ସମ୍ବାଦପତ୍ରର ମୂଳ ଲକ୍ଷ୍ୟ ଥିବାବେଳେ ସାମ୍ବାଦିକତା ଥିଲା ଜାତି ପାଇଁ ଏକ ଉତ୍ସର୍ଗୀକୃତ ସେବା ।

ଊନବିଂଶ ଶତାବ୍ଦୀରେ ଓଡ଼ିଶାରେ ମୁଦ୍ରଣ ଯନ୍ତ୍ର ସ୍ଥାପିତ ହୁଏ । ପରେ ପରେ ସମ୍ବାଦପତ୍ର ଜରିଆରେ ଜନଜାଗରଣ ସୃଷ୍ଟି ହେବାରୁ ଶିକ୍ଷିତ ଗୋଷ୍ଠୀ ସଚେତନ ହୋଇ ନିଜ ଦାବି ସମ୍ପର୍କରେ ବେଶ୍ ଚଳଚଞ୍ଚଳ ହୋଇ ଉଠିଲେ । ସାମାଜିକ ସଚେତନତା ହିଁ ଭାଷା ଆନ୍ଦୋଳନ ପାଇଁ ପଥ ସୁଗମ କଲା । ୧୮୩୮ରେ ମିଶନ ପ୍ରେସ୍ ସ୍ଥାପିତ ହୋଇଥିଲା । ଏହି ପ୍ରେସ୍‌ରୁ ୧୮୫୬ ମସିହାରେ ପ୍ରକାଶ ପାଇଥିଲା ଓଡ଼ିଶାର ପ୍ରଥମ ସାହିତ୍ୟ ଓ ସମ୍ବାଦ ପତ୍ରିକା 'ପ୍ରବୋଧ ଚନ୍ଦ୍ରିକା' । ଏହାର ସମ୍ପାଦକ ଥିଲେ ଓଡ଼ିଆ ଅନୁବାଦକ ପାଦ୍ରି ଲେସି ସାହେବ । ନଅଙ୍କ ଦୁର୍ଭିକ୍ଷର ଦୁଇବର୍ଷ ପୂର୍ବରୁ ୧୮୬୪ ମସିହାରେ ଓଡ଼ିଆ ପ୍ରିଣ୍ଟିଂ କମ୍ପାନୀ ସ୍ଥାପିତ ହୁଏ । ୧୮୬୫ ଜୁଲାଇ ୧ କଟକ ପ୍ରିଣ୍ଟିଂ କମ୍ପାନୀ କାର୍ଯ୍ୟକ୍ଷମ ହୋଇ 'ଉତ୍କଳ ଦୀପିକା'ର ପ୍ରକାଶନ ଆରମ୍ଭ ହୁଏ । ୧୮୪୯ରେ ମିଶନାରୀମାନେ କଟକରୁ ପ୍ରକାଶ କଲେ ଓଡ଼ିଆ ପତ୍ରିକା 'ଜ୍ଞାନରୁଣା' । ଯାହାର ସମ୍ପାଦକ ମଧ୍ୟ ଥିଲେ ଚାର୍ଲସ ଲେସି । ଏହାଛଡ଼ା ସରକାରୀ ଗେଜେଟ୍– ୧୮୫୨, ଓଡ଼ିଶା ଗେଜେଟ୍ ୧୮୫୮, ଅରୁଣୋଦୟ– ୧୮୬୧ ଆଦି ପ୍ରକାଶ ପାଇବାରୁ ଓଡ଼ିଶାରେ ସାମାଜିକ ସଚେତନତା ସୃଷ୍ଟି ହେଲା । ପରେ ପରେ ଯେଉଁ ସମ୍ବାଦଧର୍ମୀ ପତ୍ର–ପତ୍ରିକା ଆତ୍ମପ୍ରକାଶ କରି ଓଡ଼ିଆତ୍ୱ ଜାଗରଣ କରିଥିଲା ତାହା ହେଲା– ଉତ୍କଳ ଦୀପିକା ୧୮୬୬, ବାଲେଶ୍ୱର ସମ୍ବାଦ ବାହିକା– ୧୮୬୮, ଉତ୍କଳ ହିତୈଷିଣୀ–୧୮୬୯, ଉତ୍କଳ ପୁତ୍ର– ୧୮୭୩, ଉତ୍କଳ ସଂସ୍କାରକ– ୧୮୭୪, ସ୍ୱଦେଶୀ– ୧୮୭୬, ନବସମ୍ବାଦ– ୧୮୮୭, ଓଡ଼ିଆ– ୧୮୮୭, ଓଡ଼ିଆ ଓ ନବସମ୍ବାଦ– ୧୮୮୮ ଓ ୧୮୮୯ ମସିହାରେ ଆତ୍ମପ୍ରକାଶ କଲା ସମ୍ବଲପୁର ହିତୈଷିଣୀ । ଏହାର ବହୁ ଦିନ ପରେ ଅର୍ଥାତ୍ ୧୯୧୯ ମସିହାରେ ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ସମ୍ପାଦନାରେ ଜନ୍ମନେଲା 'ସାପ୍ତାହିକ ସମାଜ' ।

ଓଡ଼ିଶାର ସାମ୍ବାଦିକତା କ୍ଷେତ୍ରରେ ଯେଉଁମାନେ ପ୍ରାତଃସ୍ମରଣୀୟ ସେମାନେ ହେଲେ– ମହାତ୍ମା ସାଧୁ ସୁନ୍ଦର ଦାସ, 'କୁଜୀବର ପତ୍ର', ରେଭରେଣ୍ଟ ଲେସି, 'ପ୍ରବୋଧ ଚନ୍ଦ୍ରିକା', କର୍ମବୀର ଗୌରୀଶଙ୍କର ରାୟ– 'ଉତ୍କଳ ଦୀପିକା', ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକ– ବାଲେଶ୍ୱର ସମ୍ବାଦ ବାହିକା, ନୀଳମଣି ବିଦ୍ୟାରତ୍ନ– 'ସମ୍ବଲପୁର ହିତୈଷିଣୀ', ପ୍ୟାରୀମୋହନ ଆଚାର୍ଯ୍ୟ– 'ଉତ୍କଳ ପୁତ୍ର', ବ୍ରଜସୁନ୍ଦର ଦାସ– 'ମୁକୁର' । ଶଶିଭୂଷଣ ରଥ– 'ଆଶା', ବିଶ୍ୱନାଥ କର– 'ଉତ୍କଳ ସାହିତ୍ୟ' । ଏହିସବୁ ସମ୍ବାଦପତ୍ରମାନଙ୍କରେ ସମ୍ପାଦକବୃନ୍ଦ ସ୍ୱ ସ୍ୱ ଲେଖନୀ ମୁନରେ ଓଡ଼ିଆ ଜାତିର ଭାବ ସଞ୍ଚାର କରି ଅଗଣିତ ଓଡ଼ିଆଙ୍କୁ ଏକତ୍ର କରିବା ପାଇଁ ଯୁଗାନ୍ତକାରୀ ପଦକ୍ଷେପ ନେଇଥିଲେ ।

ଇଂରେଜ ଅଧୀନକୁ ଯିବାରେ ଭାରତବର୍ଷର ଶେଷ ଭୂଖଣ୍ଡ ଥିଲା ଓଡ଼ିଆ । ୧୮୦୩ରେ ବ୍ରିଟିଶ ଓଡ଼ିଶାକୁ ଦଖଲ କରି କ୍ରମେ ଏହାକୁ ଭାଗ ଭାଗ କରି ବିଭିନ୍ନ ପଡ଼ୋଶୀ ରାଜ୍ୟସହ ମିଶାଇ ଦେଲେ । ଓଡ଼ିଆଙ୍କ ସାହସ ଓ ବୀରତ୍ୱରେ ଭୟଭୀତ ହୋଇ ଇଂରେଜ ସରକାର ଏପରି ହୀନ ଉଦ୍ୟମ ଆରମ୍ଭ କରିଥିଲେ । ହଜାର ହଜାର ବର୍ଷର ସଂସ୍କୃତି ସମ୍ପନ୍ନ ଓଡ଼ିଆ ଜାତିର ଐକ୍ୟ ସଂହତି ଓ ସମ୍ପତ୍ତିକୁ ଲୁଣ୍ଠନ କରି ଓଡ଼ିଆକୁ ହୀନବୀର୍ଯ୍ୟ କରିବା ଲକ୍ଷ୍ୟନେଇ ଇଂରେଜମାନେ ଯେପରି କାର୍ଯ୍ୟ ଚଳାଇଥିଲେ ଏଥିରେ ପ୍ରତିବାଦର ସ୍ୱର ସମଗ୍ର ଭାରତବର୍ଷକୁ ଚମକାଇ ଦେଲା । ଓଡ଼ିଶାରେ ଓଡ଼ିଆ ଭାଷାର ଅମର୍ଯ୍ୟାଦା ସାଙ୍ଗକୁ ଇଂରାଜୀ ଭାଷାର ପ୍ରଚଳନ ଓଡ଼ିଆଙ୍କୁ ବ୍ୟଥିତ କଲା । ବିଦେଶୀ ଭାଷାର ପ୍ରଚାର ଓ ପ୍ରସାରକୁ ରୋକିବା ଲକ୍ଷ୍ୟନେଇ ଓଡ଼ିଆମାନେ ସମବେତ ହେବାକୁ ଲାଗିଲେ । ଭାଷାର ସୁରକ୍ଷା ନେଇ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ର କରିବା ପାଇଁ ଉଦ୍ୟମ ଆରମ୍ଭ ହେଲା । ଏହାର ପୁରୋଭାଗରେ ସର୍ବପ୍ରଥମେ ଉଦ୍ୟମଶୀଳ ହୋଇଥିଲେ ଘୁମୁସରର ଭାଷାପ୍ରେମୀ ଦୀନବନ୍ଧୁ ପଟ୍ଟନାୟକ । ଓଡ଼ିଆ ଭାଷାଭାଷୀ ଅଞ୍ଚଳର ମିଶ୍ରଣର ସ୍ୱପ୍ନକୁ

ସାକାର କରିବାରେ ତତ୍କାଳୀନ ଗଣମାଧ୍ୟମର ଅକୁଣ୍ଠ ସହଯୋଗ ଅବିସ୍ମରଣୀୟ ।

ବ୍ରିଟିଶ ସରକାର ସମ୍ବଲପୁର ଦଖଲ କରି ଦକ୍ଷିଣ–ପଶ୍ଚିମ ସୀମାନ୍ତ ଅଞ୍ଚଳ ଅଧୀନରେ ରଖି ଶାସନ କାର୍ଯ୍ୟ ଚଳାଇବାରୁ ଓଡ଼ିଶା ସହିତ ସମ୍ବଲପୁରର ସମସ୍ତ ସମ୍ପର୍କ ଛିନ୍ନ ହେଲା । ସମ୍ବଲପୁର ଅଧିବାସୀ ଓଡ଼ିଆ ହୋଇଥିଲେ ମଧ୍ୟ ଇଂରେଜମାନେ ଶାସନଗତ ସୁବିଧା ପାଇଁ ହିନ୍ଦୀକୁ ସମ୍ବଲପୁରର ସରକାରୀ ଭାଷା କରିବାକୁ ଆନ୍ଦୋଳନ ମୁଣ୍ଡ ଟେକିଲା । ସରକାରୀ ଦଲିଲମାନଙ୍କରେ ସମ୍ବଲପୁର ଓଡ଼ିଆ ଅଞ୍ଚଳ ଉଲ୍ଲେଖ ଥିବା ସତ୍ତ୍ୱେ ସରକାରଙ୍କ ହୀନ ଚକ୍ରାନ୍ତ ବିରୋଧରେ ଗଣ ଆନ୍ଦୋଳନ ତୀବ୍ରତର ହେଲା । ଇତ୍ୟବସରରେ ସ୍ଥାନୀୟ ସମ୍ବଲପୁରବାସୀ ଓଡ଼ିଆ ଡିଭିଜନ ସହ ମିଶିବାକୁ ଦାବି ଉପସ୍ଥାପନ କଲେ । ଅବାଞ୍ଛିତ ସରକାରୀ ନିଷ୍ପତ୍ତି ବିରୋଧରେ ଦିନକୁ ଦିନ ଆନ୍ଦୋଳନ ଜୋର୍ ଧରିଲା । ଏହି ଆନ୍ଦୋଳନର ପ୍ରତିଫଳନ ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କ ସଂପାଦନା ଓ ସାର୍ ବାସୁଦେବ ସୁଢ଼ଳଦେବଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ପ୍ରକାଶ ପାଉଥିବା 'ସମ୍ବଲପୁର ହିତୈଷିଣୀ'ରେ ଦେଖିବାକୁ ମିଳିଲା । ପ୍ରଶାସନିକ ସୁବିଧା ଓ ସମ୍ବଲପୁରବାସୀଙ୍କ ସୁବିଧା ପାଇଁ ସମ୍ବଲପୁରକୁ ତୁରନ୍ତ ଓଡ଼ିଶା ସହିତ ମିଶାଯାଉ ବୋଲି ସମ୍ବାଦକୀୟ ସ୍ତମ୍ଭରେ ପ୍ରକାଶ ପାଇ ବଳିଷ୍ଠ ଜନମତ ସୃଷ୍ଟି ହେଲା । ସରକାରୀ ନୀତିର ସମାଲୋଚନା କରି ସଂପାଦକ ନୀଳମଣି ବିଦ୍ୟାରତ୍ନ ୧୮୬୭ ମସିହାରେ ପ୍ରକାଶିତ ଛତିଶଗଡ଼ ଗେଜେଟିୟରକୁ ଉଦ୍ଧାର ପୂର୍ବକ ବଳିଷ୍ଠ ପ୍ରମାଣ ସର୍ବସାଧାରଣଙ୍କ ଅବଗତି ନିମନ୍ତେ ପ୍ରକାଶ କଲେ । ଯାହାଥିଲା– ଭୌଗୋଳିକ ଓ ଐତିହାସିକ ଦୃଷ୍ଟିକୋଣରୁ ସମ୍ବଲପୁର ଛତିଶଗଡ଼ର ଅଂଶବିଶେଷ ହୋଇନପାରେ । ଏହାଛଡ଼ା ବଙ୍ଗୀୟ ଲେଖକଙ୍କ ଓଡ଼ିଆ ଭାଷା ବିରୋଧୀ ମନୋଭାବକୁ କଠୋର ସମାଲୋଚନା କରିବାକୁ ପଛାଇ ନଥିଲା ସମ୍ବଲପୁର ହିତୈଷିଣୀ । ସମ୍ବଲପୁର ଭାଷା ସମସ୍ୟାକୁ ଶିକ୍ଷିତ ସମାଜ ସମ୍ମୁଖରେ ଉପସ୍ଥାପନ କରି ଭାଷାର ସୁରକ୍ଷା ପାଇଁ ଆହ୍ୱାନ ଦେଇଥିଲା ଉକ୍ତ ସମ୍ବାଦପତ୍ର । ସରକାରଙ୍କ ତ୍ରୁଟିପୂର୍ଣ୍ଣ ଭାଷା ବିଲୋପ ନୀତି ବିରୋଧରେ ସମ୍ବାଦପତ୍ରମାନଙ୍କରେ ସୁଚିନ୍ତିତ ପରାମର୍ଶ ପ୍ରକାଶ ପାଇ ଅଭୂତପୂର୍ବ ଜନଜାଗରଣ ସୃଷ୍ଟି କରିବାକୁ ସକ୍ଷମ ହେଲା । ତତ୍କାଳୀନ ବୁଦ୍ଧିଜୀବୀ ନିଜର ସୁଚିନ୍ତିତ ପରାମର୍ଶ ଓ ଭାଷା ବିରୋଧୀ ନୀତିର ସାରଗର୍ଭକ ଚିଠିମାନ ସମ୍ବଲପୁର ହିତୈଷିଣୀରେ ପ୍ରକାଶ କରିବାକୁ ଅନୁରୋଧ କରୁଥିଲେ ଓ ଏହା ମଧ୍ୟ ପ୍ରକାଶ ପାଉଥିଲା । ଓଡ଼ିଶା ସହିତ ସମ୍ବଲପୁରର ମିଶ୍ରଣ ସହିତ ଭାଷା ସମସ୍ୟା ଉପରେ ସମ୍ବଲପୁର ହିତୈଷିଣୀର ସଂପାଦକ ଅଧିକ ସଚେତନ ଥିଲେ ବୋଲି ସ୍ପଷ୍ଟ ଅନୁମିତ ।

ଓଡ଼ିଆ ଭାଷା ଆନ୍ଦୋଳନ ଓ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ବିନ୍ଧାଣି ହେଲେ କର୍ମଯୋଗୀ ଗୌରୀଶଙ୍କର ରାୟ । ୧୮୬୬ରେ ଆତ୍ମ ପ୍ରକାଶ କରିଥିବା ପ୍ରଥମ ଓଡ଼ିଆ ସମ୍ବାଦପତ୍ର 'ଉତ୍କଳ ଦୀପିକା'ର ସେ ଥିଲେ ସୁଯୋଗ୍ୟ ସମ୍ପାଦକ । ସେ ଜଣେ ବଙ୍ଗୀୟ ହୋଇ ମଧ୍ୟ ଓଡ଼ିଆ ଭାଷା ସାହିତ୍ୟର ସୁରକ୍ଷା ଓ ପ୍ରଚାର ପାଇଁ ଆପ୍ରାଣ ଉଦ୍ୟମ କରିଥିଲେ । ପ୍ରାଚୀନ ଓଡ଼ିଆ ସାହିତ୍ୟ ପ୍ରତି ଅନୁରାଗ ରଖିଥିବା ଶ୍ରୀ ରାୟ ନିଜର ପ୍ରଭାବଶାଳୀ ଲେଖାମାନ ପ୍ରକାଶ କରି ସମସ୍ତଙ୍କୁ ଜାତୀୟ ସ୍ରୋତରେ ସାମିଲ କରାଇଥିଲେ । ଓଡ଼ିଆ ଭାଷା ସୁରକ୍ଷା ଲକ୍ଷ୍ୟନେଇ ବହୁ ସାହିତ୍ୟିକ ସୃଷ୍ଟି ହେବାସହ ଅସଂଖ୍ୟ ଓଡ଼ିଆ ପାଠକଗୋଷ୍ଠୀ ସୃଷ୍ଟି ହୋଇଥିଲା । ଗୌରୀଶଙ୍କରଙ୍କ ଏକନିଷ୍ଠ ଲେଖନୀ ଚାଳନା ଯୋଗୁଁ ଆଧୁନିକ ଓଡ଼ିଆ ସାହିତ୍ୟର ସୃଷ୍ଟି ହେବାସହ ଭାଷାର ଉନ୍ନତି ସାଧିତ ହେଲା । ଉତ୍କଳୀୟ ଭାଷା ଓ ସଂସ୍କୃତିର ସୁରକ୍ଷା ନେଇ 'ଉତ୍କଳ ଦୀପିକା'ର ସମ୍ପାଦକୀୟ ସ୍ତମ୍ଭରେ ଦୀର୍ଘ ଆଲୋଚନା ପ୍ରକାଶ କରି ଓଡ଼ିଆମାନଙ୍କୁ ସଚେତନ କରାଇବାରେ ତାଙ୍କର ଭୂମିକା ଥିଲା ଚିରସ୍ମରଣୀୟ । ଓଡ଼ିଆ ଭାଷା ଆନ୍ଦୋଳନ ସମୟରେ ଓଡ଼ିଆ ସମ୍ବାଦପତ୍ର ପୂର୍ଣ୍ଣ ସହଯୋଗ କରି ବିଭିନ୍ନ ସ୍ମାରକପତ୍ର ଛାପି ସଚେତନତା ସୃଷ୍ଟି କରିଥିଲେ । ସମସ୍ତ ବିଚ୍ଛିନ୍ନାଞ୍ଚଳକୁ ଏକ ଶାସନାଧୀନ କରି ଉତ୍କଳୀୟ ସଂସ୍କୃତି, କଳା ଓ ସାହିତ୍ୟର ସୁରକ୍ଷା କରିବାକୁ ତତ୍କାଳୀନ ବ୍ରିଟିଶ୍ ଅଧିକାରୀ ଲର୍ଡ କର୍ଜନଙ୍କ ନିକଟକୁ ସମ୍ବାଦପତ୍ର ଜରିଆରେ ଅବଗତ ଓ ଅନୁରୋଧ କରାଯାଉଥିଲା ।

୧୮୬୭ ମସିହାରେ ଓଡ଼ିଆ ଭାଷାର ସ୍ୱତନ୍ତ୍ରତା ପାଇଁ ଏକ ସଭା ଉତ୍କଳ ଭାଷୋଦ୍ଦୀପନା ସଭା' ଗଠିତ ହୋଇଥିଲା । ଏହି ସଭାର ସାରାଂଶ 'ଉତ୍କଳ ଦୀପିକା'ର ୧୮୬୭ ମେ ୨୬ ତାରିଖରେ ଯାହା ପ୍ରକାଶିତ ହୋଇଥିଲା– 'କି ରୂପେ ଉତ୍କଳ ଭାଷା ଉନ୍ନତ ହେବ ଓ ସର୍ବସାଧାରଣ ତା'ର ଉତ୍କର୍ଷ

ସାଧନାରେ ଯତ୍ନବାନ୍ ହେବେ ଏବଂ ସରକାରୀ ମହକୁମାମାନଙ୍କରେ ବର୍ତ୍ତମାନ ପ୍ରଚଳିତ ମିଶ୍ରିତ ଭାଷା ପରିବର୍ତ୍ତନରେ ବିଶୁଦ୍ଧ ଉତ୍କଳ ଭାଷା ପ୍ରଚଳନ ହେବ ଓ କେବଳ ଉପଯୁକ୍ତ ବ୍ୟକ୍ତିମାନେ ଅମଲାଗିରି କର୍ମ ପାରିପାରିବେ ଏହି ସମସ୍ତ ଏ ସଭାର ଉଦ୍ଦେଶ୍ୟ । ଓଡ଼ିଆ ଭାଷାର ସୁରକ୍ଷା ସହ ସ୍ୱତନ୍ତ୍ର ପ୍ରଦେଶ ଗଠନ ନିମିତ୍ତ ଜାତୀୟବାଦୀ ଗୌରୀଶଙ୍କରଙ୍କ ପ୍ରସ୍ତାବ ଓ ପଦକ୍ଷେପ ଚିରସ୍ମରଣୀୟ । ତାଙ୍କର ସୁଚିନ୍ତିତ ଯେଉଁ ପ୍ରସ୍ତାବ 'ଉତ୍କଳ ଦୀପିକା'ରେ ପ୍ରକାଶ ପାଇଥିଲା ତାହା ହେଲା–

୧) କି ସରକାରୀ କି ଚାନ୍ଦାକାର ସମସ୍ତ ବିଦ୍ୟାଳୟରୁ ବଂଗଭାଷା ଏକାବେଳକେ ଉଠାଇଦେବା ।

୨) ଉତ୍କଳ ଭାଷାରେ ପୁସ୍ତକାଦି ରଚନା କରିବାକୁ ସମୁତ୍ସୁକ ଥିବା ବ୍ୟକ୍ତିମାନଙ୍କୁ ଗଭର୍ଣ୍ଣମେଣ୍ଟରେ ଯଥୋପଯୁକ୍ତ ସାହାଯ୍ୟ କରିବା ।

୩) କେଉଁ ପୁସ୍ତକ ବିଦ୍ୟାଳୟରେ ପ୍ରଚଳନ ତାହା ସ୍କୁଲର ଇନ୍‌ସପେକ୍ଟରଙ୍କ ଦ୍ୱାରା ନହୋଇ ଏ ପ୍ରଦେଶର ଦୁଇତିନି ସମ୍ଭ୍ରାନ୍ତ ବ୍ୟକ୍ତିଙ୍କ ଦ୍ୱାରା ବିଚାର୍ଯ୍ୟ ହେବା ।

୪) ଶିକ୍ଷା ବିଭାଗର ସମସ୍ତ ବିଜ୍ଞାପନ ଓ ଆଜ୍ଞାମାନ ସାଧାରଣ ଗୋଚରାର୍ଥେ ଭାଷା ସମ୍ବାଦପତ୍ରରେ ପ୍ରକାଶ କରିବା ।

'ଉତ୍କଳ ଦୀପିକା'ର ଆତ୍ମ ପ୍ରକାଶ ପରେ ପରେ ଗୌରୀଶଙ୍କର, ବିଛନ୍ଦ ଚରଣ ପଟ୍ଟନାୟକଙ୍କ ଭଳି ଭାଷାପ୍ରେମୀ ଓଡ଼ିଆ ଭାଷାର ବିକାଶ ପାଇଁ ବଳରାମ ଦାସଙ୍କ ରାମାୟଣ, ଜଗନ୍ନାଥ ଦାସଙ୍କ ଭାଗବତ, ଉପେନ୍ଦ୍ର ଭଞ୍ଜଙ୍କ ରସପଞ୍ଚକ, ସୁଭଦ୍ରା ପରିଣୟ ପ୍ରଭୃତି ଗ୍ରନ୍ଥମାନ କଟକ ପ୍ରିଣ୍ଟିଂ କମ୍ପାନୀ ଦ୍ୱାରା ପ୍ରକାଶ ପାଇଲା । ୧୮୬୮ ମସିହାରେ ବାଲେଶ୍ୱରରୁ ପ୍ରତିଷ୍ଠିତ 'ଉତ୍କଳ ପ୍ରେସ୍'ରୁ 'ବୋଧଦାୟିନୀ' ନାମରେ ଯେଉଁ ସମ୍ବାଦପତ୍ର ପ୍ରକାଶ ପାଇଲା ସେଥିରେ ଭାଷାର ସୁରକ୍ଷା ପାଇଁ ବହୁବିଧ ପଦକ୍ଷେପ ନିଆଯାଇଥିଲା ।

ସ୍ୱତନ୍ତ୍ର ଉତ୍କଳ ଗଠନରେ ଗଞ୍ଜାମର ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ । ଏହି ମାଟିରେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଓ କବିସୂର୍ଯ୍ୟ ବଳଦେବ ରଥଙ୍କ ଭଳି ବହୁ ପ୍ରସିଦ୍ଧ ସାହିତ୍ୟରଥି ଭୂମିଷ୍ଠ ହୋଇ ଓଡ଼ିଆ ଭାଷାର ଶ୍ରୀବୃଦ୍ଧି ନିମିତ୍ତ ଲେଖନୀ ଚଳାଇ ଯଶସ୍ୱୀ ହୋଇଛନ୍ତି । ଇଂରେଜମାନେ ଗଞ୍ଜାମକୁ ମାନ୍ଦ୍ରାଜ ପ୍ରଦେଶ ସହ ମିଶାଇ ଦେବାରୁ ଗଞ୍ଜାମର ଐତିହ୍ୟ ନଷ୍ଟ ହେବାସହ ଅତୀତ ଗୌରବ କ୍ଷୁଣ୍ଣ ହେଲା । ଗଞ୍ଜାମର ସଚେତନ ଗୋଷ୍ଠୀଙ୍କ ବହୁ ଆନ୍ଦୋଳନ ଫଳରେ ୧୮୯୦ରେ ମାନ୍ଦ୍ରାଜ ପ୍ରଦେଶ ସରକାର ଓଡ଼ିଆକୁ ଗଞ୍ଜାମ ଜିଲ୍ଲାର ସରକାରୀ ଭାଷାର ମାନ୍ୟତା ଦେଇ ୧୮୯୩ରେ ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟ ଓଡ଼ିଆ ଭାଷା ଅଧ୍ୟୟନକୁ ପାଠ୍ୟକ୍ରମର ଅନ୍ତର୍ଭୁକ୍ତ କଲେ । ଓଡ଼ିଆମାନଙ୍କ ନାନାବିଧ ସମସ୍ୟାକୁ ନେଇ ୧୮୭୬ ମସିହାରେ ଉଇଲିୟମ୍ ମହାନ୍ତି 'ସ୍ୱଦେଶୀ' ସାପ୍ତାହିକ ପତ୍ରିକା ପ୍ରକାଶନ ଆରମ୍ଭ କରିଥିଲେ । ଖଲ୍ଲିକୋଟ ରାଜା ହରିହର ମର୍ଦ୍ଦରାଜ ଓଡ଼ିଆ ଭାଷା ଓ ସ୍ୱତନ୍ତ୍ର ଉତ୍କଳ ଗଠନ ନିମିତ୍ତ ପ୍ରୟାସୀ ହୋଇ ୧୯୦୩ ଏପ୍ରିଲ ୧୧ ଓ ୧୨ ତାରିଖରେ ଓଡ଼ିଆ ସମ୍ମିଳନୀ ବ୍ରହ୍ମପୁରରେ ଆୟୋଜିତ କରାଇଥିଲେ । ଓଡ଼ିଆମାନଙ୍କ ମଧ୍ୟରେ ଓଡ଼ିଆ ପ୍ରୀତିର ଜାଗରଣ ନିମିତ୍ତ ଜୁନ୍ ମାସରେ 'ପ୍ରଜାବନ୍ଧୁ' ନାମରେ ଏକ ସାପ୍ତାହିକ ସମ୍ବାଦପତ୍ର ପ୍ରକାଶ କରାଇଥିଲେ । ନୀଳମଣି ବିଦ୍ୟାରତ୍ନଙ୍କ ସମ୍ପାଦନା ଏବଂ ଜୟକୃଷ୍ଣ ଚ୍ୟାଉପଟ୍ଟନାୟକଙ୍କ ନିର୍ଦ୍ଦେଶନାରେ 'ପ୍ରଜାବନ୍ଧୁ' ଓଡ଼ିଆମାନଙ୍କ ମଧ୍ୟରେ ନୂତନ ଉଦ୍‌ବେଳନ ସୃଷ୍ଟି କରିବାକୁ ସମର୍ଥ ହୋଇଥିଲା । ନବଜାଗରଣ ଓ ଜାତୀୟ ଚେତନା ସୃଷ୍ଟି କରିବାରେ ସମ୍ବାଦପତ୍ରର ଭୂମିକାକୁ ସର୍ବତ୍ର ଅନୁଭବ କଲେ । ୧୯୦୪ ଫେବୃୟାରୀ ୧୩ରେ 'ଦି ହିନ୍ଦୁ' ସମ୍ବାଦପତ୍ରରେ ଭାଷା ସୁରକ୍ଷା ସମ୍ପର୍କିତ ବହୁ ଯୁକ୍ତିନିଷ୍ଠ ତଥ୍ୟମାନ ପ୍ରକାଶ ପାଇ ସଚେତନତା ସୃଷ୍ଟି କରିଥିଲା । ଉଭୟ ତେଲୁଗୁ ଓ ଓଡ଼ିଆମାନେ ଏକତ୍ରିତ ହୋଇ ମାନ୍ଦ୍ରାଜ ପ୍ରଦେଶରୁ ଓଡ଼ିଆଭାଷୀ ଅଞ୍ଚଳକୁ କାଢ଼ି ଓଡ଼ିଆଙ୍କ ସ୍ୱାର୍ଥରକ୍ଷା ପାଇଁ ଉଦ୍ୟମ କରିଥିଲେ ।

ଓଡ଼ିଆଭାଷାର ସୁରକ୍ଷା ଓ ସ୍ୱତନ୍ତ୍ର ଉତ୍କଳର ଅନ୍ୟତମ ପୁରୋଧା ହେଲେ ଉତ୍କଳମଣି ଗୋପବନ୍ଧୁ ଦାସ । ସମ୍ବାଦ ଓ ସାମ୍ବାଦିକତା କ୍ଷେତ୍ରରେ ସେ ହେଉଛନ୍ତି ଏକ ଉଜ୍ଜ୍ୱଳ ବ୍ୟକ୍ତିତ୍ୱ । ଓଡ଼ିଆ ଭାଷାର ପ୍ରଚାର ଓ ପ୍ରସାରକୁ ନିଜର ବ୍ରତ ଭାବେ ଗ୍ରହଣ କରି ଆଗେଇ ଆସିଲାବେଳେ ତତ୍କାଳେ 'ଉତ୍କଳ ଦୀପିକା' ବ୍ୟତୀତ ଅନ୍ୟ କିଛି ଖବର କାଗଜ ଦେଖାଯାଉ ନଥିଲା । ଓଡ଼ିଆ ଜାତୀୟତାରେ ଉଦ୍‌ବୁଦ୍ଧ ଗୋପବନ୍ଧୁ ୧୯୧୯ରେ ଓଡ଼ିଆ ଜାତିର ମୁଖପତ୍ର ଭାବେ 'ସାପ୍ତାହିକ ସମାଜ'କୁ ଜନ୍ମଦେଲେ । ସମାଜରେ ପ୍ରକାଶିତ ସମ୍ବାଦମାନ କୋଟି କୋଟି ଓଡ଼ିଆଙ୍କ ପ୍ରାଣରେ ଜାତୀୟତା ଭାବ ସୃଷ୍ଟିକରି ସ୍ୱତନ୍ତ୍ର ଉତ୍କଳ

ଗଠନ ନିମିତ୍ତ ପ୍ରେରଣା ଯୋଗାଇଥିଲା । ଯଥାର୍ଥରେ ଗୋପବନ୍ଧୁଙ୍କ 'ସମାଜ'ଥିଲା ଓଡ଼ିଶାରେ ନବଜାଗରଣ ଓ ଜାତୀୟତାର ପ୍ରଧାନ ଓ ପ୍ରମୁଖ ବାର୍ତ୍ତାବହ । ତେଣୁ 'ସମାଜ'କୁ ଓଡ଼ିଆ ଜାତୀୟତାର ଶ୍ରେଷ୍ଠ ବାହକଭାବେ ଅଭିହିତ କଲେ ସତ୍ୟର ଅପଳାପ ହେବ ନାହିଁ । ବିଚ୍ଛିନ୍ନ ଓଡ଼ିଆ ଅଞ୍ଚଳର ଏକତ୍ରିକରଣ ଓ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ନିମିତ୍ତ ତାଙ୍କ ଦାନର ତୁଳନା ନାହିଁ ।

ଓଡ଼ିଆ ଭାଷା ଭିତ୍ତିରେ ସ୍ୱତନ୍ତ୍ର ପ୍ରଦେଶ ଗଠନ ପାଇଁ ଯାହାଙ୍କର ଅଶେଷ ତ୍ୟାଗ ରହିଛି ସେ ହେଲେ ସୁନାମଧନ୍ୟ ସାହିତ୍ୟିକ ଓ ସୁଦକ୍ଷ ସାମ୍ବାଦିକ ବ୍ରଜ ସୁନ୍ଦର ଦାସ । ତାଙ୍କ ସଂପାଦିକ 'ମୁକୁର' ୧୯୦୫ ମସିହାରେ କଟକ ମୁକୁର ପ୍ରେସ୍‌ରୁ ଆତ୍ମପ୍ରକାଶ କଲା । ଛାତ୍ରାବସ୍ଥାରୁ ଓଡ଼ିଆ ଭାଷା ପ୍ରେମରେ ଉଦ୍‌ବୁଦ୍ଧ ବ୍ରଜସୁନ୍ଦର ଉତ୍କଳ ପ୍ରଦେଶ ଗଠନର ସ୍ୱପ୍ନ ଦେଖିଥିଲେ । ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି ତାଙ୍କର ଅପୂର୍ବ ମମତା ନିଦର୍ଶନ ଥିଲା 'ମୁକୁର'ରେ ତାଙ୍କ ସମ୍ପାଦକୀୟ ସ୍ତମ୍ଭ । ସେ ନିର୍ଭୀକତାର ସହ ବହୁ ଗୁରୁତ୍ୱପୂର୍ଣ୍ଣ ତଥ୍ୟମାନ ପରିବେଷଣ କରି ଓଡ଼ିଆଙ୍କ ମନରେ ଚେତନା ସୃଷ୍ଟି କରିଥିଲେ । ୧୯୧୭–୧୯୨୦ ପର୍ଯ୍ୟନ୍ତ ବିହାର–ଓଡ଼ିଶା କାଉନ୍‌ସିଲର ସଭ୍ୟଥିବା ବ୍ରଜବାବୁ ଓଡ଼ିଆ–ଭାଷାଭାଷୀ ଅଞ୍ଚଳର ଏକତ୍ରିକରଣ ନିମିତ୍ତ ପାଟଣାରେ ସାଇମନ୍ କମିଶନ୍‌ଙ୍କୁ ସାକ୍ଷାତ୍ କରି ବହୁ ଦାବି ଉପସ୍ଥାପନ କରିଥିଲେ ।

ସ୍ୱତନ୍ତ୍ର ଉତ୍କଳର ଅନ୍ୟତମ ସ୍ୱପ୍ନଦ୍ରଷ୍ଟା ହେଲେ 'ଆଶା' ପତ୍ରିକାର ସୁଯୋଗ୍ୟ ସମ୍ପାଦକ ଶଶିଭୂଷଣ ରଥ । ୧୯୧୩ ମସିହାରେ 'ଆଶା'କୁ ଓଡ଼ିଶା ପ୍ରଦେଶ ଗଠନ ଆନ୍ଦୋଳନରେ ମୁଖପତ୍ର ରୂପେ ବ୍ୟବହାର କରି ନିଜକୁ ଓଡ଼ିଆ ଭାଷାର ସୁରକ୍ଷା ପାଇଁ ଉତ୍ସର୍ଗ କରିଥିଲେ । ଓଡ଼ିଆ ଭାଷା ସାହିତ୍ୟର ସର୍ବାଙ୍ଗୀନ ଉନ୍ନତି, ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଓ ଭାଷା ସୂତ୍ରରେ ଓଡ଼ିଶା ପ୍ରଦେଶ ଗଠନରେ 'ଆଶା'ର ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ । ୧୯୧୫ ଡିସେମ୍ବର ୨୦ ତାରିଖରେ ଏହାର ସମ୍ପାଦକୀୟ ସ୍ତମ୍ଭରେ ଏକ ଭାବଗର୍ଭକ ଜାତୀୟତାବାଦୀ ତଥ୍ୟ ପ୍ରକାଶ ପାଇ ଆଲୋଡ଼ନ ସୃଷ୍ଟି କରିଥିଲା । ଯାହାର କିୟଦଂଶ– ଉତ୍କଳ ସମ୍ମିଳନୀ ଓଡ଼ିଆ ଜାତିର ମିଳନ ମନ୍ଦିର । ଏହିଠାରେ ଗଞ୍ଜାମ, ସିଂହଭୂମି, ଜୟପୁର, ବସ୍ତର, ମେଦିନୀପୁରର ଓଡ଼ିଆମାନେ ରାଜନୈତିକ ଓଡ଼ିଶାବାସୀଙ୍କ ସହ ସମନ୍ୱିତ ହେବେ । ବିଭିନ୍ନ ପ୍ରାଦେଶିକ ଶାସନରେ ଥିବା ଓଡ଼ିଆମାନେ ଏକତ୍ରିତ ହୋଇ ପରସ୍ପରର ସୁଖଦୁଃଖରେ ସମଭାଗୀ ହେବା ନିମନ୍ତେ ସମ୍ମିଳନୀ ମଣ୍ଡପ ପ୍ରକୃଷ୍ଟ ସ୍ଥାନ । ଗଭର୍ଣ୍ଣମେଣ୍ଟ ଶାସନର ଭେଦନୀତି ଓ ନିୟମ ସୁଦ୍ଧା ଏଥିରେ ଅନ୍ତରାୟ ହୋଇନପାରେ । ଓଡ଼ିଆମାନେ ଯେଉଁଠାରେ ଯେଉଁ ଅବସ୍ଥାରେ ଥାଆନ୍ତୁ, ସେମାନଙ୍କର ରକ୍ତର ସମ୍ବନ୍ଧ ଶିଥିଳ ହେବ ନାହିଁ । ଏମାନେ ଏକ ଐତିହାସିକ ଜାତି । ଶାସନ ସୂତ୍ରରେ ବିଚ୍ଛିନ୍ନ ହେବା ଦ୍ୱାରା ଏ ଜାତିର ଅସ୍ତିତ୍ୱ ରଖିବା ନିମନ୍ତେ କେବଳ ନୁହେଁ, ପୂର୍ବ ଗୌରବ, ପ୍ରାଚୀନ କୀର୍ତ୍ତି ପରମ୍ପରାର ପ୍ରେରଣାରେ ଏହି ଜାତି କିପରି ଅନ୍ୟ ଭାରତୀୟ ଜାତିମାନଙ୍କ ସମକକ୍ଷ ହୋଇ ମହାଭାରତୀୟ ଜାତୀୟତା ସୃଷ୍ଟି ଓ ସଂରକ୍ଷଣରେ ସାହାଯ୍ୟ ଦେବ ତହିଁର ବ୍ୟବସ୍ଥା କରିବା ଲାଗି ସମ୍ମିଳନୀର ଉତ୍ପତ୍ତି । ସମଗ୍ର ଓଡ଼ିଶା ଅଞ୍ଚଳରେ ଏକତ୍ରୀକରଣ, ଓଡ଼ିଶାର ନ୍ୟାଯ୍ୟ ଦାବି ପ୍ରତିଷ୍ଠା ଏବଂ ଓଡ଼ିଶାର ଜାତୀୟ ପ୍ରାଣ ଓ ପ୍ରକୃତିର ସଂରକ୍ଷଣ ନିମନ୍ତେ ପୃଥକ ବିଶ୍ୱ ବିଦ୍ୟାପୀଠ ଦାବି । ହାଇକୋର୍ଟ ପ୍ରଭୃତି ସଂସ୍ଥାପନାର ଉଦ୍ୟୋଗରେ ଉତ୍କଳ ସମ୍ମିଳନୀ ଅବିଚଳିତ ରହିବ ।

ଓଡ଼ିଆ ଭାଷା ସାହିତ୍ୟର ଶ୍ରେଷ୍ଠ ସ୍ଥପତି ଓ କୃତବିଦ୍ୟ ସାରସ୍ୱତ ସାଧକ ଫକୀର ମୋହନଙ୍କ ଆତ୍ମୋତ୍ସର୍ଗର ତୁଳନା ନାହିଁ । ବଙ୍ଗାଳୀମାନଙ୍କ ହୀନ ଚକ୍ରାନ୍ତକୁ ପ୍ରତିହତ କରିବା ପାଇଁ ବାଲେଶ୍ୱରରେ 'ଉତ୍କଳ ପ୍ରେସ୍' ପ୍ରତିଷ୍ଠା କରି 'ସମ୍ବାଦ ବାହିକା' ଓଡ଼ିଆ ଖବର କାଗଜ ଚଳାଇଲେ । ତାଙ୍କ ସମ୍ପାଦନାରେ ପ୍ରକାଶ ପାଉଥିବା ଏହି କାଗଜରେ ସ୍ୱତନ୍ତ୍ର ଉତ୍କଳ ଗଠନ ସପକ୍ଷରେ କାଳଜୟୀ ସଂପାଦକୀୟମାନ ଲେଖୁଥିଲେ । ଓଡ଼ିଆ ଭାଷାକୁ ନୂତନ ରୂପରେଖ ଦେଇ ଆଧୁନିକତା ଭରି ଦେବାରେ ଫକୀର ମୋହନଙ୍କ ପ୍ରଚେଷ୍ଟା ଚିରସ୍ମରଣୀୟ । ଓଡ଼ିଆ ଭାଷା ଆନ୍ଦୋଳନର ଜଣେ ସକ୍ରିୟ ସୈନିକ ଭାବେ ଫକୀର ମୋହନଙ୍କୁ ବିବେଚନା କରାଯାଏ ।

ଓଡ଼ିଆ ଭାଷୀ ଅଞ୍ଚଳର ଏକତ୍ରୀକରଣ କରିବାକୁ ଯେଉଁ ସମ୍ବାଦପତ୍ର ନିରବଚ୍ଛିନ୍ନ ଭାବେ ଉଦ୍ୟମ ଜାରି ରଖିଥିଲା ସେଥିମଧ୍ୟରୁ 'ୟଙ୍ଗ ଉତ୍କଳ' ଅନ୍ୟତମ । ଏହାର ସୁଯୋଗ୍ୟ ସମ୍ପାଦକ ଥିଲେ ଭୁବନାନନ୍ଦ ଦାସ । ୧୯୨୦ ମସିହାରେ

ଭାଷା ଆନ୍ଦୋଳନରେ ସାମିଲ ହୋଇ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ ବ୍ରତୀ ହୋଇଥିଲେ । ସେ ୧୯୩୬ରେ ଓଡ଼ିଶା ସଚିବାଳୟ ସଂଗଠନର ଦାୟିତ୍ୱ ଗ୍ରହଣ ଓ ଉତ୍କଳର ସ୍ୱାଭିମାନ ପାଇଁ ଅନେକ ପଦକ୍ଷେପ ନେଇଥିଲେ ।

ଭାଷାଭିତ୍ତିରେ ପ୍ରଦେଶ ଗଠନ ନିମିତ୍ତ ଯେଉଁ ପତ୍ରିକାର ଗୁରୁତ୍ୱପୂର୍ଣ୍ଣ ଭୂମିକା ଥିଲା ତାହା ହେଉଛି, 'କେଶରୀ'। ୧୮୯୧ରେ ଏଥିରେ ଏକ ବଳିଷ୍ଠ ମତ ପ୍ରକାଶ ପାଇ ଓଡ଼ିଆଙ୍କ ମନରେ ଗଭୀର ଆଲୋଡ଼ନ ସୃଷ୍ଟି କରିଥିଲା । ଏଥିରେ ପ୍ରକାଶିତ ମତ ଥିଲା– 'ଯଦି ଭାଷା ଭିତ୍ତିରେ ଭାରତର ବିଭିନ୍ନ ପ୍ରଦେଶ ଗଠିତ ହୁଏ ତେବେ ଭାଷା ସହିତ ସେସବୁ ରାଜ୍ୟର ଲୋକମାନଙ୍କର ଉନ୍ନତି ଘଟିବ । ପରେ ପରେ ୧୯୦୨–୧୯୦୩ ମସିହାରେ ଓଡ଼ିଆ ଓ ଆସାମରେ ଭାଷାକୁ କେନ୍ଦ୍ରକରି ଆନ୍ଦୋଳନ ମୁଣ୍ଡ ଟେକିଲା । ଫଳସ୍ୱରୂପ ୧୯୨୦ ମସିହାରେ ଭାରତୀୟ ଜାତୀୟ କଂଗ୍ରେସ ମଧ୍ୟ ଭାଷାଭିତ୍ତିରେ ପ୍ରଦେଶ ଗଠନ ନିମିତ୍ତ ନିଷ୍ପତ୍ତି ନେଲେ ।

ଉତ୍କଳୀୟ ସ୍ୱାଭିମାନ ଓ ସଂସ୍କୃତିକୁ ଅକ୍ଷୁଣ୍ଣ ରଖି ଓଡ଼ିଆ ଭାଷାର ବିକାଶ ଦିଗରେ ଉଦ୍ୟମ ଚଳାଇବା 'ଉତ୍କଳ ସେବକ' ସମ୍ବାଦର ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ । ଏଥିରେ ସୁଚିନ୍ତିତ ସଂପାଦକୀୟ ପ୍ରକାଶ କରି ଓଡ଼ିଆମାନଙ୍କୁ ସମବେତ କରାଇବାରେ ଶଙ୍କର ପ୍ରସାଦ ପାଢ଼ୀ ଚେଷ୍ଟିତ ଥିଲେ । ୧୯୨୦ରେ ସେ ସମ୍ବଲପୁର ଜାତୀୟ ବିଦ୍ୟାଳୟର ଶିକ୍ଷକ ଥିବାବେଳେ ଦୀର୍ଘ ୮ ବର୍ଷ ଲେଖନୀ ଚାଳନା କରି ଜଣେ ସଚ୍ଚା ଉତ୍କଳୀୟର ପରିଚୟ ଦେଇଥିଲେ ।

ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ ତତ୍କାଳୀନ ସମ୍ବାଦପତ୍ର ବ୍ୟତୀତ ଅସଂଖ୍ୟ ଦେଶାତ୍ମବୋଧକ କାବ୍ୟ କବିତା, ଗଳ୍ପ, ଉପନ୍ୟାସ ଭଳି ଉଚ୍ଚାଙ୍ଗ ସାହିତ୍ୟକୃତି ପ୍ରଭାବଶାଳୀ ଭୂମିକା ଗ୍ରହଣ କରିଥିଲା । ଏଥିରେ ସ୍ୱଦେଶ ପ୍ରେମର ବାର୍ତ୍ତା ଜନସାଧାରଣଙ୍କୁ ଭାଷା ପ୍ରେମରେ ଉଦ୍‌ବୁଦ୍ଧ କରି ଓଡ଼ିଆଙ୍କ ପାଇଁ ଏକ ପ୍ରଦେଶ ଗଠନ ନିମିତ୍ତ ପ୍ରଚୋଦିତ କରିଥିଲା । ଯେଉଁ କେତେଜଣ ସ୍ମରଣୀୟ ସାହିତ୍ୟ ସାଧକ ସ୍ୱତନ୍ତ୍ର ଉତ୍କଳ ଗଠନରେ ନିଜକୁ ଉତ୍ସର୍ଗ କରିଥିଲେ ତନ୍ମଧ୍ୟରେ ମହାନ୍ ଦେଶଭକ୍ତ, ସଫଳ କାବ୍ୟଶିଳ୍ପୀ, ଜାତି ଗଠନର କାରିଗର ଉତ୍କଳ ଗୌରବ ମଧୁସୂଦନ ଦାସ । ଅମଳିନ କାବ୍ୟ ପ୍ରତିଭା ଗଙ୍ଗାଧର ମେହେର, କବି ରାଧାନାଥ ରାୟ, ପଲ୍ଲୀକବି ନନ୍ଦକିଶୋର ବଳ, ସୁ–ସାହିତ୍ୟିକ କାମପାଳ ମିଶ୍ର, ଭାଷାବିତ୍ ଗୋପାଳ ଚନ୍ଦ୍ର ପ୍ରହରାଜ । ଉତ୍କଳୀୟତାର ମହାମାନ୍ତ୍ରିକ ମଧୁସୂଦନଙ୍କ ରଚିତ କବିତା 'ଉତ୍କଳ ସନ୍ତାନ', ଜଣାଣ 'ସନ୍ତାନର ଉକ୍ତି', 'ଜନନୀର ଉକ୍ତି' 'ଜାତି ଇତିହାସ' ଓ ସମ୍ମିଳନୀରେ ଗଭୀର ଜାତୀୟତାର ସ୍ଫୁଲିଙ୍ଗ ପ୍ରକଟିତ ହୋଇଥିଲା । ସୁପ୍ତ ଓଡ଼ିଆଙ୍କୁ ଜାଗ୍ରତ କରାଇବାରେ ଏହା ଅବ୍ୟର୍ଥ୍ୟ ଔଷଧ ପରି କାର୍ଯ୍ୟ କରିଥିଲା ।

ଏକାନ୍ତ ଉତ୍କଳ ପ୍ରାଣ ଗଙ୍ଗାଧର ମେହେରଙ୍କ କାବ୍ୟ କବିତାରେ ଜାତୀୟତାର ସ୍ୱର ଝଙ୍କୃତ ହୋଇଥିଲା । ସେ ତାଙ୍କର 'ମାତୃଭୂମି' କବିତାରେ ମାତୃଭୂମି ଓ ମାତୃଭାଷାକୁ ଉଚ୍ଚସ୍ଥାନ ଦେଇଛନ୍ତି ।

ଉତ୍କଳର ସର୍ବାଙ୍ଗୀନ ଉନ୍ନତି ଓ ପ୍ରଗତି ପାଇଁ ଯେଉଁ ଜାତୀୟ ଅନୁଷ୍ଠାନ 'ଉତ୍କଳ ସମ୍ମିଳନୀ' ଗଠନ ହୋଇଥିଲା ତା'ର ସକ୍ରିୟ ସଭ୍ୟ ଥିଲେ ଗଙ୍ଗାଧର ମେହେର । ସେ ତାଙ୍କର 'ନବବର୍ଷ' ଓ 'ଉଦ୍‌ବୋଧନ'ରେ ଓଡ଼ିଆତ୍ୱର ଭାବ ଉଦ୍ରେକ କରି ସ୍ୱତନ୍ତ୍ର ଜାତି ଗଠନର ମନ୍ତ୍ର ନିନାଦିତ କରିଥିଲେ । ସମ୍ବଲପୁର ଉତ୍କଳ ସମ୍ମିଳନୀର ଉଦ୍‌ବୋଧନ ସଂଗୀତରେ ଭାଷାପ୍ରୀତିର ସ୍ୱର ଝଙ୍କୃତ ହୋଇଥିଲା ।

ଗଙ୍ଗାଧର ମେହେରଙ୍କ ରଚିତ ପ୍ରତିଟି କବିତାଂଶରେ ପ୍ରୀତିର ଅମୃତ ଅନୁଭବ ।

ଓଡ଼ିଆ ଭାଷା ଆନ୍ଦୋଳନ ସହ ସ୍ୱତନ୍ତ୍ର ଉତ୍କଳ ଗଠନର ଅନ୍ୟତମ ସ୍ୱପ୍ନଦ୍ରଷ୍ଟା ହେଲେ କାମପାଳ ମିଶ୍ର । ମଧୁସୂଦନଙ୍କ ଆହ୍ୱାନରେ ସରକାରୀ ଚାକିରି ଛାଡ଼ି ଉତ୍କଳ ଜନନୀର ସେବାରେ ନିଜକୁ ନିଯୁକ୍ତ କଲେ । ତାଙ୍କ ରଚିତ 'ସୀତା ବିବାହ'– ୧୮୯୮, 'ହରିଶ୍ଚନ୍ଦ୍ର', 'ବସନ୍ତଲତିକା' କାଳଜୟୀ କୃତି । 'ଅପୂର୍ବ ସ୍ୱପ୍ନ' କବିତାରେ ସେ ଉତ୍କଳ ଜନନୀ ସମ୍ପର୍କରେ ବହୁ ଦେଶାତ୍ମବୋଧକ ତଥ୍ୟ ପ୍ରଦାନ କରି ଅଗଣିତ ଓଡ଼ିଆଙ୍କୁ ଜାଗ୍ରତ କରାଇବାକୁ ଚେଷ୍ଟା କରିଥିଲେ ।

ସ୍ୱତନ୍ତ୍ର ଉତ୍କଳର ଅନ୍ୟତମ ଅଗ୍ରନାୟକ ହେଲେ ଦେଶସେବକ ଜଗବନ୍ଧୁ ସିଂ । ଯାହାଙ୍କ କର୍ମକ୍ଷେତ୍ର ଥିଲା ଅତ୍ୟନ୍ତ ବ୍ୟାପକ । ସେ ଏକାଧାରରେ ସଂଗ୍ରାମୀ, ଦେଶ ମିଶ୍ରଣ ଆନ୍ଦୋଳନର କର୍ଣ୍ଣଧାର, ବିଧାନସଭାର ସଭ୍ୟ ଓ ନିଷ୍ପାପର

ସମାଜସେବୀ । ତାଙ୍କ ପ୍ରଗାଢ଼ ଉତ୍କଳୀୟତାର ପ୍ରମାଣ ମିଳେ 'ପ୍ରାଚୀନ ଉତ୍କଳ' ଓ 'ଉତ୍କଳ ଗୃହଲକ୍ଷ୍ମୀ'ରୁ । ୧୯୦୬ ମସିହା ଡିସେମ୍ବର ୨୬ ତାରିଖରେ ବ୍ରହ୍ମପୁରରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀରେ ସେ ସକ୍ରିୟ ଅଂଶ ଗ୍ରହଣ କରି ଉତ୍କଳ ଜନନୀର ସେବାରେ ନିଜକୁ ସମର୍ପି ଦେଇଥିଲେ ।

ପ୍ରାତଃସ୍ମରଣୀୟ ଭାଷାପ୍ରେମୀ ନିରଞ୍ଜନ ପଟ୍ଟନାୟକଙ୍କ ଜାତି ଗଠନରେ ଭୂମିକା ଥିଲା ସ୍ୱତନ୍ତ୍ର । ଓଡ଼ିଆ ଭାଷୀ ପ୍ରଦେଶ ଗଠନ ନିମିତ୍ତ ତାଙ୍କ ଲେଖନୀ ଥିଲା ଚଳଚଞ୍ଚଳ । ଓଡ଼ିଆ ଆନ୍ଦୋଳନ ପୁସ୍ତକ ହେଉଛି ଭାଷା ଆନ୍ଦୋଳନ କ୍ଷେତ୍ରରେ ଏକ କ୍ରାନ୍ତିକାରୀ ପୁସ୍ତକ, ଯାହା ତାଙ୍କୁ ପ୍ରତିଟି ଓଡ଼ିଆ ନିକଟରେ ପରିଚିତ କରାଇବାକୁ ସକ୍ଷମ ହୋଇଛି ।

ଆଧୁନିକ ଓଡ଼ିଆ ପ୍ରଦେଶ ଗଠନର ବିରାଟ ବ୍ୟକ୍ତିତ୍ୱ ହେଲେ ଡକ୍ଟର ହରେକୃଷ୍ଣ ମହତାବ, ଜଣେ ରାଜନୀତିଜ୍ଞ ସୁ–ସାହିତ୍ୟିକ, ଐତିହାସିକ ଭାବେ ସୁପ୍ରସିଦ୍ଧ । ଆଧୁନିକ ଓଡ଼ିଆ ଭାଷା ସାହିତ୍ୟ ଓ ସଂସ୍କୃତି ପାଇଁ ତାଙ୍କ ଅବଦାନ ଅବିସ୍ମରଣୀୟ । ତାଙ୍କ ସମ୍ପାଦିତ 'ସ୍ୱରାଜ ସମାଚାର' ଜାତୀୟ ଚେତନା ଉଦ୍ରେକ କରାଇ ଉତ୍କଳପ୍ରେମୀ ଗଠନ ନିମିତ୍ତ ପଥ ସୁଗମ କରିଥିଲା ।

ଓଡ଼ିଆ ଭାଷା ଓ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ ଉଭୟ ଗଣମାଧ୍ୟମ (ସମ୍ବାଦପତ୍ର) ଓ ସାହିତ୍ୟର ଥିଲା ବଳିଷ୍ଠ ଭୂମିକା । ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱଭଳି ଜାତି ଗଠନରେ ଉଭୟର ଭୂମିକାକୁ ସ୍ୱୀକାର କରାଯାଇପାରେ । ଆଜିର ଆଧୁନିକ ଓଡ଼ିଶା ହେଉଛି ତତ୍କାଳୀନ ସମ୍ବାଦପତ୍ରର ଥିଲା ସ୍ୱପ୍ନର ପ୍ରଦେଶ । ସୁଖର କଥା ବ୍ରିଟିଶ ସରକାରଙ୍କ ଅଧୀନରେ ଥିବା ଭାରତବର୍ଷରେ ଭାଷାସୂତ୍ରରେ ଦୁଇଟି ପ୍ରଦେଶ (ରାଜ୍ୟ) ଜନ୍ମ ଲାଭ କରିଥିଲା । ସେହି ଦୁଇଟି ମଧ୍ୟରୁ ପ୍ରଥମଟି 'ଓଡ଼ିଶା', ଯାହାର ଜନସଂଖ୍ୟା ଥିଲା ୮୩ ଲକ୍ଷ ଏବଂ ଦ୍ୱିତୀୟଟି 'ସିନ୍ଧୁ ପ୍ରଦେଶ' (ଅଧୁନା ପାକିସ୍ତାନ) । ଭାଷା ଭିତ୍ତିରେ ପ୍ରଦେଶ ଗଠନ ନିମିତ୍ତ ଯେଉଁ କମିଟି ଗଠିତ ହେଲା ତା'ର ରିପୋର୍ଟକୁ ଆଧାର କରି ୧୯୫୬ ମସିହା ଅଗଷ୍ଟ ମାସରେ ଭାରତର ପାର୍ଲାମେଣ୍ଟ ଭାଷାଭିତ୍ତିରେ ପ୍ରଦେଶ ଗୁଡ଼ିକର ପୁନର୍ଗଠନ ନିଜର ଆଇନ ପାସ୍ ହେଲା । ୧୯୬୦ରେ ଦୋ ଭାଷୀ ବମ୍ବେ ରାଜ୍ୟ ମହାରାଷ୍ଟ୍ର ଓ ଗୁଜୁରାଟ ରାଜ୍ୟ ଭାବରେ ବିଭକ୍ତ ହେଲା । ପରେ ସେହି ୧୯୬୦ରେ ନାଗାଲାଣ୍ଡ ରାଜ୍ୟ ମଧ୍ୟ ଗଠିତ ହେଲା । ମିଜୋ ଅଧ୍ୟୁଷିତ ପାର୍ବତ୍ୟ ଅଞ୍ଚଳରେ ବିଦ୍ରୋହ ହୋଇ ୧୯୬୬ରେ ମିଜୋରାମ ପ୍ରଦେଶ ଗଠିତ ହେଲା । ଏହାପରେ ୧୯୬୯ରେ ଖସି ବହୁତଳ ମେଘାଳୟ, ତ୍ରିପୁରା ପରେ ୧୯୭୨ ମସିହାରେ ଅରୁଣାଚଳ ପ୍ରଦେଶ ଜାତି ଓ ଭାଷାଭିତ୍ତିରେ ଗଠିତ ହେଲା । ଜାତି ଓ ଭାଷା ଭିତ୍ତିରେ ଏବେବି ପ୍ରଦେଶ ଗଠନ ନିମିତ୍ତ ଆନ୍ଦୋଳନ ମୁଣ୍ଡ ଟେକିଛି ଯାହାର ଜ୍ୱଳନ୍ତ ଉଦାହରଣ ହେଲା ତେଲେଙ୍ଗାନା ରାଷ୍ଟ୍ର ଗଠନର ସ୍ୱପ୍ନ ।

ମୋଟ ଉପରେ ଉଲ୍ଲେଖ କଲେ ୧୯୩୬ ମସିହା ଏପ୍ରିଲ ୧ ହେଉଛି ପ୍ରତ୍ୟେକ ଓଡ଼ିଆ ଓ ଭାରତବାସୀଙ୍କ ପାଇଁ ଏକ ଅବିସ୍ମରଣୀୟ ମୁହୂର୍ତ୍ତ । ଏହି ମଙ୍ଗଳ ମୁହୂର୍ତ୍ତରେ କୋଟି କୋଟି ଓଡ଼ିଆଙ୍କ ସ୍ୱପ୍ନର ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହୋଇଥିଲା । ସ୍ୱୀକାର କରିବାକୁ ହୁଏ ତତ୍କାଳୀନ ସମ୍ବାଦପତ୍ର ଓ ସାହିତ୍ୟ ଆଧୁନିକ ଓଡ଼ିଶା ଗଠନରେ ବଳିଷ୍ଠ ପୃଷ୍ଠଭୂମି ସୃଷ୍ଟି କରିବା ସହ ନିର୍ଣ୍ଣାୟକ ଭୂମିକା ଗ୍ରହଣ କରିଥିଲା ।

**ସହାୟକ ଗ୍ରନ୍ଥସୂଚୀ:**


୧) ଓଡ଼ିଆ ଭାଷା ଆନ୍ଦୋଳନ– ପ୍ରଫେସର ବଂଶୀଧର ମହାନ୍ତି

୨) ଓଡ଼ିଆ ଭାଷା ଆନ୍ଦୋଳନ ଓ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ– ପ୍ରବୋଧ କୁମାର ମିଶ୍ର

୩) ସାମ୍ବାଦିକତା କ୍ଷେତ୍ରରେ ଉଜ୍ଜ୍ୱଳ ପୁରୁଷ ଉତ୍କଳମଣି ଗୋପବନ୍ଧୁ– ଅଧ୍ୟାପକ ପଠାଣି ପଟ୍ଟନାୟକ, ଗୋପବନ୍ଧୁ ଶ୍ରାଦ୍ଧ ସଂଖ୍ୟା–୨୦୧୧

୪) ଓଡ଼ିଶା ପ୍ରଦେଶ ଗଠନରେ ଗଣମାଧ୍ୟମ: ଏକ ଅନାଲୋଚିତ ଦିଗ– ଶ୍ରୀ ସୁଭାଷ ଚନ୍ଦ୍ର ପଟ୍ଟନାୟକ– ବିଜୟା–ଏପ୍ରିଲ ୨୦୧୧ ସଂଖ୍ୟା ।


ଖୁଣ୍ଟୁଣୀ, ଆଠଗଡ଼, କଟକ





# କଳିଙ୍ଗର ବରପୁତ୍ର ବିଜୁବାବୁ

**ଉଦୟନାଥ ତ୍ରିପାଠୀ**

ଅନେକ ମନୁଷ୍ୟଙ୍କ ସମଷ୍ଟିରେ ସୃଷ୍ଟି ହୋଇଥାଏ ମାନବ ସମାଜ । ମାତ୍ର ଏହି ମାନବ ସମାଜ ମଧ୍ୟରେ ଜଣେ ଜଣେ ମନୁଷ୍ୟ ନିଜର କର୍ମ, ନିଜର ଅସାଧାରଣ ବ୍ୟକ୍ତିତ୍ୱ ଦ୍ୱାରା ସମାଜରେ ଲାଭ କରନ୍ତି ଶ୍ରେଷ୍ଠ ବ୍ୟକ୍ତିତ୍ୱର ସ୍ଥାନ । ସେମାନଙ୍କର ଦିବ୍ୟଗୁଣ, ତ୍ୟାଗ, ସେବା ଆଦର୍ଶ, କାର୍ଯ୍ୟଦକ୍ଷତା, ବ୍ୟୁତ୍ପନ୍ନ ବୁଦ୍ଧି ଓ ବିଚକ୍ଷଣତା ଯୋଗୁଁ ପଦବାଚ୍ୟ ହୋଇଥାନ୍ତି ବରପୁତ୍ର ରୂପେ । କଳିଙ୍ଗ ବୀରଭୂମିର ବରପୁତ୍ରର ଯୋଗ୍ୟତା ଲାଭ କରିପାରିଥିଲେ ଶ୍ରୀଯୁକ୍ତ ବିଜୟାନନ୍ଦ ପଟ୍ଟନାୟକ, ଯେକି 'ବିଜୁବାବୁ' ରୂପେ ସକଳ ଉତ୍କଳବାସୀଙ୍କର ଆଦରର ପାତ୍ର ହୋଇପାରିଥିଲେ ।

ଉତ୍କଳ ଜନନୀର ପବିତ୍ର ଭୂମିରେ ସାହସୀ ବୀର ଉତ୍କଳର ବରପୁତ୍ର ବିଜୟାନନ୍ଦ ପଟ୍ଟନାୟକଙ୍କ ଜନ୍ମ ହୋଇଥିଲେ ୧୯୧୬ ମସିହା ମାର୍ଚ୍ଚ ମାସ ୫ ତାରିଖରେ । ପିତା ଶ୍ରୀ ଲକ୍ଷ୍ମୀନାରାୟଣ ପଟ୍ଟନାୟକ ଓ ମାତା ଆଶାଲତା ଦେବୀଙ୍କର ଔରସରୁ କଟକ ତୁଳସୀପୁରସ୍ଥିତ ଆନନ୍ଦ ଭବନରେ । ସେ ରେଭେନ୍ସା କଲେଜିଏଟ୍ ସ୍କୁଲରେ ସ୍କୁଲ ଶିକ୍ଷା ସମାପ୍ତ କରି ପ୍ରବେଶ ହୁଅନ୍ତି ରେଭେନ୍ସା କଲେଜର ବିଜ୍ଞାନ ପାଠ୍ୟକ୍ରମରେ । ସେଠାରୁ ସେ ବି.ଏସ୍‌ସି ପାଠ୍ୟକ୍ରମକୁ ଅତି ସଫଳତାର ଶେଷ କରି ମନୋନିବେଶ କରନ୍ତି ପାଇଲଟ୍ ଟ୍ରେନିଂରେ ।

ଅତି ଅଳ୍ପ ସମୟ ମଧ୍ୟରେ ବିଜୁବାବୁ ଜଣେ ସୁଦକ୍ଷ ପାଇଲଟ୍‌ର ପରିଚୟ ଦିଅନ୍ତି ନିଜର ସାହସିକ ଓ ବିଚକ୍ଷଣ ବିମାନ ପରିଚାଳକଭାବେ । ରୟାଲ୍ ଇଣ୍ଡିଆ ଏହାର ଫୋର୍ସ ଓ ଇଣ୍ଡିଆନ୍ ଏୟାରୱେଜ୍‌ରେ ଜଣେ ସୁଦକ୍ଷ ପାଇଲଟ ଭାବରେ ସେ ପରିଚୟ ପ୍ରଦାନ କରନ୍ତି ନିଜର ଅଦ୍ୱିତୀୟ ପ୍ରତିଭା ଜାତୀୟ ଓ ଅନ୍ତର୍ଜାତୀୟ ସ୍ତରରେ ଏବଂ ଭାରତର ବଡଲାଟ୍ ୱାଭେଲ୍‌ଙ୍କର ସୁଦକ୍ଷ ପାଇଲଟ ଭାବରେ । ୧୯୪୭ ମସିହାରେ ଡଚ୍-ଇଣ୍ଡୋନେସିଆ ଯୁଦ୍ଧ ଚାଲିଥିବା ସମୟରେ ସେ ପଣ୍ଡିତ ଜବାହରଲାଲ ନେହରୁଙ୍କ ନିର୍ଦ୍ଦେଶକ୍ରମେ ଇଣ୍ଡୋନେସିଆର ପ୍ରଥମ ପ୍ରଧାନମନ୍ତ୍ରୀ ସୁଲତାନ ସାହାରିୟର, ମହମ୍ମଦ ହଟ୍ଟାଙ୍କୁ କୁଶଳତାର ସହ ଦିଲ୍ଲୀ ସହରକୁ ନିଜ ବିମାନରେ ବସାଇ ନେଇ ଆସିବାର ଶ୍ରେୟତା ଅର୍ଜନ କରିବା ସହିତ ରାଷ୍ଟ୍ରପତି ସୁକର୍ଣ୍ଣଙ୍କ ଜୀବନ ରକ୍ଷା କରିପାରିଥିଲେ ।

ବିଜୁବାବୁଙ୍କର ଏପରି ଅପୂର୍ବ ସାହସିକ ପଦକ୍ଷେପରେ ଇଣ୍ଡୋନେସିଆ ସରକାର ତାଙ୍କ କାର୍ଯ୍ୟରେ ସନ୍ତୁଷ୍ଟ ହୋଇ ତାଙ୍କୁ ପୁରସ୍କାର ସ୍ୱରୂପ ୫୦୦ କୋଟି ଟଙ୍କା ପ୍ରଦାନ କରିଥିଲେ ୧୯୫୦ ମସିହାରେ । ମାତ୍ର ବିଜୁବାବୁ ଉଦାର ଓ ଅତି ଉଚ୍ଚମନା । ବିଜୁବାବୁ ଟଙ୍କା ନିଜେ ନଆଣି ଇଣ୍ଡୋନେସିଆ ବାସୀଙ୍କର କଲ୍ୟାଣ ଉଦ୍ଦେଶ୍ୟରେ ଦାନ କରି ନିଜର ମହାନୁଭବତାର ପରିଚୟ ପ୍ରଦାନ କରିପାରିଥିଲେ । ଏହିପରି ସେ ୧୯୪୮ରେ ଭାରତ ଉପରେ ପାକିସ୍ଥାନର ଆକ୍ରମଣ ବେଳେ ଓ ୧୯୬୨ ମସିହାରେ ଓ ୧୯୬୫ ମସିହାରେ ଭାରତ ପାକିସ୍ଥାନ ଯୁଦ୍ଧକାଳରେ ନିଜର ଅପୂର୍ବ ସାହସିକତା ଓ ଦେଶପ୍ରେମର କାର୍ଯ୍ୟ କରି ଶାସ୍ତ୍ରୀ ଓ ନେହରୁଙ୍କ ପରି ପ୍ରଧାନମନ୍ତ୍ରୀଙ୍କର ପ୍ରଶଂସାର ପାତ୍ର ହୋଇ ପାରିଥିଲେ । ରାଜନୀତି କ୍ଷେତ୍ରରେ ବିଜୁବାବୁଙ୍କ ପ୍ରଥମ ପ୍ରବେଶ ହୁଏ ୧୯୪୦ ମସିହାରେ ଜୟପ୍ରକାଶ ନାରାୟଣଙ୍କ ସାଥିରେ । ତାଙ୍କର ରାଜନୈତିକ ଜୀବନ ଆରମ୍ଭ ହୁଏ 'ଭାରତ ଛାଡ' ଆନ୍ଦୋଳନ ୧୯୪୨ ମସିହାରେ । ୧୯୬୧ ମସିହାରେ ସେ କଂଗ୍ରେସ ପ୍ରଦେଶ

କମିଟିର ସଭାପତିରୂପେ ନିର୍ବାଚିତ ହୋଇଥିଲେ । ସେହିବର୍ଷ ଜୁନ୍ ମାସରେ ଓଡ଼ିଶା ବିଧାନସଭାର ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ ହେଲା । ବିଜୁବାବୁଙ୍କ କଂଗ୍ରେସ ଦଳ ସଂଖ୍ୟା ଗରିଷ୍ଠତା ହାସଲ କଲା ଓ ସେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ପଦ ଅଳଙ୍କୃତ କଲେ ।

ସେ ଶାସନ କ୍ଷମତାରେ ଥିବାବେଳେ ପାରାଦ୍ୱୀପ ବନ୍ଦର, ପାରାଦୀପ–ଦଇତାରୀ ଏକ୍ସପ୍ରେସ ହାଇୱେ, ବାଲିମେଳା ବିଦ୍ୟୁତ୍ ଯୋଜନା, ତାଳଚେର ଥର୍ମାଲ ପ୍ରକଳ୍ପ, ସୁନାବେଡା ମିଗ୍ ବିମାନ କାରଖାନା, ବଡବିଲ୍ ଲୁହା କାରଖାନା, ନାଲ୍କୋ ଆଲୁମିନିଅମ୍ ପ୍ରକଳ୍ପ, ରାଉରକେଲା ଆଞ୍ଚଳିକ ଇଂଜିନିୟରିଂ କଲେଜ୍, ବିଭିନ୍ନ ଅଞ୍ଚଳରେ ବିଜ୍ଞାନ, ଇଞ୍ଜିନିୟରିଂ ଓ ପଲିଟେକ୍ନିକ୍ ଅନୁଷ୍ଠାନମାନ ସ୍ଥାପନ କରାଇ ଓଡ଼ିଶାକୁ ଏକ ପ୍ରଗତିଶୀଳ, ଶିଳ୍ପ ସମ୍ପନ୍ନ ରାଜ୍ୟରେ ପରିଣତ କରିବାକୁ ଆପ୍ରାଣ ଚେଷ୍ଟା ଚଳାଇ ଥିଲେ । ଚଉଦ୍ୱାରଠାରେ ଏକ ଶିଳ୍ପ ଓ ବସ୍ତ୍ର ଉଦ୍ୟୋଗ କାରଖାନା ସ୍ଥାପନ କରିବା ସହିତ ଓଡ଼ିଶାରେ ବୈଷୟିକ ଓ ବିଜ୍ଞାନ ଶିକ୍ଷାର ପ୍ରସାର ଓ ପ୍ରଚାର ପାଇଁ ଦୃଢ ପଦକ୍ଷେପ ନେଇଥିଲେ । ଏହା ବ୍ୟତୀତ ସେ ଚାରିବାଟିଆଠାରେ ସାମରିକ ବିମାନ ଅବତରଣ କେନ୍ଦ୍ର, ସମ୍ବଲପୁର ଓ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ, ବୁର୍ଲାଠାରେ ଇଞ୍ଜିନିୟରିଂ ଓ ମେଡିକାଲ କଲେଜ ପ୍ରତିଷ୍ଠା କରି ଓଡ଼ିଶାରେ ନିର୍ମାଣ ଯୁଗର ଶୁଭାରମ୍ଭ କରିଥିଲେ ।

ଜାତୀୟସ୍ତରରେ ୧୯୭୭ ମସିହାରେ ଜନତା ଦଳର ଜନ୍ମ ହେଲା । ବିଜୁବାବୁ ଓଡ଼ିଶାରେ ସମସ୍ତ ଅଣକମ୍ୟୁନିଷ୍ଟ ଦଳମାନଙ୍କୁ ଏକତ୍ର କରି ଜନତା ଦଳର ଶୁଭାରମ୍ଭ କରିଥିଲେ । ୧୯୯୦ ମସିହାରେ ସେ ଏହି ଦଳର ନେତୃତ୍ୱ ନେଇ ବିପୁଳ ସଂଖ୍ୟା ଗରିଷ୍ଠତା ହାସଲ କରି ଦ୍ୱିତୀୟ ଥର ପାଇଁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ପଦ ଅଳଙ୍କୃତ କରିଥିଲେ । ତାଙ୍କ ଶାସନ କାଳ ଅବଧିରେ ଓଡ଼ିଶାରୁ ଦାରିଦ୍ର୍ୟ ଦୂର କରିବା ପାଇଁ ବୈପ୍ଳବିକ ପଦକ୍ଷେପ ନେବା ସହିତ ମହିଳାମାନଙ୍କୁ ଅଧିକ ସଂଖ୍ୟାରେ ସରକାରୀ ଚାକିରିରେ ସ୍ଥାନ ଦେବା ପାଇଁ ସେମାନଙ୍କର ବୟସ ସୀମାକୁ ବୃଦ୍ଧି କରିଥିଲେ ଓ ଶ୍ରମିକମାନଙ୍କର ସର୍ବନିମ୍ନ ମଜୁରୀ ୨୫ ଟଙ୍କାକୁ ବୃଦ୍ଧି କରିଥିଲେ । ରାଜ୍ୟରେ ମହିଳା ବିକାଶ ନିଗମ, ମହିଳା ବ୍ୟାଙ୍କ, ରାଜ୍ୟ ମହିଳା କମିଶନ ଇତ୍ୟାଦି ପ୍ରତିଷ୍ଠା କରାଇଥିଲେ । ରାଜ୍ୟରେ ଲୋକାଭିମୁଖୀ ପ୍ରଶାସନକୁ ଲୋକପ୍ରିୟ କରାଇବା ପାଇଁ ଜିଲ୍ଲାମାନଙ୍କର ପୁନର୍ଗଠନ କରାଇ ଜିଲ୍ଲା ସଂଖ୍ୟା ୧୩ରୁ ୩୦କୁ ବୃଦ୍ଧି କରିଥିଲେ । ପ୍ରବାଦ ପୁରୁଷ ବିଜୁ ପଟ୍ଟନାୟକ ହେଉଛନ୍ତି ଓଡ଼ିଶାର ଜଣେ ଚଳନ୍ତି ଇତିହାସ । ସେ ଓଡ଼ିଆ ଜାତୀୟତା, ନିର୍ଭୀକତା ଓ ବୀରତ୍ୱର ଜଣେ ମୂର୍ତ୍ତିମନ୍ତ ପୁରୁଷ । କଳିଙ୍ଗ ଓ ଖାରବେଳ ଶବ୍ଦ ସତତ ତାଙ୍କ ହୃଦୟକୁ ଆନ୍ଦୋଳିତ ଓ ଉତ୍‌ଫୁଲିତ କରୁଥିଲା । କଳିଙ୍ଗ ଶବ୍ଦ ପ୍ରତି ତାଙ୍କର ଥିଲା ଅସୀମ ଶ୍ରଦ୍ଧା । ବିଜୁବାବୁଙ୍କୁ କଳିଙ୍ଗର ଅତୀତ ଗୌରବ ଓ ବୀର ପୁରୁଷମାନଙ୍କର ଗାଥା ବିମୋହିତ କରୁଥିଲା । ତାଙ୍କ ଦୃଷ୍ଟିରେ କଳିଙ୍ଗ ଶବ୍ଦର ଅର୍ଥ ହେଉଛି ସାହସୀ, ନିର୍ଭୀକ, ସୁର ଓ ବୀର, ନିର୍ଭୀକତା, ସାହସ, ଦୁସାହସିକତା, ବୀରତ୍ୱ, ତ୍ୟାଗ, ଆତ୍ମୋତ୍ସର୍ଗ । ବଳିଦାନ ହେଉଛି କଳିଙ୍ଗ ବୀରଙ୍କର ପରିଚୟ । କଳିଙ୍ଗର ହୃତଗୌରବ ଫେରାଇ ଆଣିବା ଉପରେ ତେଣୁ ସେ ଗୁରୁତ୍ୱ ଦେଉଥିଲେ । ଓଡ଼ିଶାର ଜାତୀୟ ଭାବନା ଓ ଚେତନାକୁ ଉଜ୍ଜୀବିତ କରିବା ପାଇଁ ଏବଂ ଓଡ଼ିଆଜାତିର ଜାତିପ୍ରୀତିକୁ ସମୃଦ୍ଧ କରିବା ପାଇଁ ସେ ଆରମ୍ଭ କରିଥିଲେ କଟକର ବାଲିଯାତ୍ରା । ତାଙ୍କଦ୍ୱାରା ପ୍ରତିଷ୍ଠିତ ସଂସ୍ଥାଗୁଡ଼ିକର ସେ ନାମ ରଖିଥିଲେ କଳିଙ୍ଗ ଅନୁଷ୍ଠାନ । କଳିଙ୍ଗଟ୍ୟୁବ୍ସ, କଳିଙ୍ଗ ଏୟାର ଲାଇନ୍ସ, କଳିଙ୍ଗ ଆଇରନ୍ ୱାର୍କସ, କଳିଙ୍ଗ ପୁରସ୍କାର, କଳିଙ୍ଗ ରେଫ୍ରିଜରେଟର, କଳିଙ୍ଗ ସମ୍ବାଦପତ୍ର ଓ କଳିଙ୍ଗ ଫାଉଣ୍ଡେସନ ହେଉଛି ତାଙ୍କ ଉନ୍ନତ ଚିନ୍ତା ଓ ଚେତନାର ନମୁନା ।

ବିଜୁବାବୁ କହୁଥିଲେ, 'ମୁଁ ଖାରବେଳ ଜାତିର ଦାୟାଦ, ପୁରୁଷୋତ୍ତମ ଜାତିର ବଂଶଧର, ଜଗନ୍ନାଥ ସଂସ୍କୃତିର ଲୋକ, ମୋ ରାଜ୍ୟ ତା'ର ଉତ୍କର୍ଷ କଳା ପାଇଁ ନାମ ନେଇଛି 'କଳିଙ୍ଗ' । ବିଜୁବାବୁଙ୍କ ଜାତିପ୍ରୀତିର ପଟ୍ଟାନ୍ତର ନାହିଁ, ସେ ଓଡ଼ିଶାକୁ ତାଙ୍କ କଠିନ ଶ୍ରମ ବଳରେ ଅନ୍ତର୍ଜାତୀୟ ସ୍ତରକୁ ଉନ୍ନୀତ କରିପାରିଥିଲେ । ଆମ ରାଜ୍ୟର ଉତ୍ତର ଦାୟାଦମାନଙ୍କ ପାଇଁ ବିଜୁବାବୁଙ୍କ ଉଦ୍ୟମ ସର୍ବଦା ସ୍ମରଣୀୟ । ସେ ଆମ ଜାତିର ନମସ୍ୟ, ଚିରପୂଜ୍ୟ ଏବଂ ଆଗାମୀ ପିଢି ପାଇଁ ପ୍ରେରଣାର ଉତ୍ସ । ସେ ଏବେ ଆଉ ଆମମାନଙ୍କ ମଧ୍ୟରେ ନାହାନ୍ତି । ତାଙ୍କର ଅମର ଆତ୍ମା ଆମଠାରୁ ବିଦାୟ ନେଇ କେଉଁ ଅଦୃଶ୍ୟ ରାଜ୍ୟରେ ମିଶିଯାଇଛି । ମାତ୍ର ତାଙ୍କର ଅମଳିନ ସ୍ମୃତି ଆମ ହୃଦୟରେ ଉଜ୍ଜୀବିତ ହୋଇ ରହିଛି ଓ ରହିଥିବ ଚିରକାଳ ।

ଶ୍ରଦ୍ଧା, ଆଦିମାତା କଲୋନୀ, ପୋଅ: ମଞ୍ଚେଶ୍ୱର
ରେଳବାଇ କଲୋନୀ, ଭୁବନେଶ୍ୱର–୧୭

# ମହାନ୍ ଭାରତୀୟ

**ଗୋକୁଳ ଚନ୍ଦ୍ର ପଟ୍ଟନାୟକ**

ବିଶ୍ୱ ବିଖ୍ୟାତ ପୁସ୍ତକ 'The Mother' ରେ ନୋବେଲ ପ୍ରାଇଜ୍ ବିଜେତା ପାର୍ଲ ବକ୍ 'ସାହସିକତାର' ଅନୁଶୀଳନ କରି ଏହାକୁ ତିନୋଟି ପର୍ଯ୍ୟାୟରେ ବିଭକ୍ତ କରିଛନ୍ତି, (କ) ଶାରୀରିକ ସାହସ (ଆତ୍ମରକ୍ଷା ପାଇଁ ଯାହା ଉଦ୍ଦିଷ୍ଟ) (ଖ) ଯେଉଁ ନିସ୍ୱାର୍ଥପର କାର୍ଯ୍ୟ ଆତ୍ମୀୟ ବନ୍ଧୁ ବା ପଡୋଶୀ ବା ସାଙ୍ଗ ସାଥୀ କିମ୍ବା ଦେଶ ବିପଦରେ ପଡିଥିଲେ ରକ୍ଷା କରିବା ଦିଗରେ ଯାହା ଆବଶ୍ୟକ ପଡିଥାଏ (ଗ) ନୈତିକ ସାହସ– ଯାହାକି ଯେତେ କ୍ଷମତାଶାଳୀ ବ୍ୟକ୍ତି ହୋଇଥାଆନ୍ତୁ ନା କାହିଁକି, ତାଙ୍କର ଅନୁଚିତ, ଅସଙ୍ଗତ ଓ ଆସ୍ପର୍ଦ୍ଧାପୂର୍ଣ୍ଣ ଉକ୍ତି ବିରୋଧରେ ଭବିଷ୍ୟତରେ ଯେତେ ଆଶଙ୍କା ଥିଲେ ମଧ୍ୟ ସାହସିକ ବ୍ୟକ୍ତି ସ୍ୱର ଉତ୍ତୋଳନ କରି ସତ୍ୟ ଓ ଠିକ୍ କଥା ଦୃଢତାର ସହିତ ନିର୍ଭୀକଭାବେ ଶୁଣାଇଥାଆନ୍ତି ।

ବିଭିନ୍ନ କ୍ଷେତ୍ରରେ ଏହି ନୈତିକ ସାହସର ପରାକାଷ୍ଠା ପ୍ରଦର୍ଶନ କରିଥିବା ଦେଶର କେତେକ ବରପୁତ୍ରଙ୍କ ମଧ୍ୟରୁ ଜାତୀୟ ଦୃଶ୍ୟପଟରେ ଉଦ୍‌ଭାସିତ କଳିଙ୍ଗ କେଶରୀ ସ୍ୱନାମଧନ୍ୟ ବୈମାନିକ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକଙ୍କ ଘଟଣା ବହୁଳ ଜୀବନର ଗୋଟିଏ ଘଟଣା ବାସ୍ତବରେ ପ୍ରଣିଧାନଯୋଗ୍ୟ ।

ଅବିଭାଜ୍ୟ ଭାରତର ଉତ୍ତର–ପଶ୍ଚିମ ସୀମାନ୍ତ ପ୍ରଦେଶ ବର୍ତ୍ତମାନ ପାକିସ୍ତାନର ଅନ୍ତର୍ଭୁକ୍ତ । ସେଠାର ଘନ ପାର୍ବତ୍ୟ ଅଞ୍ଚଳ 'କ୍ୱେଟା'ରେ ଇଂରେଜ ଶାସନ ତଥା ତଦାନୀନ୍ତନ ସ୍ଥାନୀୟ ଶାସନ ବିରୋଧରେ ପ୍ରବଳ ଜନ ବିଦ୍ରୋହ ଲାଗିରହିଥାଏ । ବିଦ୍ରୋହ ଏପରି ତୀବ୍ର ଘନଘଟା ସୃଷ୍ଟି କରିଥିଲା ଯେ ତତ୍କାଳୀନ ଭାଇସ୍‌ରାୟ ନିରୁପାୟ ହୋଇ ଲଣ୍ଡନସ୍ଥ ବ୍ରିଟିଶ ସରକାରଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ରାଣୀ ଭିକ୍ଟୋରିଆ ଓ ପ୍ରଧାନମନ୍ତ୍ରୀ ଅଟଲିଙ୍କ ନିର୍ଦ୍ଦେଶ ମତେ ଲର୍ଡ ୱାଭେଲ ବ୍ରିଟିଶ ସାମ୍ରାଜ୍ୟର ସ୍ୱତନ୍ତ୍ର ଦୂତ ଭାବରେ ବିଶେଷ କ୍ଷମତାର ଅଧିକାରୀ ହୋଇ ବିଦ୍ରୋହ ଦମନ କରିବା ପାଇଁ ଦିଲ୍ଲୀ ମଧ୍ୟ ଦେଇ କ୍ୱେଟା ଅଭିମୁଖେ ପ୍ରେରିତ ହେଲେ । ଲର୍ଡ ୱାଭେଲ ବିମାନ ମାର୍ଗରେ ଆସି ଦିଲ୍ଲୀରେ ଅବତରଣ କଲେ । ସେଠାରେ ସେ ଜାଣିବାକୁ ପାଇଲେ ଯେ ଦିଲ୍ଲୀଠାରୁ କ୍ୱେଟା ପର୍ଯ୍ୟନ୍ତ ବିପଦପୂର୍ଣ୍ଣ ଉଚ୍ଚ ଶିଖରୀଯୁକ୍ତ ଘନ ଜଙ୍ଗଲ ଓ ପାର୍ବତ୍ୟ ଦୁର୍ଗମ ଅଞ୍ଚଳରେ ପରିପୂର୍ଣ୍ଣ । ଏହାର ଆକାଶ ମାର୍ଗରେ ନିରାପଦ ବିମାନ ଚାଳନ କରିବା ବୈମାନିକମାନଙ୍କ ସମ୍ମୁଖରେ ସାହସିକତା ତଥା ଚାଳନାପଟୁତାର ଏକ ଆହ୍ୱାନ ଥିଲା । ସେତେବେଳେ ଦିଲ୍ଲୀରେ ଅବସ୍ଥାପିତ ଦକ୍ଷ ବୈମାନିକମାନଙ୍କ ମଧ୍ୟରେ ଇଂରେଜ, ଫରାସୀ, ଜର୍ମାନ ଇତ୍ୟାଦି ଅନ୍ୟାନ୍ୟ ପାଶ୍ଚାତ୍ୟ ଉନ୍ନତ ଦେଶର ବ୍ୟକ୍ତି ବିଶେଷ ସ୍ଥାନ ପାଇଥିଲେ । କିନ୍ତୁ ବିମାନଚାଳନା ଲିପିବଦ୍ଧ ବିବରଣୀ (Flight Record) ମଧ୍ୟରେ ଭାରତୀୟ ବୈମାନିକ ବିଜୁ ପଟ୍ଟନାୟକଙ୍କ ନାମ ସର୍ବାଗ୍ରେ ବିଜୟ ମଣ୍ଡିତ କରି ବହୁ ବର୍ଷ ପର୍ଯ୍ୟନ୍ତ ଅମ୍ଳାନ ରହିଥିଲା । ସ୍ୱାଭାବିକଭାବେ ଲର୍ଡ ୱାଭେଲ ଚାହିଁଲେ ତାଙ୍କୁ ସର୍ବଶ୍ରେଷ୍ଠ ବୈମାନିକ ନିରାପଦରେ ଅପେକ୍ଷାକୃତ ଅଳ୍ପ ସମୟରେ ଯେପରି କ୍ୱେଟାକୁ ଉଡାଇ ନେବେ ଏବଂ ତା' ପୂର୍ବରୁ ତାଙ୍କୁ ସେ ବ୍ୟକ୍ତିଗତଭାବେ ସ୍ୱଚକ୍ଷୁରେ ଦେଖିବାକୁ ମଧ୍ୟ ଇଚ୍ଛାକଲେ । ବିଜୁବାବୁଙ୍କୁ ଦେଖେଇବାକୁ ଭାରତ ସରକାରଙ୍କର ଦେଶରକ୍ଷା ବିଭାଗ ସଚିବ ମହାମାନ୍ୟ ୱାଭେଲ ସାହେବଙ୍କୁ ପଥ ପ୍ରଦର୍ଶନ କଲେ । ସେତେବେଳକୁ ଅଗ୍ରଣୀ ବୈମାନିକ ବିଜୁବାବୁ ବିମାନଘାଟୀର କଫି ହାଉସ୍‌ରେ କଫି ପାନ

କରୁଥିଲେ । ଅନତି ଦୂରରୁ ଆଙ୍ଗୁଳି ନିର୍ଦ୍ଦେଶ କରି ସଚିବ ବିଜୁବାବୁଙ୍କୁ ଦେଖାଇ ତାଙ୍କ ବିଷୟରେ କହିଲାବେଳେ ଲର୍ଡ ୱାଭେଲ୍ ତତ୍‌କ୍ଷଣାତ୍ ପ୍ରଶ୍ନ କରିଥିଲେ, 'ତାଙ୍କର ଜାତୀୟତା କ'ଣ ? ଉତ୍ତରରେ ସଚିବ କହିଲେ 'ଇଣ୍ଡିୟାନ' । ଘୃଣା ବ୍ୟଞ୍ଜକ ଦୃପ୍ତ କଣ୍ଠରେ ୱାଭେଲ୍ ପ୍ରତ୍ୟୁତ୍ତର ଦେଲେ- 'ବ୍ଲଡି ଇଣ୍ଡିୟାନ୍' !

ଏହି ଅରୁଚିକର କଥୋପକଥନ ଜାତୀୟପ୍ରେମୀ ସ୍ୱାଧୀନଚେତା ବିଜୁବାବୁଙ୍କର ସହସା ଧ୍ୟାନ ଆକର୍ଷଣ କଲା । ସେ ବିସ୍ମିତ ହେବା ସଙ୍ଗେ ସଙ୍ଗେ ଏହି ଆକ୍ଷେପୋକ୍ତି ତାଙ୍କର କର୍ଣ୍ଣ ଗହ୍ୱରରେ ଅସହ୍ୟ ଶୀହରଣ ସୃଷ୍ଟି କରିଥିଲା । ସେହି ମୁହୂର୍ତ୍ତରେ ସେ ଉପଯୁକ୍ତ ପ୍ରତିଶୋଧ ନେବା ପାଇଁ ପ୍ରତିଜ୍ଞାବଦ୍ଧ ହେଲେ ହୀନମନା ଗର୍ବୀ ୱାଭେଲ୍ ସାହେବ ବିରୋଧରେ । କିଛିକ୍ଷଣ ପରେ ନିଜ ଜୀବନ ରକ୍ଷାର ଲାଳସାରେ ପ୍ରଲୁବ୍ଧ ଓ ପ୍ରକୃତିସ୍ଥ ହୋଇ ୱାଭେଲ ସର୍ବଶେଷରେ ସେଇ ବିଜୁବାବୁଙ୍କୁ ହିଁ ଚାହିଁଲେ ।

ଏହା ବହୁ ବର୍ଷ ତଳର ଘଟଣା । ଏହି ରୋମାଞ୍ଚକର ଆତ୍ମାଭିମାନ ତଥା ଆତ୍ମ ମର୍ଯ୍ୟାଦାର ପ୍ରତୀକ ବୀରୋଚିତ କାର୍ଯ୍ୟ ସ୍ୱାଧୀନଚେତା ବିଜୁବାବୁଙ୍କ ଅମ୍ଳାନ କାହାଣୀ ସ୍ୱାଧୀନତା ଦିବସ ଅବସରରେ ସ୍ମରଣ କରିବାର ପ୍ରକୃଷ୍ଟ ସମୟ ଯାହାକି ଉତ୍କଳୀୟ ଯୁବ ଶକ୍ତିକୁ ହୀନମନ୍ୟତା ତ୍ୟାଗ କରି ଅଗ୍ରସର ହେବାକୁ ପ୍ରେରଣା ଯୋଗାଇବ । ପ୍ରାୟ ତିନି ଦଶନ୍ଧି ପୂର୍ବେ ତତ୍କାଳୀନ କଲିକତାଠାରୁ ପ୍ରକାଶିତ ଇଂରାଜୀ ଦୈନିକ ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡ ପତ୍ରିକାରୁ ଏହା ଅବଗତ ହୋଇ ଆତ୍ମ ବିସ୍ମୃତ ହେବା ସଙ୍ଗେ ସଙ୍ଗେ ବର୍ତ୍ତମାନ ସମୟର ଯୁବକ ଯୁବତୀମାନଙ୍କୁ ଜଣାଇବାର ପ୍ରବଳ ଆଗ୍ରହ ଆଜି ରୂପାୟିତ ହେବାକୁ ଯାଉଛି ।

ଦିଲ୍ଲୀ ପାଲାମ ବିମାନଘାଟୀରୁ ବହୁ ପରୀକ୍ଷା ନିରୀକ୍ଷା ପରେ ସେତେବେଳର ସର୍ବାଧୁନିକ ବିମାନରେ ଆରୋହଣ କରି ପରାକ୍ରମଶାଳୀ ୱାଭେଲ୍ ସାହେବ କ୍ୱେଟା ଅଭିମୁଖେ ଯାତ୍ରା କଲେ ବୈମାନିକ ବିଜୁ ପଟ୍ଟନାୟକଙ୍କ ତତ୍ତ୍ୱାବଧାନରେ । ରନ୍‌ୱେ ଛାଡି ବିମାନଟି ଚକ୍ରାକାରରେ ଘୂର୍ଣ୍ଣାୟମାନ ହୋଇ ଘୋର-ଘୋର ପ୍ରଚଣ୍ଡ ଶବ୍ଦରେ ଗଗନ ପବନ ନିନାଦିତ କରି ଆକାଶ ମାର୍ଗକୁ ନିକ୍ଷେପ ହୋଇ କ୍ରମଶଃ କ୍ଷୁଦ୍ରରୁ କ୍ଷୁଦ୍ରତର ଦୃଷ୍ଟିଗୋଚର ହେଲା । ପରିଶେଷରେ ସମାନ୍ତରାଳ ଗତିରେ ବିରାଟକାୟ ବିମାନ ତୀକ୍ଷ୍ଣ ବେଗରେ ଗତି କରି ସ୍ୱାଭାବିକ ଅବସ୍ଥାକୁ ଯେତେବେଳେ ଆସିଲା, ବିଜୁବାବୁ ସବୁ ଯାନ୍ତ୍ରିକ ପଦ୍ଧତି ପ୍ରୟୋଗ କରିସାରି ନିରାପଦ ବ୍ୟବସ୍ଥାରେ ନାଭିଗେଟ୍‌ର ଇତ୍ୟାଦି ସହଯୋଗୀମାନଙ୍କ ଦାୟିତ୍ୱରେ ଛାଡି ପୂର୍ବ ପରିକଳ୍ପିତ ଯୋଜନା ଅନୁସାରେ ଦଣ୍ଡାୟମାନ ହେଲେ । ସେତେବେଳେ ୱାଭେଲ କୌଣସି ଆଶଙ୍କା ନକରି ପାର୍ଶ୍ୱବର୍ତ୍ତୀ ବାତାୟନରେ ପ୍ରକୃତିର ଆକର୍ଷଣୀୟ ଶୋଭାସବୁଜିମା ଉପଭୋଗ କରି ନିର୍ଲିପ୍ତ ଭାବରେ ବସିଥାନ୍ତି । ହଠାତ୍ ବୈମାନିକ ବିଜୁବାବୁ ଅପୂର୍ବ ସାହସିକତା ସହ ତାଙ୍କ ନିକଟକୁ ଦୃଢ ପଦକ୍ଷେପରେ ଅଗ୍ରଗତି କରି ତାଙ୍କୁ ସ୍ତମ୍ଭୀଭୂତ କରି ଗମ୍ଭୀର କଣ୍ଠରେ କହିଲେ 'ବ୍ଲଡି ଇଣ୍ଡିୟାନ କଟୂକ୍ତି' ପ୍ରତ୍ୟାହାର କର । ଅସୀମ କ୍ଷମତାସମ୍ପନ୍ନ ୱାଭେଲ କିଛି ସମୟ ଅପ୍ରତିଭ ଇତସ୍ତତଃ ହୋଇ କିଂକର୍ତ୍ତବ୍ୟବିମୂଢ ହୋଇ ପଡିଲେ । ପୁନର୍ବାର ବିଜୁବାବୁ ଅଙ୍ଗୁଳି ନିର୍ଦ୍ଦେଶ କରି ଦୁଃଖ ପ୍ରକାଶ କରିବା ପାଇଁ ଦାବି ଉପସ୍ଥାପନ କରିବାରୁ ଗର୍ବ ଓ କ୍ରୋଧରେ ଉନ୍ମତ୍ତ ୱାଭେଲ୍ ବ୍ୟାକ୍ ପକେଟରୁ ପିସ୍ତଲ ବାହାର କରି ବିଜୁବାବୁଙ୍କୁ ଭୟଭୀତ କରାଇବାକୁ ଅପଚେଷ୍ଟା କଲେ । ବିଜୁବାବୁଙ୍କ ପୁନର୍ବାର ଦମ୍ଭୋକ୍ତି... ଦେଖନ୍ତୁ, ସାବଧାନ୍ । ବର୍ତ୍ତମାନ ଆପଣଙ୍କର ଅମୂଲ୍ୟ ଜୀବନ ସେଇ ଇଣ୍ଡିୟାନ ହାତରେ । ଯଦି ଆପଣ ନିର୍ବିଚାରରେ ଗୁଳି ମାରିବେ ତେବେ ମନେରଖନ୍ତୁ ଆପଣଙ୍କ ସହ ଏଥିରେ ଥିବା ସମସ୍ତ ବିମାନଯାତ୍ରୀ ନିଶ୍ଚିତ ଧ୍ୱଂସ ପାଇବେ । ଏହି ବିଷମ ପରିସ୍ଥିତିକୁ ଏଡାଇବାକୁ ଯାଇ ମର୍ମାହତ ୱାଭେଲ୍ ଅବନତ ମସ୍ତକରେ ପିସ୍ତଲକୁ ନିମ୍ନଗାମୀ କରି ଯଥାସ୍ଥାନରେ ରଖିବାକୁ ବାଧ୍ୟ ହେଲେ ଏକ ନିରୀହ ସରଳ ଶିଶୁପରି । କିନ୍ତୁ ଲଜ୍ଜା ଓ ଅପମାନରେ ଆତିଶଯ୍ୟ ତାଙ୍କୁ କ୍ରୋଧାଗ୍ନିରେ ଜର୍ଜରିତ କଲା । ବିଜୁବାବୁ ନିଜ ସ୍ଥାନକୁ ଫେରି ଆସି କର୍ତ୍ତବ୍ୟରେ ମନୋନିବେଶ କଲେ । ବିମାନ ନିରବଚ୍ଛିନ୍ନ ଗତି କରି ଚାଲିଥାଏ । ନିର୍ବିଘ୍ନରେ ଓ ନିର୍ଦ୍ଦିଷ୍ଟ ସମୟରେ ବିମାନ କ୍ୱେଟାରେ ଅବତରଣ କଲା ।

ବହୁ ଆଗରୁ ବେତାର ଯନ୍ତ୍ରରେ ସମ୍ବାଦ ପାଇ ସେଠାକାର ଅପେକ୍ଷାରତ ସଶସ୍ତ୍ର ପୋଲିସ୍ ବାହିନୀ ବିମାନଘାଟୀ ରନ୍‌ୱେରେ ଅବତରିତ ବିମାନ ନିକଟକୁ ଆସି ମହାମାନ୍ୟ ଅତିଥିଙ୍କୁ ମିଲିଟାରୀ କାଇଦାରେ ସମ୍ମାନ ଜଣାଇ ପାଛୋଟି ନେଲେ । ସେମାନଙ୍କ ସଙ୍ଗରେ କିଛି ପଥ ଅଗ୍ରସର ହେଲା ପରେ ବିଷର୍ଣ୍ଣ ଓ କ୍ରୁଦ୍ଧ ୱାଭେଲ୍ ହଠାତ୍ ମୁଖ ପଶ୍ଚାତ କରି

ଅଙ୍ଗୁଳି ନିର୍ଦ୍ଦେଶ ପୂର୍ବକ ସିଂହ ଗର୍ଜନ ସଦୃଶ କଠୋର ଆଦେଶ ଦେଲେ । 'Arrest that bloody pilot' ତତ୍‌କ୍ଷଣାତ୍ ଏସ୍‌କର୍ଟ ଫଉଜ ପାଇଲଟଙ୍କୁ ଗିରଫ କରିବା ପାଇଁ କ୍ଷିପ୍ର ପଦକ୍ଷେପରେ ଅନୁଧାବନ କଲେ । ଉଦ୍ୟମ ବ୍ୟର୍ଥ ହେଲା । ୱାଭେଲ୍ ଅବାକ୍ ହୋଇ ରହିଲେ । ବିସ୍ଫାରିତ ନେତ୍ରରେ ଚାହିଁଥାନ୍ତି– ବିମାନ ଆକାଶ ମାର୍ଗରେ ।

ଧନ୍ୟ ସେ ପାଇଲଟ୍ । ଧନ୍ୟ ତାଙ୍କ ଚାଳନା ପଟୁତା । ଯେଉଁ ଅସାଧାରଣ ସାହସ ପ୍ରଦର୍ଶନ କରି ଅସାମାନ୍ୟ କୌଶଳ ଓ ଦକ୍ଷତା ଦ୍ୱାରା ଅପ୍ରତିଦ୍ୱନ୍ଦୀ ବୈମାନିକ ବିଜୁବାବୁ ବିଦ୍ରୋହୀ ସୈନ୍ୟ ପରିବେଷ୍ଟିତ ଇଣ୍ଡୋନେସିଆର ତତ୍କାଳୀନ ରାଷ୍ଟ୍ରପତି ସେରିୟାରଙ୍କୁ ଉଦ୍ଧାର କରି ବୀରତ୍ୱର ଧ୍ୱଜା ଉଡାଇ ଥିଲେ ଓ ଇଣ୍ଡୋନେସିଆର ସ୍ୱାଧୀନତା ପ୍ରାପ୍ତିରେ ସହାୟକ ହୋଇଥିଲେ ଏବଂ ଯାହା ତାଙ୍କୁ ଆଜି ସେଠାରେ ସର୍ବୋଚ୍ଚ ସମ୍ମାନ 'ଭୂମି ପୁତ୍ର'ରେ ଭୂଷିତ କରିଛି, ତାହା ଥିଲା ଆଉ ଏକ ନିଦର୍ଶନ ମାତ୍ର ।

ଦିଲ୍ଲୀ ବିମାନଘାଟୀକୁ ଫେରି ବିମାନରୁ ଅବତରଣ କଲାମାତ୍ରେ ଆଗରୁ ବେତାର ବାର୍ତ୍ତା ପାଇ ପ୍ରସ୍ତୁତ ହୋଇ ରହିଥିବା ପୋଲିସ୍ ବିଜୁବାବୁଙ୍କୁ ଗିରଫ କଲେ । ଶେଷରେ ଦିଲ୍ଲୀ କୋର୍ଟରେ ତାଙ୍କର ବିଚାର ହେଲା । ବିଚାରପତି ଥାଆନ୍ତି ଜଣେ ଇଂରେଜ ବ୍ୟକ୍ତି । ଲର୍ଡ ୱାଭେଲ୍ ମଧ୍ୟ କୋର୍ଟରେ ଜମାନବନ୍ଦୀ ଦେଲେ । ବିଚାରପତି ବିଜୁବାବୁଙ୍କୁ ତାଙ୍କ କ୍ରୋଧର କାରଣ ଦର୍ଶାଇବାକୁ ପ୍ରଶ୍ନ କରିବାରୁ ସେ ପ୍ରଥମେ ନିର୍ଦ୍ଦୋଷ ବୋଲି ପରିଚୟ ଦେଇ ତାଙ୍କର ଜାତୀୟତା ପ୍ରତି ଅବମାନନା ସୂଚକ ଆକ୍ଷେପୋକ୍ତି ତାଙ୍କୁ ଏପରି ଉତ୍‌କ୍ଷିପ୍ତ କରାଇଲା ଏବଂ ତାହାକୁ ପ୍ରତିହତ କରିବା ପାଇଁ ସେ ନୈତିକ ସାହସର ପୌରୁଷପୂର୍ଣ୍ଣ କାର୍ଯ୍ୟ କଲେ ।

ପରିଶେଷରେ ଏହି ସତ୍ୟ ନାଟକର ଯବନୀକା ପାତ ହେଲା, ବିଜ୍ଞ ନିରପେକ୍ଷ ବ୍ରିଟିଶ୍ ବିଚାରପତିଙ୍କ ଅପୂର୍ବ ଆଶ୍ଚର୍ଯ୍ୟଜନକ ସିଦ୍ଧାନ୍ତ ତଥା ଆଦେଶରେ ।

ଉଭୟଙ୍କୁ ସେ ଦିନର କୋର୍ଟ ସରିବା ଯାଏଁ ଜେଲ୍ ଦଣ୍ଡ ଦିଆଗଲା । (Both are sentenced till the rise of the court on that day) ଏହି ଗୁରୁତ୍ୱପୂର୍ଣ୍ଣ ରାୟ ଘୋଷଣା କରି ବିଚାରପତି ଆସନ ପରିତ୍ୟାଗ କଲେ । ସେହି ଉଚ୍ଚମନା ବିଜୁବାବୁ ଭାରତର ସ୍ୱାଧୀନତା ସଂଗ୍ରାମ ପାଇଁ ବହୁବାର କାରାବରଣ କରିଛନ୍ତି । ଛାତ୍ର ଜୀବନରେ ବିମାନ ଛୁଇଁବାକୁ ଜିଦ୍ କରି ବେତ୍ରାଘାତ ପାଇ ତାଙ୍କର ଦୃଢ ମନୋବଳ ଦ୍ୱାରା ଏପରି ଶ୍ରେଷ୍ଠ ପାଇଲଟ ହୋଇପାରିଲେ । ସାଇକେଲରେ କଟକରୁ ପେଶୱାର ଯାଇ ପାରିଥିଲେ । ଗୋପବନ୍ଧୁଙ୍କ ବନ୍ୟାକାଳୀନ ଯାତ୍ରା ସମୟରେ ପାଣି ଭିତରକୁ ଡେଇଁପଡି ଛତାଟି ପୁନରୁଦ୍ଧାର କରି ଭବିଷ୍ୟତରେ 'ଭାରତ ମାତାର ବରପୁତ୍ର ହେବୁ' ବୋଲି ଯେଉଁ ଆଶିଷ ପାଇଥିଲେ, ଆଜି ସେ ଦେଶର ଜାତୀୟ ସ୍ତରର ଜଣେ ସ୍ୱନାମଧନ୍ୟ ନେତା ଓ ସଂସ୍କାରକ ଏକଥା ଅନସ୍ୱୀକାର୍ଯ୍ୟ । ଆନ୍ତର୍ଜାତିକ କ୍ଷେତ୍ରରେ ମଧ୍ୟ ବିଜ୍ଞାନର ଲୋକପ୍ରିୟତା ପାଇଁ କଳିଙ୍ଗ ପ୍ରାଇଜ୍ କରି ବିଭିନ୍ନ ଦେଶର ଉଚ୍ଚ ପଦାଧିକାରୀମାନଙ୍କ ସହ ସମ୍ପର୍କ ରଖି ସେ ବହୁ ଭାବରେ ବିଦିତ । ଏସବୁ ତାଙ୍କର ଆତ୍ମ ବିଶ୍ୱାସ ଭିତ୍ତିକ ସାହସିକତା ଆତ୍ମ ଶକ୍ତିରେ ରୂପାୟିତ ଓ ପରିଚାୟକ ପରିଣତ ବୟସରେ ତାଙ୍କ ନିକଟରେ ଆଜି ବାର୍ଦ୍ଧକ୍ୟ ହାର ମାନିଛି ।

ବାସ୍ତବିକ୍ ବିଶ୍ୱ ବିଖ୍ୟାତ ଇଂରେଜ ଔପନ୍ୟାସିକ ସାର୍ ଆଲଡକ୍ସ ହକ୍ସଲେ ବିଜୁବାବୁଙ୍କ ସାହସ ସମ୍ପର୍କରେ କହିଥିଲେ 'If one begins to write about the adventures of Biju Patnaik, perhaps it will fill in a book.' ଏଥିରୁ ସ୍ପଷ୍ଟ ସୂଚିତ ହୁଏ ବିଜୁବାବୁଙ୍କ ସାହସିକ ପ୍ରତିଭା ବିଶ୍ୱବ୍ୟାପୀ ।

ପ୍ରଧାନ ଶିକ୍ଷକ
ସରକାରୀ ଉଚ୍ଚ ବିଦ୍ୟାଳୟ, ରାଜସୁନାଖଳା



# ୨୦୧୬-୧୭ ଆର୍ଥିକ ବର୍ଷର ଓଡ଼ିଶା ବଜେଟ୍ (ଏକ ଦୃଷ୍ଟିପାତ)

ଗୁରୁକଲ୍ୟାଣ ମହାପାତ୍ର

ଓଡ଼ିଶା ବିଧାନସଭାରେ ରାଜ୍ୟ ଅର୍ଥମନ୍ତ୍ରୀ ଶ୍ରୀ ପ୍ରଦୀପ କୁମାର ଅମାତ ଗତ ମାର୍ଚ୍ଚ ୧୮(୨୦୧୬)ରେ ୨୦୧୬-୧୭ ଆର୍ଥିକ ବର୍ଷ ଅର୍ଥାତ୍ ଚଳିତ ଆର୍ଥିକ ବର୍ଷ ପାଇଁ ଯେଉଁ ୯୪,୦୫୨ କୋଟି ୬୫ ଲକ୍ଷ ଟଙ୍କାର ବଜେଟ୍ ଅଟକଳ ଉପସ୍ଥାପନ କରିଛନ୍ତି, ତହିଁରେ କୃଷି, ଗ୍ରାମ ଉନ୍ନୟନ ଓ ଆନୁଷଙ୍ଗିକ ଜୀବିକା ଧାରଣର ସୁବିଧା ଉପରେ ଗୁରୁତ୍ୱ ଦିଆଯାଇଛି । ମାତ୍ର ରାଜ୍ୟର ଭିତ୍ତିଭୂମି ସାମାଜିକ ତଥା ମାନବ ସମ୍ବଳ କ୍ଷେତ୍ରରେ ଅଧିକ ପୁଞ୍ଜି ନିବେଶଦ୍ୱାରା ଅର୍ଥନୀତିକ ଅଭିବୃଦ୍ଧିର ଅନ୍ତର୍ଭୁକ୍ତିକରଣ ଉପରେ ଅଧିକ ଗୁରୁତ୍ୱାରୋପ କରାଯାଇଥିବା ପରିଲକ୍ଷିତ ହୋଇଛି । ୨୦୧୫ର ରାଜ୍ୟ ଶିଳ୍ପନୀତି ସଂକଳ୍ପ ଜରିଆରେ ଘରୋଇ ପୁଞ୍ଜି ନିବେଶ ପାଇଁ ଏହି ବଜେଟ୍‌ରେ ଏକ ଅନୁକୂଳ ବାତାବରଣ ସୃଷ୍ଟି ପାଇଁ ଉଦ୍ୟମ ହୋଇଛି । ଏହି ବଜେଟ୍‌ରେ ପ୍ରଚଳିତ ପ୍ରକଳ୍ପଗୁଡ଼ିକୁ ଅସମ୍ପୂର୍ଣ୍ଣ ଅବସ୍ଥାରେ ଛାଡ଼ି ନଦେଇ ସୁସଂଗଠିତ ଭାବେ ସମ୍ପୂର୍ଣ୍ଣ କରାଯିବା ଲାଗି ମଧ୍ୟ ଯତ୍ନ ନିଆଯାଇଛି । ବଜେଟ୍‌ର ଅନ୍ୟତମ ଗୁରୁତ୍ୱପୂର୍ଣ୍ଣ ଦିଗଟି ହେଉଛି ରାଜ୍ୟର ଗ୍ରାମାଞ୍ଚଳ ଓ ଦୁର୍ଗମ ଅଞ୍ଚଳରେ ବସବାସ କରୁଥିବା ଲୋକଙ୍କୁ ଶିକ୍ଷା ଓ ସ୍ୱାସ୍ଥ୍ୟରକ୍ଷା ଜରିଆରେ ଏକ ନୂତନ ବାତାବରଣ ସୃଷ୍ଟି କରିବା ।

ଗତ ମାର୍ଚ୍ଚ ୧୫ (୨୦୧୬) ତାରିଖରେ ଓଡ଼ିଶା ବିଧାନସଭାର ବଜେଟ ଅଧିବେଶନ ଆରମ୍ଭ ହେବା ବେଳେ ପଞ୍ଚଦଶ ଓଡ଼ିଶା ବିଧାନସଭାର ଷଷ୍ଠ ଅଧିବେଶନରେ ଉଦ୍‌ବୋଧନ ଦେଇ ମାନ୍ୟବର ରାଜ୍ୟପାଳ ଡକ୍ଟର ଏସ୍.ସି. ଜମିର ଏପରି ଏକ ଆଗାମୀ ବଜେଟ୍‌ର ବୈଶିଷ୍ଟ୍ୟ ସଂକ୍ରାନ୍ତରେ ଉଲ୍ଲେଖ କରିଛନ୍ତି- 'ଏହି ପରିପ୍ରେକ୍ଷୀରେ କେନ୍ଦ୍ରୀୟ ଅର୍ଥ ଆବଣ୍ଟନରେ ସ୍ୱଚ୍ଛତା ନ ଆସିବା ପର୍ଯ୍ୟନ୍ତ ବିଧାନସଭାରେ ବଜେଟ୍ ଉପସ୍ଥାପନକୁ ଘୁଞ୍ଚାଇ ଦେବା ପାଇଁ ମୋ ସରକାର ପ୍ରଥମ ଥର ପାଇଁ ଏକ ସୁଚିନ୍ତିତ ନିଷ୍ପତ୍ତି ଗ୍ରହଣ କରିଛି, ଯାହା ଫଳରେ କେନ୍ଦ୍ର ସମର୍ପିତ ଯୋଜନା ଓ କାର୍ଯ୍ୟକ୍ରମଗୁଡ଼ିକରେ ଆବଶ୍ୟକୀୟ ଅର୍ଥ ବରାଦ ସହ ସମନ୍ୱୟ ରଖି ବଜେଟ୍ ପ୍ରସ୍ତୁତ କରିହେବ । ମୋ' ସରକାର ଏହିଭଳି କେନ୍ଦ୍ରୀୟ ପାଣ୍ଠିର ଆକାର ଓ ଚତୁର୍ଦ୍ଦଶ ଅର୍ଥ କମିଶନଙ୍କ ସୁପାରିଶ ବାବଦ ପ୍ରାପ୍ୟକୁ ନେଇ ଅନିଶ୍ଚିତତା ଭୋଗିବା ସତ୍ତ୍ୱେ ଶାରୀରିକ ଓ ମାନବିକ ପୁଞ୍ଜି ସୃଷ୍ଟି ନିମନ୍ତେ ସାମାଜିକ ଓ ଅର୍ଥନୀତିକ କ୍ଷେତ୍ରରେ ପୁଞ୍ଜି ନିବେଶକୁ ଅଧିକ ଗୁରୁତ୍ୱ ଦେଇ ୨୦୧୫-୧୬ ଆର୍ଥିକ ବର୍ଷ ପାଇଁ ଏକ ବାସ୍ତବବାଦୀ ବଜେଟ୍ ପ୍ରସ୍ତୁତ କରିପାରିଛି । ଏହି ବିଜ୍ଞତା ଆଧାରରେ ଅଗ୍ରସର ହୋଇ ଆମେ ୨୦୧୬-୧୭ ଆର୍ଥିକ ବର୍ଷ ପାଇଁ ଏକ ଅତ୍ୟୁତ୍ତମ ବଜେଟ୍ ଉପସ୍ଥାପନ କରିବା ପାଇଁ ଆମେ ଦୃଢ଼ ନିଶ୍ଚିତ ।'

ଗତ ଫେବୃଆରୀ ୨୯ (୨୦୧୬) ତାରିଖରେ ନୂଆଦିଲ୍ଲୀର ଲୋକସଭାରେ କେନ୍ଦ୍ର ଅର୍ଥମନ୍ତ୍ରୀ ଶ୍ରୀ ଅରୁଣ ଜେଟଲୀ ନରେନ୍ଦ୍ର ମୋଦିଙ୍କ ନେତୃତ୍ୱାଧୀନ ଜାତୀୟ ଗଣତାନ୍ତ୍ରିକ ମେଣ୍ଟ ସରକାରଙ୍କର ଦ୍ୱିତୀୟ ବଜେଟ୍ ଉପସ୍ଥାପନ କରିଥିଲେ, ଯେଉଁଥିରେ କୃଷି, କୃଷକ ଓ ଗ୍ରାମାଞ୍ଚଳର ପ୍ରଭୂତ ଉନ୍ନତି ପାଇଁ ଦୃଷ୍ଟି ଦିଆଯାଇଥିଲା । ସମଗ୍ର ଭାରତର ସଚେତନ ନାଗରିକଗଣ ଯେତେବେଳେ କେନ୍ଦ୍ରର ଏହି ବଜେଟ୍‌କୁ ଅପେକ୍ଷା କରିଥିଲେ, ରାଜ୍ୟ ସରକାର ମଧ୍ୟ କେନ୍ଦ୍ର ସରକାରଙ୍କ ବଜେଟ୍‌କୁ ଦୃଷ୍ଟିରେ ରଖି ନିଜେ ନିଜର ବଜେଟ୍ ପାଇଁ ପ୍ରସ୍ତୁତ ହେବାକୁ ଚାହିଁବାରୁ ମାର୍ଚ୍ଚ ୧୮ ତାରିଖରେ ରାଜ୍ୟ ବଜେଟ୍ ବିଧାନସଭାରେ

ଉପସ୍ଥାପିତ ହୋଇଥିଲା । ରାଜ୍ୟ ସରକାରଙ୍କର ଏହି ବଜେଟ୍‌ରେ ମଧ୍ୟ କୃଷି, କୃଷକ, ଶିଳ୍ପ ଓ ଭିତ୍ତିଭୂମି ଉପରେ ଗୁରୁତ୍ୱାରୋପ କରିଛନ୍ତି । ସେଥିପାଇଁ ଅନେକ ନୂତନ ପ୍ରକଳ୍ପ ମଧ୍ୟ ରାଜ୍ୟ ସରକାର ହାତକୁ ନେଇଛନ୍ତି । ଏହି ବଜେଟ୍‌କୁ ଲୋକାଭିମୁଖୀ ଓ କୃଷି କୈନ୍ଦ୍ରିକ ବଜେଟ ବୋଲି ମଧ୍ୟ କୁହାଯାଇପାରେ ।

ଓଡ଼ିଶା ବିଧାନସଭାରେ ୨୦୧୬–୧୭ ଆର୍ଥିକ ବର୍ଷର ବଜେଟ୍ ଉପସ୍ଥାପନ କରାଯିବା ପୂର୍ବଦିନ ଅର୍ଥାତ୍ ମାର୍ଚ୍ଚ ୧୭ (୨୦୧୬)ରେ ଓଡ଼ିଶା ଅର୍ଥନୀତିକ ସର୍ଭେ ରିପୋର୍ଟ ୨୦୧୫–୧୬ ଉପସ୍ଥାପନ କରାଯାଇଥିଲା । ଏହି ରିପୋର୍ଟର ପ୍ରତିଫଳନ ରାଜ୍ୟ ବଜେଟ୍ ଉପରେ ସାଧାରଣତଃ ପଡିଥିବା ପରିଲକ୍ଷିତ ହୋଇଥିଲା । ରାଜ୍ୟ ଯୋଜନା ଓ ସଂଯୋଜନା ବିଭାଗ ପକ୍ଷରୁ ପ୍ରକାଶିତ ଏହି ରିପୋର୍ଟର ଆଦ୍ୟଭାଗରେ ଉଲ୍ଲେଖ କରାଯାଇଥିଲା । ଓଡ଼ିଶାର ଅର୍ଥନୀତିରେ ଅଭିବୃଦ୍ଧି ହାର ୨୦୧୧–୧୨ରୁ ୨୦୧୫–୧୬ ମଧ୍ୟରେ ପ୍ରଚଳିତ ରହିଛି । ଏହି ଧାରାକୁ ଅବ୍ୟାହତ ରଖିବାକୁ ଗତ କେତେବର୍ଷ ଧରି ରାଜ୍ୟ ଅକ୍ଳାନ୍ତ ଉଦ୍ୟମ ଜାରି ରଖିଛି । ପୋଷଣୀୟ ଓ ସାମଗ୍ରିକ ଉଚ୍ଚତର ଅଭିବୃଦ୍ଧି ହାସଲ ପାଇଁ ଓଡ଼ିଶା ତା'ର ଅଗ୍ରଗତିକୁ ବଜାୟ ରଖିଛି ଏବଂ ଆଞ୍ଚଳିକ ବୈଷମ୍ୟକୁ ହ୍ରାସ କରିବା ସହିତ ବୃଦ୍ଧି ପାଉଥିବା ଦାରିଦ୍ର୍ୟକୁ ହ୍ରାସ କରିବା ତଥା ଫଳପ୍ରଦ ଉପାୟରେ ଭିତ୍ତିଭୂମି ଓ ଉନ୍ନୟନ କ୍ଷେତ୍ରରେ ଉନ୍ନତି ସାଧନ ପାଇଁ ମଧ୍ୟ ଓଡ଼ିଶା ଉଦ୍ୟମ କରି ଚାଲିଛି ।

ବିଧାନସଭାରେ ଚତୁର୍ଥ ଥର ଲାଗି ଓଡ଼ିଶା ସରକାର ଦୁଇ ଦୁଇଟି ପୃଥକ ବଜେଟ୍ ଯଥା 'କୃଷି' ଓ 'ସାଧାରଣ ବଜେଟ୍' ଉପସ୍ଥାପନ କରି ଆସିଛନ୍ତି । ୨୦୧୩–୧୪ ଆର୍ଥିକ ବର୍ଷରୁ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ନିର୍ଦ୍ଦେଶକ୍ରମେ ରାଜ୍ୟର ଅର୍ଥମନ୍ତ୍ରୀମାନେ ବିଧାନସଭାରେ ପ୍ରଥମେ 'କୃଷି' ଓ ତା'ପରେ 'ସାଧାରଣ ବଜେଟ୍' ଉପସ୍ଥାପନ କରି ଆସୁଛନ୍ତି । ଅବଶ୍ୟ କର୍ଣ୍ଣାଟକ ରାଜ୍ୟ ପ୍ରଥମେ ଏହି ପ୍ରଥା ଆରମ୍ଭ କରିଥିଲା ଓ ଏହାପରେ ଓଡ଼ିଶା ଏହି ପ୍ରଥାର ଅନୁସରଣ ଦ୍ୱିତୀୟରେ କରିଥିଲା ।

ଗତ ମାର୍ଚ୍ଚ ୧୮ (୨୦୧୬)ରେ ବିଧାନସଭାରେ ରାଜ୍ୟ ଅର୍ଥମନ୍ତ୍ରୀ ଶ୍ରୀ ଅମାତ ୨୦ ପୃଷ୍ଠାର କୃଷି ବଜେଟ ବିଧାନସଭାରେ ପ୍ରଥମେ ଉପସ୍ଥାପନ କରି ଉଲ୍ଲେଖ କରିଥିଲେ– 'ଏହି ବର୍ଷ ଅର୍ଥାତ୍ ୨୦୧୬–୧୭ ଆର୍ଥିକ ବର୍ଷ ଅନେକ ଦୃଷ୍ଟିରୁ ସ୍ମରଣୀୟ ଓ ଗୁରୁତ୍ୱପୂର୍ଣ୍ଣ ଅଟେ । ଏହା ନବକଳେବର ପରବର୍ତ୍ତୀ ବର୍ଷ । ନବକଳେବର ହେଉଛି ଆମ ରାଜ୍ୟର ପୀଠାସୀନ ଠାକୁର ଶ୍ରୀ ଜଗନ୍ନାଥଙ୍କ ବିଗ୍ରହ ନବୀକରଣର ମହୋତ୍ସବ । ଶ୍ରୀଜଗନ୍ନାଥ ହେଉଛନ୍ତି ଆମ ଶକ୍ତିର ଚିରନ୍ତନ ଉତ୍ସ, ଆମ ରାଜ୍ୟର ବିବିଧ ସଂସ୍କୃତିର ପରିଚିତି ଓ ପ୍ରତୀକ । ଏହି ବର୍ଷ ମଧ୍ୟ ଆମ ରାଜ୍ୟ ଏହି ମହାନ୍ ଦେଶର ଏକ ସ୍ୱତନ୍ତ୍ର ରାଜ୍ୟଭାବେ ସ୍ୱୀକୃତି ପାଇଥିବା ୮୦ତମ ବର୍ଷ ଅଟେ । ସମଗ୍ର ଦେଶରେ ଓଡ଼ିଶା ଭାଷା ଭିତ୍ତିରେ ଗଠିତ ପ୍ରଥମ ରାଜ୍ୟ । ମୁଁ ଏହି ଅବସରରେ ସବିନୟ, ରାଜ୍ୟର ୮୦ତମ ବଜେଟ ଉପସ୍ଥାପନ କରିବାରେ ନିଜକୁ ଗୌରବାନ୍ୱିତ ମନେ କରୁଛି । ଏହି ବର୍ଷ ମଧ୍ୟ ପ୍ରବାଦ ପୁରୁଷ ବିଜୁ ପଟ୍ଟନାୟକଙ୍କର ଜନ୍ମ ଶତବାର୍ଷିକୀ ପାଳିତ ହେଉଛି । ବିଜୁ ପଟ୍ଟନାୟକ ଏହି ମହାନ ମାଟିର କୋଟି କୋଟି ଜନତାଙ୍କ ଉନ୍ନତି ପାଇଁ ନିଜ ଜୀବନକୁ ଉତ୍ସର୍ଗ କରିଥିଲେ ।'

ଅର୍ଥମନ୍ତ୍ରୀ ଶ୍ରୀ ଅମାତ ପ୍ରଥମେ ବିଧାନସଭାରେ କୃଷି ବଜେଟ୍ ଉପସ୍ଥାପନ କରି ସ୍ୱୀକାର କରିଥିଲେ ଯେ ଯେଉଁ କେତୋଟି ରାଜ୍ୟ ସ୍ୱତନ୍ତ୍ର କୃଷି ବଜେଟ୍ ଉପସ୍ଥାପନ କରିଛନ୍ତି, ସେଥିମଧ୍ୟରୁ ଓଡ଼ିଶା ଅନ୍ୟତମ । ଏ ଦିଗରେ ଆଉ ପାଦେ ଆଗେଇ ଯାଇ ଆମ ରାଜ୍ୟ ସରକାର ଏକ ସ୍ୱତନ୍ତ୍ର କୃଷି କ୍ୟାବିନେଟ୍ ଗଠନ କରିଛନ୍ତି, ଯାହାକି ରାଜ୍ୟ କ୍ୟାବିନେଟ୍‌ର ଏକ ସବ୍‌କମିଟି ବୋଲି ସେ ପ୍ରକାଶ କରିଥିଲେ । ସେ ତାଙ୍କ ବଜେଟ୍ ଭାଷଣରେ କହିଥିଲେ– 'କୃଷି ବିଭାଗର ନାମ ପରିବର୍ତ୍ତନ କରାଯାଇ କୃଷି ଓ କୃଷକ ସଶକ୍ତିକରଣ ବିଭାଗ ରଖାଯାଇଛି । ମୁଁ ଏହି ପବିତ୍ର ଗୃହକୁ ସୁନିଶ୍ଚିତ କରିବାକୁ ଚାହେଁ ଯେ ଏହା କେବଳ ପ୍ରତୀକଧର୍ମୀ ନୁହେଁ ବରଂ କୃଷକ କୈନ୍ଦ୍ରିକ ଉନ୍ନୟନ ଖସଡା ପାଇଁ ଏକ ସୁଚିନ୍ତିତ ଉଦ୍ୟମ । କୃଷି ଓ କୃଷି କ୍ଷେତ୍ରରେ ପାରିବାରିକ ଆୟବୃଦ୍ଧି ବିନା ଓଡ଼ିଶାରେ ଦାରିଦ୍ର୍ୟକୁ ସମ୍ପୂର୍ଣ୍ଣଭାବେ ଦୂର କରାଯାଇ ପାରିବ ନାହିଁ କି ଆଞ୍ଚଳିକ ବୈଷମ୍ୟ ଭଳି ଜଟିଳ ବିଷୟର ସମାଧାନ ହୋଇପାରିବ ନାହିଁ ।

ଉଲ୍ଲେଖନୀୟ ଯେ ଅର୍ଥମନ୍ତ୍ରୀ ଉପସ୍ଥାପିତ କରିଥିବା ସ୍ୱତନ୍ତ୍ରଭାବେ ଏହି କୃଷି ବଜେଟ୍‌ରେ ଜଳସମ୍ପଦ, ସମବାୟ, କୃଷି, ମତ୍ସ୍ୟ ଓ ପଶୁସମ୍ପଦ ଉନ୍ନୟନ ବିଭାଗ ପରି ଗୁରୁତ୍ୱପୂର୍ଣ୍ଣ ବିଭାଗଗୁଡିକ ଅନ୍ତର୍ଭୁକ୍ତ । ପୁଣି ନୂତନଭାବେ ଗଠିତ କୃଷି କ୍ୟାବିନେଟ୍ ଏସବୁ ବିଭାଗରେ ପାଣ୍ଠିର ଆବଶ୍ୟକତାକୁ ନେଇ ବିଚାର ବିମର୍ଷ ଆରମ୍ଭ କରିଛନ୍ତି । ତାହାରି ଆଧାରରେ ଚଳିତ ବର୍ଷର କୃଷି ବଜେଟ୍‌ରେ ଉଭୟ ଯୋଜନା ଓ ଅଣଯୋଜନା କ୍ଷେତ୍ରରେ ୧୩,୧୮୧.୮୯ କୋଟି ଟଙ୍କାର ବ୍ୟୟ ବରାଦ ପାଇଁ ପ୍ରସ୍ତାବ ରହିଛି, ଯାହାକି ବିଗତ ବର୍ଷର ବଜେଟ୍ ଅଟକଳ ତୁଳନାରେ ୨୦.୮୯ ପ୍ରତିଶତରୁ ଅଧିକ । କୃଷି ବଜେଟ୍ ଚଳିତ ଆର୍ଥିକ ବର୍ଷର ମୋଟ ବ୍ୟୟ ଅଟକଳର ପ୍ରାୟ ୧୪.୦୨ ପ୍ରତିଶତ ବୋଲି ଜଣାଯାଇଛି ।

### କୃଷି ବଜେଟ୍‌ରେ ନୂତନ ଦିଗ

- କୃଷି କ୍ଷେତ୍ରରେ ଶିଳ୍ପୋଦ୍ୟୋଗୀମାନଙ୍କୁ ପ୍ରୋତ୍ସାହନ ଦେବା ପାଇଁ ତଥା ଔଦୋଗିକ ବିକାଶ ଲାଗି ପ୍ରାରମ୍ଭିକ ପାଣ୍ଠି ସ୍ଥାପନର ପ୍ରସ୍ତାବ ।
- ମହାତ୍ମା ଗାନ୍ଧୀ ଜାତୀୟ ଗ୍ରାମୀଣ ନିଶ୍ଚିତ କର୍ମନିଯୁକ୍ତି ଯୋଜନା, ଜଳ ବିଭାଜିକା ଉନ୍ନୟନ ଯୋଜନା, ପ୍ରଧାନମନ୍ତ୍ରୀ କୃଷି ସିଚାଇ ଯୋଜନା ଓ ସେଚାଞ୍ଚଳ ଉନ୍ନୟନ ଯୋଜନାଗୁଡିକୁ ଏକାଭିମୁଖୀ ଯୋଜନାରେ ପରିଣତ କରିବାକୁ ପ୍ରକ୍ରିୟା ଆରମ୍ଭ ।
- କୃଷକମାନଙ୍କର କଠିନ ପରିଶ୍ରମ ଯୋଗୁଁ ରାଜ୍ୟ ଚତୁର୍ଥ ଥର ପାଇଁ କୃଷି କର୍ମଣ ପୁରସ୍କାର ପାଇଥିବାରୁ ସେହି ପରିପ୍ରେକ୍ଷୀରେ କୃଷି ବଜେଟ୍‌ର ପ୍ରସ୍ତୁତି ।
- ଆଗାମୀ ୩ରୁ ୫ ବର୍ଷ ମଧ୍ୟରେ ୨ଗୋଟି ମଧ୍ୟମ ଜଳସେଚନ ଯୋଜନା କୁସୁମୀ ଓ ବାଙ୍କଡିରାକୁ ସମ୍ପୂର୍ଣ୍ଣ କରିବାକୁ ଚିହ୍ନଟ । ସ୍ୱଳ୍ପ ଅର୍ଥ ବିନିଯୋଗରେ ସେହିପରି ହରଭଙ୍ଗୀ, ବାଘ୍ ଏବଂ ମଂଜୋର ମଧ୍ୟମ ଜଳସେଚନ ପ୍ରକଳ୍ପର ଆୟକଟ ବୃଦ୍ଧି କରି ଅତିରିକ୍ତ ଜମିକୁ ଜଳସେଚିତ କରାଯିବ । ଚଳିତ ଆର୍ଥିକ ବର୍ଷରେ ୪୦ଟି ଉଠାଜଳସେଚନ ପ୍ରକଳ୍ପ ସମ୍ପୂର୍ଣ୍ଣ କରିବାକୁ ପ୍ରସ୍ତାବ । ଜଳକ୍ଲିଷ୍ଟ ଅଞ୍ଚଳରେ ଭୂତଳ ଜଳର ବିନିଯୋଗ ପାଇଁ ୧୭୫୦୦ ଗଭୀର ଓ ଅଗଭୀର ନଳକୂପ ସ୍ଥାପନ ସମେତ ନଦୀକୂଳରେ ୧୯୦୦ ଅଣୁ ଉଠାଜଳ ସେଚନ ପଏଣ୍ଟ ସ୍ଥାପନର ପ୍ରସ୍ତାବ ।

### ସାଧାରଣ ବଜେଟ୍‌ରେ ନୂତନ ଦିଗ

- ଗ୍ରାମାଞ୍ଚଳ ଓ ଦୁର୍ଗମ ଅଞ୍ଚଳରେ ସହଜଲଭ୍ୟ ସ୍ୱାସ୍ଥ୍ୟସେବା ପ୍ରଦାନ କ୍ଷେତ୍ରରେ ଘରୋଇ ପୁଞ୍ଜି ବିନିଯୋଗ ନିମିତ୍ତ 'ଭାଇଏବିଲିଟି ଗ୍ୟାପ ଫଣ୍ଡିଙ୍ଗ' ପାଇଁ ରାଜ୍ୟ ଯୋଜନା ଓ ସଂଯୋଜନା ବିଭାଗରେ ୧୫କୋଟି ଟଙ୍କାର ବ୍ୟୟବରାଦ ।
- ବଲାଙ୍ଗୀର, କୋରାପୁଟ, ମୟୂରଭଞ୍ଜ, ବାଲେଶ୍ୱର ଓ ପୁରୀ ଜିଲ୍ଲାମାନଙ୍କରେ ୫ଗୋଟି ନୂତନ ମେଡିକାଲ କଲେଜ ପ୍ରତିଷ୍ଠା ପାଇଁ ଭାରତ ସରକାର ୧୮୯ କୋଟି ଟଙ୍କାର ଅଣ-ପୌନଃପୁନିକ ପୁଞ୍ଜି ପ୍ରଦାନ ପାଇଁ ପ୍ରତିଶ୍ରୁତି ଦେଇଛନ୍ତି । ଭିତ୍ତିଭୂମି ସୃଷ୍ଟି ହେବା ପରେ ପ୍ରତ୍ୟେକ ମେଡିକାଲ କଲେଜ ପାଇଁ ପୌନଃପୁନିକ ଅର୍ଥ ରାଜ୍ୟ ସରକାର ବହନ କରିବେ । ଜମିର ମୂଲ୍ୟ ସରକାର ବହନ କରିଛନ୍ତି । ନିର୍ମାଣ କାର୍ଯ୍ୟ ଆଗେଇ ଚାଲିଛି । ଉପରୋକ୍ତ ୫ଗୋଟି ମେଡିକାଲ କଲେଜ ନିର୍ମାଣ ପାଇଁ ଚଳିତ ବଜେଟ୍‌ରେ ୬୧୫ କୋଟି ଟଙ୍କାର ବ୍ୟୟବରାଦ ହୋଇଛି ।
- ନୂତନଭାବେ ଗଠିତ 'ଓଡ଼ିଶା ରାଜ୍ୟ ଖାଦ୍ୟ କମିଶନ' ପାଇଁ ଚଳିତ ବଜେଟ୍‌ରେ ୧କୋଟି ୭୫ ଲକ୍ଷ ଟଙ୍କାର ବ୍ୟୟବରାଦ ହୋଇଛି ।
- ରାଉରକେଲା ଓ ସମ୍ବଲପୁରରେ ସ୍ୱେରେଜ ବ୍ୟବସ୍ଥା ପାଇଁ ଚଳିତ ବଜେଟ୍‌ରେ ୧୭୫ କୋଟି ୧ଲକ୍ଷ ଟଙ୍କା ବ୍ୟୟ ବରାଦ ହୋଇଥିବା ବେଳେ ଭୁବନେଶ୍ୱର ଓ କଟକରେ ବହିଃ ସାହାଯ୍ୟ ପ୍ରକଳ୍ପ ଜରିଆରେ ପରବର୍ତ୍ତୀ ପର୍ଯ୍ୟାୟର ସ୍ୱେରେଜ ପାଇଁ ୨୦୦ କୋଟି ଟଙ୍କାର ବ୍ୟୟବରାଦ ହୋଇଛି ।

**ଅଣଯୋଜନା, ରାଜ୍ୟଯୋଜନା, କେନ୍ଦ୍ର ଯୋଜନା ଓ କେନ୍ଦ୍ର ପ୍ରବର୍ତ୍ତିତ ଯୋଜନାର ତୁଳନାତ୍ମକ ସାରଣୀ**

**(କୋଟି ଟଙ୍କାରେ)**

| ବିଷୟ | ୨୦୧୫-୧୬ ଆର୍ଥିକ ବର୍ଷର ବଜେଟ୍ ଆକଳନ | ୨୦୧୬-୧୭ ଆର୍ଥିକ ବର୍ଷର ବଜେଟ୍ ଆକଳନ |
|---|---|---|
| ଅଣ ଯୋଜନା | ୪୩୯୫୬.୩୨ | ୪୮୦୯୬.୪୯ |
| ରାଜ୍ୟ ଯୋଜନା | ୪୦୧୫୦.୦୦ | ୪୫୬୦୦.୦୦ |
| କେନ୍ଦ୍ର ଯୋଜନା | ୩୪୯.୫୫ | ୩୧୧.୩୩ |
| କେନ୍ଦ୍ର ପ୍ରବର୍ତ୍ତିତ ଯୋଜନା | ୩୧.୯୧ | ୪୪.୮୩ |
| ସମୁଦାୟ | ୮୪୪୮୭.୭୭ | ୯୪୦୫୨.୬୫ |

କ୍ୱାର୍ଟର ନଂ- ଭି.ଏ ୨୯/୩
ୟୁନିଟ୍-୨, ଭୁବନେଶ୍ୱର-୯

# ଆମେ ଓଡ଼ିଆ

**ଦିଲ୍ଲୀପ କୁମାର ବେହୁରା**

ଆମେରେ ଓଡ଼ିଆ ଗରବ କରିବା
ଭାଷାରେ ରାଇଜ ଗଢ଼ା
ଆମ ପରଂପରା ସଂସ୍କୃତିକୁ ନେଇ
ହୋଇ ଅଛେ ଆଜି ଛିଡ଼ା
ସ୍ୱତନ୍ତ୍ର ଓଡ଼ିଶା କରିଲେ ଗଠନ
ସମ୍ମିଳନୀମାନ କରି
ନଦୀ ସମୁଦର ପାହାଡ଼ ଝରଣା
ପରିସୀମା ତା'ର ଧରି
ଯେଉଁଠି ରହିଛି ଶ୍ରୀକ୍ଷେତ୍ର ମନ୍ଦିର
କୋଣାରକ ଅର୍କ କ୍ଷେତ୍ର

ବାରମାସେ ଯହିଁ ତେର ପୂଜା ହୁଏ
କେତେ କେତେ ଯାନି ଯାତ
ଓଡ଼ିଆ ମାଟିରେ ଜନମିଛେ ଆମେ
ତା'ପାଣି ପବନେ ଗଢ଼ା
ଜାତି ନନ୍ଦିଘୋଷ ଆମେ ହିଁ ଟାଣିବା
ବିଶ୍ୱରେ ହୋଇବା ଛିଡ଼ା ।

ଗ୍ରାମ - ପୋଖରିଆ, ପୋ.ଅ.- ମହୁଲିଆ
ରାଜନଗର, କେନ୍ଦ୍ରାପଡ଼ା

# ଓଡ଼ିଶା ପ୍ରଦେଶ ଗଠନର ଇତିହାସ

ପଣ୍ଡିତ ଅନ୍ତର୍ଯ୍ୟାମୀ ମିଶ୍ର

ପ୍ରାଚୀନ ଯୁଗରୁ ଓଡ଼ିଶା ଏକ ଐଶ୍ୱର୍ଯ୍ୟଶାଳୀ, ଉତ୍କୃଷ୍ଟ କଳାକୌଶଳଜ୍ଞାତ ସାମରିକ ଶକ୍ତି ସମ୍ପନ୍ନ ଓ ସାମୁଦ୍ରିକ ବାଣିଜ୍ୟ ସମୃଦ୍ଧ ରାଜ୍ୟ ରୂପେ ବିଶ୍ୱଦରବାରରେ ପରିଚିତ ଥିଲା । ପୂର୍ବରେ ମହୋଦଧିଠାରୁ ପଶ୍ଚିମରେ ଅମରକଣ୍ଟକ ଏବଂ ଉତ୍ତରରେ ଗଙ୍ଗାଠାରୁ ଦକ୍ଷିଣରେ ଗୋଦାବରୀ ପର୍ଯ୍ୟନ୍ତ ପରିବ୍ୟାପ୍ତ ଏହି ବିଶାଳ ଭୂଖଣ୍ଡ ଉଡ୍ର, କଳିଙ୍ଗ, ଉଦ୍‌କଳିଙ୍ଗ, ଉତ୍କଳ, ତ୍ରିକଳିଙ୍ଗ, ତୋଷଳ, କୋଶଳ, କଙ୍ଗୋଦ ଓ ଓଡ଼ିଶା ପ୍ରଭୃତି ବହୁ ନାମ ଧାରଣ କରିଥିଲେ ହେଁ ମଧ୍ୟଯୁଗରୁ ଓଡ଼ିଶା ନାମ ଧାରଣ କରିଥିଲା । ଏହି ପ୍ରାଚୀନ ରାଜ୍ୟ କେତେବେଳେ ଜଣେ ରାଜାଙ୍କ ଦ୍ୱାରା ଏବଂ କେତେବେଳେ ଖଣ୍ଡବିଖଣ୍ଡିତ ହୋଇ ବିଭିନ୍ନ ରାଜାଙ୍କ ଦ୍ୱାରା ଶାସିତ ହେଲେ ହେଁ ଭାବ ଓ ଭାଷା ଦୃଷ୍ଟିରୁ ଏହାର ଜାତୀୟତା ଅକ୍ଷୁଣ୍ଣ ରହିଥିଲା । ରାମାୟଣ, ମହାଭାରତ, ବୃହତ୍ ସଂହିତା, ଶକ୍ତି ସଙ୍ଗମ ତନ୍ତ୍ର, ବୁଦ୍ଧାୟନ ସୂତ୍ର, ଦିଗ୍‌ବିଜୟ ପ୍ରକାଶ, ତ୍ରିକାଣ୍ଡ କୋଷ, ସ୍କନ୍ଦପୁରାଣ, କପିଳ ସଂହିତା ମତ୍ସ୍ୟପୁରାଣ, ଦଶକୁମାର ଚରିତ ପ୍ରଭୃତି ପ୍ରାଚୀନ ଶାସ୍ତ୍ରସମୂହରେ ଏହି ଭୂଖଣ୍ଡର ଗୌରବଗାଥା ଅଙ୍କିତ । ଏହି ଭୂଖଣ୍ଡରେ ଚୈତ୍ର, ଭୌମ, ସୋମ, ଗଙ୍ଗ, ସୂର୍ଯ୍ୟ ଓ ଭୋଇବଂଶର ନରପତିଗଣ ଶାସନ କରି ଅକ୍ଷୟଯଶ ରଖିଯାଇଛନ୍ତି । ଦୁଃଖର ବିଷୟ ଷୋଡଶ ଶତାବ୍ଦୀରେ ଏହି ରାଜ୍ୟର ସ୍ୱାଧୀନତା ବିପନ୍ନ ହୋଇ ଏହା ଆଫଗାନ, ମୋଗଲ, ମରହଟ୍ଟା ଓ ଇଂରେଜମାନଙ୍କ ଶାସନାଧୀନ ହୋଇଥିଲା । ସେମାନେ ଓଡ଼ିଶାକୁ ସ୍ୱତନ୍ତ୍ର ରାଜ୍ୟର ମାନ୍ୟତା ପ୍ରଦାନ ନକରି ବଙ୍ଗ, ବିହାର, ମାନ୍ଦ୍ରାଜ ଓ ମଧ୍ୟପ୍ରଦେଶ ଅନ୍ତର୍ଭୁକ୍ତ କରିଥିଲେ । ପରିଶେଷରେ ଓଡ଼ିଆ ଜାତିର ଜାତୀୟ ସଂଗ୍ରାମ ଫଳରେ ୧୯୩୬ ଅପ୍ରେଲ ୧ ତାରିଖରେ ଓଡ଼ିଶା ଭାରତର ପ୍ରଥମ ଭାଷାଭିତ୍ତିକ ରାଜ୍ୟର ମାନ୍ୟତା ଲାଭ କଲା ।

୧୫୬୮ ଖ୍ରୀଷ୍ଟାବ୍ଦରେ ଆଫ୍‌ଗାନମାନେ ଓଡ଼ିଶା ଅଧିକାର ପୂର୍ବକ ଏହାକୁ ବଙ୍ଗପ୍ରଦେଶ ଅଧୀନରେ ରଖିଲେ । ପରେ ପରେ ମୋଗଲମାନେ ଓଡ଼ିଶା ଅଧିକାର ପୂର୍ବକ ଏହାକୁ ଗୋଟିଏ ସୁବାରେ ପରିଣତ କରିଥିଲେ । ଏହାପରେ ମରହଟ୍ଟାମାନେ ଓଡ଼ିଶା ଅଧିକାର କରିଥିଲେ ହେଁ ସେମାନଙ୍କ ରାଜତ୍ୱରେ ଓଡ଼ିଶା ଶାସନରେ ବ୍ୟାପକ ଅସ୍ଥିରତା ସୃଷ୍ଟି ହୋଇଥିଲା । ୧୮୦୩ରେ ଇଂରେଜମାନେ ଓଡ଼ିଶା ଅଧିକାର କଲେ । ସେମାନେ ଓଡ଼ିଶାର ହଜାର ହଜାର ବର୍ଷର ଐତିହ୍ୟ ଓ ସଂସ୍କୃତିକୁ ଭ୍ରୂକୁଞ୍ଚନ କରି ଓଡ଼ିଶାର ଦକ୍ଷିଣାଞ୍ଚଳକୁ ମାନ୍ଦ୍ରାଜ ପ୍ରଦେଶ, ପଶ୍ଚିମାଞ୍ଚଳକୁ ମଧ୍ୟପ୍ରଦେଶ ଓ ଉତ୍ତରାଞ୍ଚଳକୁ ବଙ୍ଗ ପ୍ରଦେଶରେ ମିଶ୍ରଣ କରିଦେଲେ । ଇଂରେଜମାନେ କପଟତା ଅବଲମ୍ବନ ପୂର୍ବକ ଓଡ଼ିଶା ଅଧିକାର କରିଥିବାରୁ ଓଡ଼ିଆ ଜାତି ଏହା ସହଜରେ ସ୍ୱୀକାର କରିନଥିଲା । ଏହା ବିରୁଦ୍ଧରେ ଓଡ଼ିଆମାନଙ୍କ ଦ୍ୱାରା ସଂଗଠିତ ୧୮୧୭ ମସିହାର ପାଇକ ବିଦ୍ରୋହ ଥିଲା ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ । ଓଡ଼ିଆମାନେ ଦୀର୍ଘ ଆଠବର୍ଷ ଏହି ସଂଗ୍ରାମ ଜାରି ରଖିଥିଲେ । ଏପରିକି ଓଡ଼ିଆ ପାଇକବୀରଙ୍କ ଭୟରେ ଇଂରେଜ ପ୍ରଶାସକମାନେ ଖୋର୍ଦ୍ଧା ପରିତ୍ୟାଗ ପୂର୍ବକ ପଳାୟନ କରିଥିଲେ । ଏହି କାରଣରୁ ଇଂରେଜମାନେ ଓଡ଼ିଆମାନଙ୍କୁ ଦୁର୍ଦ୍ଧର୍ଷ ବିବେଚନା କରି ଭୟରେ ବିଶାଳ ଓଡ଼ିଶାକୁ ଖଣ୍ଡଖଣ୍ଡ କରି ଭିନ୍ନ ଭିନ୍ନ ପ୍ରଦେଶ ଅଧୀନରେ ରଖିଲେ । ଓଡ଼ିଶା ମଧ୍ୟସ୍ଥ ଗଡଜାତ ରାଜାମାନଙ୍କୁ କରଦ ରାଜା ରୂପେ ସନନ୍ଦ ପ୍ରଦାନ

କଲେ । ପରିଣାମ ସ୍ୱରୂପ ଐତିହ୍ୟମୟ ଓ ଗୌରବମୟ ଓଡ଼ିଶା ଭୂଖଣ୍ଡ ସ୍ୱାତନ୍ତ୍ର୍ୟ ହରାଇ ବସିଲା ତଥା ଓଡ଼ିଶାବାସୀ ପ୍ରଶାସନ, ଶିକ୍ଷା, ସ୍ୱାସ୍ଥ୍ୟ ପ୍ରତ୍ୟେକର ସାମାନ୍ୟତମ ସୁବିଧାରୁ ବଞ୍ଚିତ ହୋଇ ଦୁଃଖ ଓ ଦୁର୍ଦ୍ଦଶାରେ କାଳାତିପାତ କଲେ । ୧୮୬୫-୬୬ରେ ଓଡ଼ିଶାରେ ଗୋଟିଏ ବଡ ଦୁର୍ଭିକ୍ଷ ପଡିଥିଲା । ଏହାକୁ ନ'ଅଙ୍କ ଦୁର୍ଭିକ୍ଷ କୁହାଯାଇଥିଲା । ଏହି ଦୁର୍ଭିକ୍ଷରେ ଲକ୍ଷ ଲକ୍ଷ ଓଡ଼ିଆ ଖାଇବାକୁ ନପାଇ ପ୍ରାଣ ହରାଇଥିଲେ ହେଁ ସରକାରୀ ରିପୋର୍ଟରେ ମୃତ୍ୟୁ ସଂଖ୍ୟା ଏକ ଲକ୍ଷ ବୋଲି କୁହାଯାଇଥିଲା । ପ୍ରମୁଖ ଓଡ଼ିଶାବାସୀଙ୍କର ଦାବି ଓ ଆପତ୍ତିକ୍ରମେ ବିଲାତସ୍ଥିତ ଭାରତସଚିବ ସାର୍ ଷ୍ଟାଫୋର୍ଡ ନର୍ଥକୋଟ ତଦନ୍ତ କରି ରିପୋର୍ଟ ପ୍ରଦାନ କରିଥିଲେ ଯେ, 'ବଙ୍ଗ, ବିହାର ଓ ଓଡ଼ିଶାକୁ ଏକ ପ୍ରଦେଶ ରଖାଯାଇଥିବାରୁ ଶାସକବୃନ୍ଦ ଏହି ବିଶାଳ ଭୂଖଣ୍ଡର ଶାସନ ନିୟନ୍ତ୍ରଣ କରିପାରିଲେ ନାହିଁ ଏବଂ ଏହି କାରଣରୁ ଓଡ଼ିଶାର ଅକଥନୀୟ ଅବସ୍ଥା ଘଟିଲା,' ଏହାପରେ ବାଲେଶ୍ୱର ରାଜା ଶ୍ୟାମାନନ୍ଦ ଦେ, ଢେଙ୍କାନାଳ ରାଜା ଭାଗୀରଥୀ ମହୀନ୍ଦ୍ର ବାହାଦୂର, ବିଚିତ୍ରାନନ୍ଦ ଦାସ, ବନମାଳୀ ସିଂହ ପ୍ରଭୃତି ଅନେକ ଓଡ଼ିଆ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ନିମିତ୍ତ ସରକାରଙ୍କଠାରେ ଦାବି ଜଣାଇଲେ । କିନ୍ତୁ ଏଥିରୁ କିଛି ସୁଫଳ ମିଳିଲା ନାହିଁ ।

ନ'ଅଙ୍କ ଦୁର୍ଭିକ୍ଷ ପରେ ପରେ କେତେଜଣ କୁଚକ୍ରୀ ଓଡ଼ିଆ ଭାଷା ବିଲୋପ ନିମିତ୍ତ ଉଦ୍ୟମ କରି 'ଉଡିୟା ଏକ ସ୍ୱତନ୍ତ୍ର ଭାଷା ନୟ' ନାମରେ ଗୋଟିଏ ପୁସ୍ତିକା ପ୍ରକାଶନ କଲେ । ଏହାର ପ୍ରତିବାଦରେ ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନ ତେଜି ଉଠିଲା । ଏହି ଆନ୍ଦୋଳନରେ ଅଗଣିତ ଓଡ଼ିଆ ଯୋଗ ଦେଇଥିଲେ । ସେମାନଙ୍କ ମଧ୍ୟରେ ପ୍ରମୁଖ ଥିଲେ ବାରିଷ୍ଟର ମଧୁସୂଦନ ଦାସ, ଫକୀର ମୋହନ ସେନାପତି, ରାମଚନ୍ଦ୍ର ଭଞ୍ଜଦେଓ, ଭଗବାନ ଦାସ ଓ ମଧୁସୂଦନ ରାଓ ପ୍ରଭୃତି । ସମ୍ବଲପୁର କଚେରୀରୁ ଓଡ଼ିଆ ଭାଷା ଉଠିଯାଇ ହିନ୍ଦୀ ପ୍ରଚଳନ ହେବାରୁ ସମ୍ବଲପୁରବାସୀ ଏହାର ଦୃଢ ପ୍ରତିବାଦ କରି ଓଡ଼ିଶା ସହିତ ମିଶ୍ରଣ ଦାବି କଲେ । ସମ୍ବଲପୁରର ନେତୃବର୍ଗ ଥିଲେ ଗଙ୍ଗାଧର ମେହେର, ବ୍ରଜମୋହନ ପଟ୍ଟନାୟକ, ବଳଭଦ୍ର ସୁଆର, ଧରଣୀଧର ମିଶ୍ର, ମହନ୍ତ ବିହାରୀ ଦାସ, ମଦନ ମୋହନ ମିଶ୍ର ଓ ଶ୍ରୀପତି ମିଶ୍ର ପ୍ରଭୃତି । ଗଞ୍ଜାମ ଅଞ୍ଚଳକୁ ମାନ୍ଦ୍ରାଜରୁ ଆଣି ଓଡ଼ିଶା ସହିତ ମିଶାଇବା ନିମିତ୍ତ ଗଞ୍ଜାମବାସୀ ଦୃଢ ଦାବି କଲେ । ଏହାର ନେତୃତ୍ୱ ନେଇଥିଲେ ହରିହର ମର୍ଦ୍ଦରାଜ, ହରିହର ପଣ୍ଡା, ବଳରାମ ମହାରଣା, ଶ୍ୟାମସୁନ୍ଦର ରାଜଗୁରୁ, ନରସିଂହ ଦାସ, ଶଶୀଭୂଷଣ ରଥ, ବିଶ୍ୱନାଥ ମିଶ୍ର ଓ ନୀଳମଣି ବିଦ୍ୟାରତ୍ନ ପ୍ରମୁଖ । କଟକର ଗୌରୀଶଙ୍କର ରଥ, ରାମଶଙ୍କର ରାୟ, ପ୍ୟାରୀମୋହନ ଆଚାର୍ଯ୍ୟ ତଥା ପୁରୀର ରାମଚନ୍ଦ୍ର ଦାସ ମଧ୍ୟ ଏହା ସପକ୍ଷରେ ସ୍ୱର ଉତ୍ତୋଳନ କରିଥିଲେ । ୧୮୮୨ ମସିହାରେ 'ଉତ୍କଳସଭା' ଗଠନ କରାଗଲା ତଥା ଏହି ସଭା ତରଫରୁ ଭାଷା ସୂତ୍ରରେ ଓଡ଼ିଶା ପ୍ରଦେଶ ଗଠନର ଦାବି ଉପସ୍ଥାପନା କରାଗଲା । ସଭାର ଆହ୍ୱାନକ୍ରମେ ଦେୱାନ ଦାମୋଦର ପଟ୍ଟନାୟକ, ପଣ୍ଡିତ ଗୋବିନ୍ଦ ଚନ୍ଦ୍ର ମହାପାତ୍ର, କାମପାଳ ମିଶ୍ର ପ୍ରଭୃତି ଅଗଣିତ ଓଡ଼ିଆ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଆନ୍ଦୋଳନରେ ସାମିଲ ହୋଇଥିଲେ ।

୧୯୦୩ ମସିହାରେ ଗଞ୍ଜାମ ଜାତୀୟ ସମିତି ଗଠନ କରାଗଲା । ଗଞ୍ଜାମ ଅଞ୍ଚଳର ଆନ୍ଦୋଳନକାରୀ ଏହାକୁ ଗଠନ କରିଥିଲେ ହେଁ ମଧୁବାବୁଙ୍କ ପରାମର୍ଶକ୍ରମେ ସମଗ୍ର ଓଡ଼ିଶା ନିମିତ୍ତ କାର୍ଯ୍ୟକାରୀ କରିବାକୁ ଗଞ୍ଜାମ ଜାତୀୟ ସମିତିକୁ ଉତ୍କଳ ସମ୍ମିଳନୀ ନାମରେ ରୂପାନ୍ତରିତ କରାଗଲା । ମୟୂରଭଞ୍ଜ ମହାରାଜା ରାମଚନ୍ଦ୍ର ଭଞ୍ଜଦେଓଙ୍କ ଅଧ୍ୟକ୍ଷତାରେ କଟକଠାରେ ୧୯୦୩ ମସିହା ଡିସେମ୍ବର ୩୦ରୁ ୩୧ ତାରିଖରେ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ଅନୁଷ୍ଠିତ ହେଲା । ଏହି ସମ୍ମିଳନୀରେ ଓଡ଼ିଶାର ସବୁ ପ୍ରାନ୍ତରରୁ ପ୍ରତିନିଧିମାନେ ଯୋଗ ଦେଇଥିଲେ । ଏହି ସଭାର ନିଷ୍ପତ୍ତିକ୍ରମେ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ନେଇ ଓଡ଼ିଶା ପ୍ରଦେଶ ଗଠନ ଦାବି ବମ୍ବେଠାରେ ଅନୁଷ୍ଠିତ ହେବାକୁ ଥିବା କଂଗ୍ରେସ ଅଧିବେଶନରେ ଉପସ୍ଥାପନା କରାଯିବାକୁ ସ୍ଥିରୀକୃତ ହେଲା । ତଦନୁଯାୟୀ ପାରଳା ମହାରାଜା ପଦ୍ମନାଭଦେବ, ଶ୍ୟାମସୁନ୍ଦର ରାଜଗୁରୁ ଓ ଗଙ୍ଗାଧର ଖାଡଙ୍ଗା ବମ୍ବେ କଂଗ୍ରେସ ଅଧିବେଶନରେ ଓଡ଼ିଶାବାସୀଙ୍କ ତରଫରୁ ଓଡ଼ିଶା ପ୍ରଦେଶ ଗଠନ ଦାବି ଉପସ୍ଥାପନା କଲେ । ଉତ୍କଳ ସମ୍ମିଳନୀର ମୂଳ ଲକ୍ଷ୍ୟ ଥିଲା ଓଡ଼ିଆ ଭାଷାଭାଷୀ ଅଞ୍ଚଳ ସମୂହର ଏକତ୍ରୀକରଣ ତଥା ଓଡ଼ିଆଙ୍କ ସ୍ୱାର୍ଥରକ୍ଷା । ଉଲ୍ଲେଖଯୋଗ୍ୟ ଯେ ଓଡ଼ିଶାରେ ଅବସ୍ଥାପିତ ସରକାରୀ ପଦାଧିକାରୀବୃନ୍ଦ ଏହି ସମ୍ମିଳନୀରେ ଯୋଗ ଦେଇଥିଲେ ଏବଂ ପରେ ସହଯୋଗ କରିନଥିଲେ । ଦେୱାନ ଦାମୋଦର ପଟ୍ଟନାୟକ ଇଂରେଜ

ସରକାରଙ୍କୁ ଖାତିର ନକରି ଉତ୍କଳ ସମ୍ମିଳନୀରେ ଯୋଗ ଦେଇଥିଲେ । ସୂଚନାଯୋଗ୍ୟ ଯେ ଫକୀର ମୋହନ ସେନାପତି, ରାଧାନାଥ ରାୟ, ମଧୁସୂଦନ ରାଓ, ଦାମୋଦର ପଟ୍ଟନାୟକ, ବିଶ୍ୱନାଥ କର ପ୍ରଭୃତି ସାହିତ୍ୟିକବୃନ୍ଦ ୧୯୦୩ରେ ଉତ୍କଳ ସାହିତ୍ୟ ସମାଜ ନାମରେ ଏକ ଜାତୀୟ ସାରସ୍ୱତ ଅନୁଷ୍ଠାନ କଟକଠାରେ ପ୍ରତିଷ୍ଠା କରି ଜାତୀୟ ଚେତନା ସୃଷ୍ଟି ଓ ଜାତୀୟ ସାହିତ୍ୟର ସମୃଦ୍ଧି ନିମିତ୍ତ ପଦକ୍ଷେପ ନେଇଥିଲେ । ଫଳରେ ଓଡ଼ିଶାରେ ଏକ ଅଭୂତପୂର୍ବ ଜାତୀୟ ଜାଗରଣ ସୃଷ୍ଟି ହୋଇଥିଲା । ଓଡିଶାର ବିଭିନ୍ନ ଅଞ୍ଚଳର କବିକୋବିଦବୃନ୍ଦ ଉତ୍କଳ ସାହିତ୍ୟ ସମାଜରେ ଯୋଗଦାନ କରି ଜାତୀୟ ଚେତନା ଦ୍ୟୋତକ ସାହିତ୍ୟ ସୃଷ୍ଟି ପୂର୍ବକ ଜାତୀୟ ଆନ୍ଦୋଳନକୁ ବ୍ୟାପକ କରିଥିଲେ । ଉତ୍କଳ ସମ୍ମିଳନୀ ଗଠନ ହେବା ପରେ ତାହାର ଦାବି ଅନୁଯାୟୀ ଇଂରେଜ ସରକାର ରିସ୍‌ଲେ କମିଟି ଗଠନ କରିଥିଲେ । ଏହି କମିଟି ତଦନ୍ତ ପରେ ସମଗ୍ର ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକ ଶାସନାଧୀନ କରିବାର ଯୁକ୍ତିକୁ ଗ୍ରହଣ ପୂର୍ବକ ଓଡ଼ିଶା ପ୍ରଦେଶ ଗଠନ ନିମିତ୍ତ ସରକାରଙ୍କୁ ସୁପାରିଶ କରିଥିଲେ ।

୧୯୦୫ରେ ଇଂରେଜ ସରକାର ବଙ୍ଗପ୍ରଦେଶକୁ ପୂର୍ବବଙ୍ଗ ଓ ପଶ୍ଚିମବଙ୍ଗ ନାମରେ ଦୁଇଭାଗରେ ବିଭକ୍ତ କରିଥିଲେ । ତେଣୁ ବଙ୍ଗାଳୀମାନେ ବିପ୍ଳବାତ୍ମକ ପନ୍ଥା ଗ୍ରହଣ କଲେ । ତେଣୁ ଇଂରେଜମାନେ ବଙ୍ଗ ଭଙ୍ଗ ପ୍ରସ୍ତାବ ସ୍ଥଗିତ ରଖି ୧୯୧୧ ମସିହାରେ ବିହାର ଓ ଓଡ଼ିଶାକୁ ବଙ୍ଗପ୍ରଦେଶରୁ ଅଲଗା କରି ଏକ ମିଳିତ ପ୍ରଦେଶ ଭାବରେ ରଖିଲେ । ଏଥିରେ ମାନ୍ଦ୍ରାଜ ପ୍ରଦେଶସ୍ଥିତ ଓଡ଼ିଆ ଅଞ୍ଚଳ ମିଶି ନଥିଲା । ୧୯୧୪ରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀରେ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ସମସ୍ତ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକ ଶାସନାଧୀନ କରିବାର ଆହ୍ୱାନ ଦେଲେ। ୧୯୧୬ରେ ଚେମ୍‌ସଫୋର୍ଡ ଓ ମଣ୍ଟେଗୁଙ୍କୁ ନେଇ ଗଠିତ ଶାସନ ସଂସ୍କାର କମିଟି ନିକଟରେ ମଧୁସୂଦନ ଦାସ, ଗୋପବନ୍ଧୁ ଦାସ, ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ, ସୁଦାମ ଚରଣ ନାୟକ, ବ୍ରଜସୁନ୍ଦର ଦାସ, ହରିହର ପଣ୍ଡା ଓ ଶୋଭାଚନ୍ଦ୍ର ସିଂହଦେଓ ପ୍ରଭୃତି ନେତୃବର୍ଗ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକ ପ୍ରଦେଶ କରିବା ନିମିତ୍ତ ଦାବି ଉପସ୍ଥାପନ କଲେ । ଶାସନ ସଂସ୍କାର କମିଟି ପ୍ରଥମେ ଦାବିକୁ ଅଗ୍ରାହ୍ୟ କରିଥିଲେ ହେଁ ପରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ନିମିତ୍ତ ସୁପାରିଶ କରିଥିଲେ । ଶାସନ ସଂସ୍କାର କମିଟିର ଏହି ସୁପାରିଶ ଅନୁଯାୟୀ ବିହାର ଓଡ଼ିଶା କାଉନ୍‌ସିଲ୍‌ରେ ପ୍ରସ୍ତାବ ଗୃହୀତ ହୋଇଥିଲା । ଏହା କାର୍ଯ୍ୟକାରୀ ନହେବାରୁ ୧୯୨୦ ମସିହାରେ ପାରଳା ମହାରାଜାଙ୍କ ନେତୃତ୍ୱରେ ଗଞ୍ଜାମବାସୀ ପୁନର୍ବାର ଦାବି ଉପସ୍ଥାପନା କଲେ । ସେହି ୧୯୨୦ ମସିହାରେ ଗୋପବନ୍ଧୁ ଦାସଙ୍କ ସଭାପତିତ୍ୱରେ ଓଡ଼ିଶାରେ ପ୍ରାଦେଶିକ କଂଗ୍ରେସ କମିଟି ଗଠନ କରାଯାଇ ଓଡ଼ିଆଙ୍କ ଦାବିକୁ ଗୁରୁତ୍ୱ ପ୍ରଦାନ କରାଯାଇଥିଲା । ପଣ୍ଡିତ ନୀଳକଣ୍ଠ ଦାଶ ମଧ୍ୟ ବିହାର ଓଡ଼ିଶା କାଉନ୍‌ସିଲ୍‌ରେ ଓଡ଼ିଶାର ଦାବି ଜଣାଇଥିଲେ । ସେ ମଧ୍ୟ ଓଡନେଲ କମିଟି ନିକଟରେ ସାକ୍ଷ୍ୟ ଦେଇ ଦାବିର ଯଥାର୍ଥତା ପ୍ରତିପାଦନ କରିଥିଲେ । ୧୯୨୪ରେ ମଧୁସୂଦନ ଦାସ କଂଗ୍ରେସ ଓ ଅଣକଂଗ୍ରେସ ନେତାମାନଙ୍କ ସମନ୍ୱୟ କମିଟି ନିକଟରେ ଦୃଢଦାବି ଜଣାଇଥିଲେ। ଉତ୍କଳସମ୍ମିଳନୀ ଆନୁକୂଲ୍ୟରେ ଗୀତ, ସଂଗୀତ, ଦେଶବନ୍ଦନା ଓ ସ୍ଲୋଗାନ୍ ରଚନା କରାଯାଇ ଅଗଣିତ ଓଡ଼ିଆଙ୍କୁ ଜାତୀୟତାରେ ଉଦ୍‌ବୁଦ୍ଧ କରାଗଲା । ଉତ୍କଳ ସାହିତ୍ୟ ସମାଜ ଆନୁକୂଲ୍ୟରେ ନିୟମିତ ଭାବରେ ଆଲୋଚନାଚକ୍ର ଅନୁଷ୍ଠିତ ହୋଇ ଜାତୀୟ ଚେତନା ଜାଗରଣର ପ୍ରୟାସ ଜାରି ରହିଥିଲା । କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର, ବୀର କିଶୋର ଦାସ, ବାଞ୍ଛାନିଧି ମହାନ୍ତି ପ୍ରଭୃତି ଅନେକ କବି ଜାତୀୟ ଚେତନା ଦ୍ୟୋତକ କବିତା ଲେଖି ପ୍ରଚାର ଓ ପ୍ରସାର କରିଥିଲେ ।

୧୯୩୧ରେ ଲଣ୍ଡନଠାରେ ଗୋଲଟେବୁଲ ବୈଠକ ବସିଲା। ଓଡ଼ିଶାରୁ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ସେହି ଗୋଲଟେବୁଲ ବୈଠକରେ ପ୍ରତିନିଧିତ୍ୱ କରିଥିଲେ । ସେତେବେଳକୁ ପୂର୍ବ ନେତୃବୃନ୍ଦଙ୍କ ସହିତ ଗୋଦାବରୀଶ ମିଶ୍ର, କୃପାସିନ୍ଧୁ ମିଶ୍ର, ଅନନ୍ତ ମିଶ୍ର, ଆଚାର୍ଯ୍ୟ ହରିହର ଦାସ, ହରେକୃଷ୍ଣ ମହତାବ, ସତ୍ୟବାଦୀ ମିଶ୍ର ପ୍ରଭୃତି ଅଗଣିତ ବିପ୍ଳବୀଙ୍କ ନେତୃତ୍ୱ ଓଡ଼ିଆ ଆନ୍ଦୋଳନକୁ ବ୍ୟାପକ କରିପାରିଥିଲା । ବିଶେଷତଃ ଛୁରୀଆନା କୁଞ୍ଜର ପଞ୍ଚସଖା ଓ ସତ୍ୟବାଦୀ ବନବିଦ୍ୟାଳୟ ତଥା 'ସମାଜ' ମାଧ୍ୟମରେ ଓଡ଼ିଶାବାସୀଙ୍କ ହୃଦୟରେ ଜାତୀୟ ଚେତନା ବିକାଶ ଲାଭ କରି ତୀବ୍ର ସ୍ୱରୂପ ଧାରଣ କରିଥିଲା । ଓଡ଼ିଶାରେ ସ୍ୱାଧୀନତା ଆନ୍ଦୋଳନ, ନିଶାନିବାରଣ, ଲବଣ

ସତ୍ୟାଗ୍ରହ, ସରକାରୀ ଆଇନ ଅମାନ୍ୟ ଜୋର ସୋର୍‌ରେ ଆରମ୍ଭ ହୋଇଯାଇଥିଲା । ପରିଶେଷରେ ତତ୍କାଳୀନ ଇଂରେଜ ସରକାର ୧୯୩୬ ଅପ୍ରେଲ ୧ତାରିଖଠାରୁ ଓଡ଼ିଶାକୁ ସ୍ୱତନ୍ତ୍ର ପ୍ରଦେଶର ମର୍ଯ୍ୟାଦା ପ୍ରଦାନ କଲେ । ଏହା ଭାରତର ପ୍ରଥମ ଭାଷାଭିତ୍ତିକ ପ୍ରଦେଶ ହୋଇଥିଲେ ହେଁ ସମସ୍ତ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ଏହି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶରେ ମିଶିପାରି ନଥିଲା । ଉତ୍ତରରେ ଥିବା ମେଦିନୀପୁର, ସିଂହଭୂମି, ଧଳଭୂମି, ଚାଇଁବସା, ଛୋଟନାଗପୁର, ଚକ୍ରଧରପୁର, ପଶ୍ଚିମରେ ଥିବା ବସ୍ତର, ରାୟପୁର, ଅମ୍ବିକାପୁର, ସୁରୁଗୁଜା, ଶ୍ରୀପୁର, ସରିଆ ପ୍ରଭୃତି ଏବଂ ଦକ୍ଷିଣରେ ଥିବା ମଞ୍ଜୁଷା, ଟିକାଲି, ଜଳନ୍ତର ପ୍ରଭୃତି ଓଡ଼ିଶା ସହିତ ମିଶିପାରି ନଥିଲା । ଏହି ଖଣ୍ଡିତ ଓଡ଼ିଶା ପ୍ରଦେଶ ଦେଖିବା ନିମିତ୍ତ ଉତ୍କଳମଣି ଗୋପବନ୍ଧୁ ଦାସ, ଉତ୍କଳଗୌରବ ମଧୁସୂଦନ ଦାସଙ୍କ ସମେତ ଅନେକ ଉତ୍କଳ ପ୍ରାଣ ନେତା ଜୀବିତ ନଥିଲେ ।

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ୧୯୩୬ ମସିହାରେ ଗଠନ ହୋଇଥିଲେ ହେଁ ଓଡ଼ିଶାବାସୀଙ୍କ ସ୍ୱପ୍ନ ସାକାର ହୋଇପାରିଲା ନାହିଁ । ଏପରିକି ଦେଶ ସ୍ୱାଧୀନ ହେବାପରେ ମଧ୍ୟ ଷଢେଇକଳା ଓ ଖରସୁଆଁ ଓଡ଼ିଶାରୁ ବିଚ୍ଛିନ୍ନ ହୋଇଗଲା । ବିଚ୍ଛିନ୍ନ ଅଞ୍ଚଳରେ ଓଡ଼ିଆ ଭାଷାଭାଷୀଙ୍କ ଦୁଃଖ ଦୁର୍ଦ୍ଦଶା ସ୍ୱଚକ୍ଷୁରେ ନଦେଖିଲେ ବିଚ୍ଛିନ୍ନତାର ଯନ୍ତ୍ରଣା ହୃଦୟଙ୍ଗମ କରିହେବ ନାହିଁ । ସ୍ୱାଧୀନତା ପରେ ଷଢେଇକଳା ଓ ଖରସୁଆଁକୁ ଓଡ଼ିଶାରେ ମିଶାଇବା ପାଇଁ ଓଡ଼ିଶାବାସୀ ବ୍ୟାପକ ଆନ୍ଦୋଳନ କରିଥିଲେ ହେଁ ଫଳ କିଛି ହେଲା ନାହିଁ । କେବଳ ସୁନୀଲ ଓ ବେଙ୍ଗପାଣିଆ ଶହୀଦ୍ ହେଲେ । ପୂର୍ଣ୍ଣାଙ୍ଗ ଓଡ଼ିଶା ଗଠନର ଆଶା ଆଶାରେ ହିଁ ରହିଗଲା । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଅଶୀବର୍ଷ ହେଲାଣି, ତଥାପି ଓଡ଼ିଶା ପଛୁଆ ରାଜ୍ୟ । ଯେଉଁ ଓଡ଼ିଆ ଭାଷାକୁ ଆଧାର କରି ଓଡ଼ିଶା ପ୍ରଦେଶ ଗଠନ ହୋଇଥିଲା ସେହି ଓଡ଼ିଆ ଭାଷା ଆଜି ବିପନ୍ନ । ପ୍ରାଚୀନ ସାହିତ୍ୟ, ଅଭିଲେଖ, ବିଦେଶୀ ପରିବ୍ରାଜକଙ୍କ ବିବରଣୀ ପ୍ରଭୃତିରେ ବର୍ଣ୍ଣିତ ବିଶାଳ ଓଡ଼ିଶାର ସାମଗ୍ରିକ ଐତିହ୍ୟକୁ ଜଳାଞ୍ଜଳି ଦିଆଯାଇ ଏକ ଖଣ୍ଡିତ ପ୍ରଦେଶକୁ ଓଡ଼ିଶା ପ୍ରଦେଶ କୁହାଯାଉଛି ।

ଶ୍ରୀରାମ ମଣ୍ଡପ ସରଣୀ
ଦକ୍ଷିଣକାଳୀ ମାର୍ଗ, ଢେଙ୍କାନାଳ




ବିଜୁ ପଟ୍ଟନାୟକ ଜୟନ୍ତୀ ଅବସରରେ ଆୟୋଜିତ ମିନି ମାରାଥନ୍‌ରେ ପ୍ରଥମ ସ୍ଥାନ ଅଧିକାର କରିଥିବା ବରିଷ୍ଠ ନାଗରିକ ଦୀପ୍ତିମୟୀ ରାୟଙ୍କ ସହ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ।

# ଗଜପତି ପ୍ରତାପରୁଦ୍ର ଦେବ

ଡାକ୍ତର ଇନ୍ଦ୍ରମଣି ଜେନା
ପ୍ରଫେସର ବିଜୟିନୀ ମହାନ୍ତି

ବିଶାଳ ଓଡିଶା ରାଷ୍ଟ୍ରର ଗଜପତିଙ୍କ ଅଜ୍ଞାତରେ ଗୁପ୍ତଚର!!

୧୫୧୦ ମସିହାର ଦେଶ, ଓଡିଶା ରାଷ୍ଟ୍ରର କପିଳେନ୍ଦ୍ରାବ୍ଦ ୭୪ ବେଳର କଥା। ଗଜପତି କପିଳେନ୍ଦ୍ରଦେବଙ୍କର ପ୍ରଶସ୍ତ ଓଡିଶାର ଦକ୍ଷିଣ ସୀମାନ୍ତ କ୍ରିଷ୍ଣା ନଦୀତଟରେ ତିରୋଧାନର ୪୩ ବର୍ଷ ପରର ସମୟ। ଓଡିଶାରେ ଗଜପତି ପ୍ରତାପରୁଦ୍ର ଦେବ। ଗଜପତି ପୁରୁଷୋତ୍ତମ ଦେବଙ୍କ ପୁତ୍ର ଓ ଗଜପତି କପିଳେନ୍ଦ୍ରଙ୍କ ପୌତ୍ର। ଶକ୍ତିମନ୍ତ ଓ ଧର୍ମପ୍ରାଣ। ପିତାମହଙ୍କ ସଂସ୍ଥାପିତ ବିଶାଳ ଓଡିଶା ରାଷ୍ଟ୍ରର ଦାୟାଦ। ଭାଗୀରଥୀ ଗଙ୍ଗାରୁ ଗୌତମୀ ଗଙ୍ଗା (ଗୋଦାବରୀ) ପର୍ଯ୍ୟନ୍ତ ବିସ୍ତୃତ ରାଜ୍ୟ ସହିତ ଆଂଶିକ ବଙ୍ଗଳା, ଝାଡଖଣ୍ଡ, ଛତିଶଗଡ, ଭେଙ୍ଗୀ, କୋଣ୍ଡାଭିଡୁ, ଚନ୍ଦ୍ରଗିରି ଓ ବିଜୟନଗରର ପୂର୍ବାଂଶ ଉଦୟଗିରି ଓ କାଞ୍ଚି ରାଜ୍ୟ ସମେତ ପ୍ରଶସ୍ତ ଓଡିଶା ରାଷ୍ଟ୍ର। ଗଜପତିଙ୍କୁ କୌଣସି ରାଜ୍ୟର ଗୁପ୍ତଚର ମାସ ମାସ ଧରି ସମସ୍ତଙ୍କର ଅଜ୍ଞାତରେ ଲକ୍ଷ୍ୟ କରି ଚାଲିଛନ୍ତି, ତାଙ୍କର ଗତିବିଧି, ଆଚାର ବ୍ୟବହାର, ରାଜନୈତିକ ଅଭିସନ୍ଧି, ଗମନାଗମନ, ଦିଗ୍‌ବିଜୟ, ଅର୍ଥନୀତି, କୂଟନୀତି, ପଡୋଶୀ ସଂପର୍କ ସବୁ ବିଷୟରେ ଚାଲିଛି ଗୁପ୍ତ ତଥ୍ୟ ସଂଗ୍ରହ। ନିଶ୍ଚିତ ଭାବରେ ଓଡିଶାରେ କାହାକୁ ବିଦିତ ହୋଇପାରିନି ଏହି ଘଟଣା। କିଏ ସିଏ ଶତ୍ରୁ କଳନା କରୁଛି ଗଜପତିଙ୍କର ବଳ ଓ କୁଟନୈତିକ ଆଚରଣ? କଅଣ ବା କାହାର ଦରକାର ଏମିତି ତଥ୍ୟ?

ତଦାନୀନ୍ତନ ଭାରତ ଖାଇବର ଦେଇ ପ୍ରବେଶ କରୁଥିବା ଆଫଗାନ, ତୁର୍କୀ, ମଙ୍ଗୋଲିଆ ଓ ମଧ୍ୟଏସିଆର ଅଶ୍ୱାରୋହୀମାନଙ୍କ ଦ୍ୱାରା ଲୁଣ୍ଠିତ, ସାମାଜିକ ଅର୍ଥନୈତିକ ଓ ଧର୍ମଗତ ଦୃଷ୍ଟିରୁ ଶୋଷିତ ଏବଂ ଖଣ୍ଡ ଖଣ୍ଡ ହୋଇ ଶାସିତ। ଏହି ସମୟକୁ ମୋଗଲମାନେ ଭାରତର ଶାସନ କ୍ଷେତ୍ରରେ ମୁହଁ ଦେଖେଇ ନାହାନ୍ତି ଅବା ନିଜର କ୍ଷେତ୍ର ପ୍ରସ୍ତୁତ କରୁଛନ୍ତି।

କିଏ ଏମିତି ଗୁପ୍ତଚର ଖଞ୍ଜିଛି ଓଡିଶାର ପୁରୀ ଆଉ କଟକରେ? କଅଣ ତାଙ୍କର ଉଦ୍ଦେଶ୍ୟ?

ବଙ୍ଗଳା ନବାବ କି ଏହାର ସୂତ୍ରଧର? ବିଗତ ତିନି ଶହ ବର୍ଷ ହେବ ମନ ପୂରିଯାଇଛି ଯାହା ଆଉ ଓଡିଶା ଆକ୍ରମଣ କରିବେ! ଖାଲି ଠାଉକା ପରି ଗଜପତି ଦକ୍ଷିଣମୁହାଁ ହୋଇଥିଲେ, ସୀମା ଅତିକ୍ରମ କରି ଏ ରାଷ୍ଟ୍ରର ଆରାଧ ଦେବତାଙ୍କ ରତ୍ନଭଣ୍ଡାର ଲୁଟିବେ। ଏଇ ଦୁଇବର୍ଷ ତଳେ ବଙ୍ଗଳାର ନବାବ ହୁସେନ ସାହା ସୁଯୋଗ ପାଇଥିଲେ ଓଡିଶା ଆକ୍ରମଣ କରିବାକୁ, ଗଜପତି ପ୍ରତାପରୁଦ୍ର କୌଣସି କାରଣରୁ ବହୁକାଳ ଦକ୍ଷିଣବିଜେ କରିଥିଲେ। ଗଜପତିଙ୍କ ଅନୁପସ୍ଥିତିରେ ନିଜ ସେନାପତି ଇସ୍‌ମାଇଲ୍ ଘାଜିକୁ ପଠାଇ କଟକ ଆକ୍ରମଣ କରନ୍ତି। ଗଜପତିଙ୍କ ରାଜଧାନୀ କଟକ ସହର ସାମୟିକ ଭାବରେ ଅନନ୍ତ ସାମନ୍ତରାୟଙ୍କ ଦାୟିତ୍ୱାଧୀନ। ଶତ୍ରୁ ସଂଖ୍ୟା ଓ ଆକ୍ରମଣ ଶୈଳୀ ପ୍ରତିହତ କରିବାର ଉପାୟ ନ ପାଇ ସେ ନିକଟ ବାରଙ୍ଗ ପାଖରେ ଥିବା ସାରଙ୍ଗଗଡରେ ଆତ୍ମଗୋପନ କରନ୍ତି। ତଡିତ୍ ବେଗରେ ପୁରୁଷୋତ୍ତମ କ୍ଷେତ୍ରରେ ଖବର ପହଞ୍ଚି ଜଗନ୍ନାଥଙ୍କୁ ସ୍ଥାନାନ୍ତର କରାଯାଏ ଚିଲିକାର ଚଢେଇଗୁହାକୁ।

ବଡ ଜରୁରୀ ଉଦ୍ଦେଶ୍ୟରେ ସୁଯୋଗ ଉଣ୍ଡି ବସିଥିଲେ ଗଜପତି ପ୍ରତାପରୁଦ୍ର ସମ୍ଭବତଃ ଦକ୍ଷିଣ ସୀମା କୋଣ୍ଡାଭିଡୁ ଅବା କାଞ୍ଚି ସନ୍ନିକଟରେ। ହାତରୁ ବାରମ୍ୱାର ଖସି ପଳାଉଥିବା କାଞ୍ଚି

ଅଞ୍ଚଳ ପାଇଁ କିଛି ସ୍ଥାୟୀ ସମାଧାନ କରିବା ଲକ୍ଷ୍ୟରେ ବିଜୟନଗର ରାଜଗାଦୀର ପଟ୍ଟପରିବର୍ତ୍ତନ ମୁହୂର୍ତ୍ତକୁ ଚାହିଁ ବସିଥିଲେ। ହୁସେନ୍ ସାହାର ଆସ୍ପର୍ଦ୍ଧା ପ୍ରତାପରୁଦ୍ରଙ୍କୁ ବାଧ୍ୟ କରିଛି କଟକ ଫେରାଇ ଆଣିବାକୁ, ହୁସେନ୍ ସାହାର ହୁଗୁଳି ଜହାନାବାଦ୍ ଦୁର୍ଗ ଆକ୍ରମଣ କରିବାକୁ। ନିଜ ଦୁର୍ଗ ଛାଡି ପ୍ରାଣରକ୍ଷା କରି ହୁସେନ ପଳାୟନ କରିଛି। ସେଇ ହୁସେନ ସାହା କି ଆଶାରେ ଗୁପ୍ତଚର ନିଯୁକ୍ତ କରିଥିବା ବୋଧ୍ୟ ହେଉ ନାହିଁ।

ଆଉ ଗୋଟିଏ ସନ୍ଦେହ ରହିଛି ଓଡିଶାର ଆଭ୍ୟନ୍ତରୀଣ ଅନ୍ତଃଶତ୍ରୁ ଉପରେ। ଓଡିଶା ରାଷ୍ଟ୍ରରେ ମୃଦୁ ଗୁଞ୍ଜରଣ ଶୁଭୁଛି ସେନାପତି ଗୋବିନ୍ଦ ବିଦ୍ୟାଧରଙ୍କର ଗତିବିଧି ଉପରେ। କିଛିଟା ଅମାନ୍ୟ ସୂଚକ କାର୍ଯ୍ୟ ଓ ମୁଖାଭାସ ମିଳୁଛି ଅବଜ୍ଞା ଓ ରାଜଦ୍ରୋହର। ଗଜପତିଙ୍କ କାନରେ ପଡିନି ଅବା ସିଏ କିଛି ଠୋସ ପ୍ରମାଣ ପାଇ ନାହାନ୍ତି। ତଥାପି ବିଦ୍ୟାଧର ଗଜପତିଙ୍କର ମୁଣ୍ଡବ୍ୟଥାର କାରଣ ହୁଅନ୍ତି କେତେକ ଶାସନ ବିଷୟରେ। ହୁସେନ୍ ସାହା ସହିତ ଗୁପ୍ତ ସମ୍ପର୍କ ସନ୍ଦେହ ରହିବା ସ୍ୱାଭାବିକ। ବଡ ସନ୍ତର୍ପଣରେ ଓଡିଶା ଶାସନକୁ ଅଣଦେଖାର ସୁଯୋଗ ନଦେଇ ବିକଳ୍ପ ଉପାୟରେ ରାଜକାର୍ଯ୍ୟ ସମ୍ପାଦନ କରାଇ ନେଉଛନ୍ତି ଗଜପତି। ଦୁଇ ଶତାବ୍ଦୀ ଧରି ଗଙ୍ଗଶାସନ ସମୟରୁ ଚଳି ଆସିଥିବା ଚିରାଚରିତ ଶାସନ ଅଦ୍ୟାବଧି ଚାଲିଛି। କେବଳ ନୂତନ ଅଧିକୃତ ଅଞ୍ଚଳ ପାଇଁ ନବ ନିଯୁକ୍ତ ପ୍ରଶାସକମାନେ ସମୟକ୍ରମେ ଗଜପତି ଶାସନ ପ୍ରବର୍ତ୍ତନ କରୁ ଅଛନ୍ତି। ଗଙ୍ଗଶାସନାଧୀନ ଓଡିଶାରେ କପିଳେନ୍ଦ୍ର ଓ ପୁରୁଷୋତ୍ତମ ମିଶାଇଛନ୍ତି ଗୋଦାବରୀ ଦକ୍ଷିଣସ୍ଥ କୋଣ୍ଡାଭିଡୁ, ଚନ୍ଦ୍ରଗିରି, ଉଦୟଗିରି। କାଞ୍ଚି କେତେବେଳେ ଅଛି ତ କେତେବେଳେ ଖସି ଯାଉଛି।

ପୂର୍ବପରି ଓଡିଶାର ଶାସନାଧୀନ ଅଞ୍ଚଳ କେତେକ ବିଶି (ବିଷୟ) ସମିଶ୍ରଣରେ ଗଠିତ ଦଣ୍ଡପାଟରେ ବିଭକ୍ତ। ଏମିତି ରାଜଧାନୀ କଟକ ରହିଛି ପୂର୍ବ ଦଣ୍ଡପାଟରେ। ସଂକ୍ଷେପରେ ଏହି ଦଣ୍ଡପାଟଗୁଡିକର ବର୍ତ୍ତମାନର ଆକଳନରେ ସ୍ଥିତି ଥିଲା–

୧. ପୂର୍ବ ଦଣ୍ଡପାଟ– କଟକ, କେନ୍ଦୁପାଟଣା ଓ ପୂର୍ବଭାଗ
୨. ଦକ୍ଷିଣ ଦଣ୍ଡପାଟ–ପୁରୀ ଓ ସଂଲଗ୍ନ ଅଞ୍ଚଳ
୩. ଢେଙ୍କାନାଳ ଦଣ୍ଡପାଟ–ଢେଙ୍କାନାଳ, ଆଠଗଡ, ଭୀମନଗର
୪. ଭଦ୍ରକ ଦଣ୍ଡପାଟ–ଭଦ୍ରକ, ରେମୁଣା ଓ ସମୁଦ୍ର ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳ
୫. ସୋରୋ ଦଣ୍ଡପାଟ–ସୋରୋ, ମେଦିନୀପୁର, ଜଳେଶ୍ୱର ଓ ମୂଳଜୟଥ ଅଞ୍ଚଳ
୬. କଳିଙ୍ଗ ଦଣ୍ଡପାଟ–ଗଞ୍ଜାମ ଓ ଶ୍ରୀକାକୋଲ୍ (ଶ୍ରୀକାକୁଲମ୍)
୭. ରାଜମହେନ୍ଦ୍ରୀ–ଗୋଦାବରୀ ଜିଲ୍ଲା ଓ ରାଜମହେନ୍ଦ୍ରୀ
୮. କୋଣ୍ଡାଭିଡୁ–କୋଣ୍ଡାଭିଡୁ ଦୁର୍ଗ ଓ ସଂଲଗ୍ନ ଅଞ୍ଚଳ
୯. ଚନ୍ଦ୍ରଗିରି ଓ ଉଦୟଗିରି –ସର୍ବ ଦକ୍ଷିଣ ବିଜୟନଗର ସହିତ ସୀମା

ଗଜପତି ପ୍ରତାପରୁଦ୍ରଙ୍କ ଶାସନ ଖସଡା ସେମିତି ପୂର୍ବବତ୍ ପୁରାତନ ଭାରତୀୟ ଶାସ୍ତ୍ରାନୁମୋଦିତ ଅର୍ଥଶାସ୍ତ୍ର ସମ୍ମତ ଓ ଜନସ୍ୱାର୍ଥରେ ପର୍ଯ୍ୟବସିତ। ନିଜର ଦରବାର ହେଉଛି ରାଜ ପରିବାର ଓ ରକ୍ତ ସମ୍ପର୍କୀୟ, ଯୁବରାଜ, ରାଜଗୁରୁ (ପୁରୋହିତ), ସାମରିକ ଅଧିକାରୀ, କବି, ଜ୍ୟୋତିଷ, ପଣ୍ଡିତ ଓ ରାଜ୍ୟର ଉଚ୍ଚ ଅଧିକାରୀମାନଙ୍କୁ ନେଇ ଗଠିତ। ରାଜ୍ୟରେ ଓ ରାଜ ଦରବାରରେ ଅନେକ ସମ୍ମାନ ଓ ଶକ୍ତି ସମ୍ବନ୍ଧୀୟ ପଦବୀ ରହିଛି। ପାତ୍ର, ମହାପାତ୍ର, ବେହେରା ମହାପାତ୍ର, ସାମନ୍ତ ଏମିତି ଅନେକ ସମ୍ମାନଜନକ ଉପାଧି ରହିଛି।

ମନ୍ତ୍ରୀ ପରିଷଦ ବିଷୟ ନିର୍ଦ୍ଦିଷ୍ଟ ଭାବରେ ଉଲ୍ଲିଖିତ ନଥିଲେ ହେଁ, ପ୍ରଶାସନ କ୍ଷେତ୍ରରେ ସହାୟକ ହେବାପାଇଁ ଷୋଳଜଣ ପାତ୍ର ସାମନ୍ତ ରହିଥିଲେ। ଏମିତି କେତେଜଣ ପ୍ରତାପରୁଦ୍ରଙ୍କ ପାତ୍ର ସାମନ୍ତ ହେଲେ – ବଳଭଦ୍ର ପାତ୍ର, ଭୀମ ପାତ୍ର, ଦୁର୍ଗା ପାତ୍ର, ରମାରଙ୍ଗ ପାତ୍ର, ଭିକାରି ପାତ୍ର, ମୁକୁନ୍ଦ ପାତ୍ର, ଅସହାୟ ପାତ୍ର, ଅଖଣ୍ଡ ପାତ୍ର, ଅଶନି ପାତ୍ର, ମୁରାରୀ ପାତ୍ର, ଭଜମୁକ୍ତି ପାତ୍ର, ସ୍ୱୈରିନ୍ଦ୍ରୀ ପାତ୍ର, ଗଜାଙ୍କୁଶ ପାତ୍ର।

ଗଜପତି ପ୍ରତାପରୁଦ୍ରଙ୍କ ଅମଳରେ ସବୁ ଦଣ୍ଡପାଟଗୁଡିକର ଶାସନଭାର ଜଣେ ଜଣେ ପ୍ରଶାସକ ତୁଲାଉଥିଲେ। ରାଜବଂଶର ଅନେକ ଲୋକ ପ୍ରଧାନ ଦଣ୍ଡପାଟଗୁଡିକର ଦାୟିତ୍ୱରେ ଥିଲେ ହେଁ ଅନେକ ଅଭିଜ୍ଞ ଓ ଜ୍ଞାନୀ ଲୋକ ପ୍ରଶାସନ କ୍ଷେତ୍ରରେ ନିଯୁକ୍ତ ହୋଇଥିଲେ। ରାଜମହେନ୍ଦ୍ରୀର ପ୍ରଶାସକ ଥିଲେ ରାମାନନ୍ଦ ରାୟ (ରାୟ ରାମାନନ୍ଦ ପଟ୍ଟନାୟକ)। ସିଏ କଟକର ବାସିନ୍ଦା, ବହୁ ଜ୍ଞାନୀ ଓ ଶାସନ କ୍ଷେତ୍ରରେ ଅଭିଜ୍ଞ ଥିଲେ। ଧର୍ମଜ୍ଞାନ ଓ ଭକ୍ତିଭାବରେ

ତାଙ୍କର ଯେତିକି ପରିଚୟ ଥିଲା, ସିଏ ମହାପ୍ରଭୁ ଶ୍ରୀଚୈତନ୍ୟଙ୍କ ସଂସର୍ଗରେ ଆସିବା ପରେ ପ୍ରକଟିତ ହୋଇଛି । ଅବଶ୍ୟ ଧର୍ମପ୍ରତି ଅନୁରକ୍ତଥିବା କାରଣରୁ ସିଏ ତାଙ୍କର ଉଚ୍ଚପଦବୀ ତ୍ୟାଗ କରି ପୁରୀରେ ଧର୍ମ ଓ ରଚନା କାର୍ଯ୍ୟରେ ଲିପ୍ତ ରହିଲେ ।

ସେମିତି ଆଉ ଜଣେ ଅଭିଜ୍ଞ ପ୍ରଶାସକ ଥିଲେ ଓଡ଼ିଶାର ଦକ୍ଷିଣ ସୀମାରେ, ତିରୁମଲା ରାଉତରାୟ । ପ୍ରସିଦ୍ଧ କଳିଙ୍ଗ ଦଣ୍ଡପାଟ ଓଡ଼ିଶାର ଯୁବରାଜ ବୀରଭଦ୍ରଙ୍କ ମାର୍ଫତରେ ଥିଲା । ଯୁବରାଜଙ୍କ ପଦବୀ ହେଉଛି ପରବିଶା (ଗଭର୍ଣ୍ଣର) ଏବଂ ତାଙ୍କର ଉପାଧି ଥିଲା ପରମବର୍ତ୍ତକ ଦ୍ରାବିଡମଣ୍ଡଳେଶ୍ୱର ନବକୋଟି କର୍ଣ୍ଣାଟକଳବର୍ଗେଶ୍ୱର ।

ଏହିପରି ଗଜପତି ଶାସନାଧୀନ ଅଖଣ୍ଡାଞ୍ଚଳରେ କିଏ ଦୁଃସାହସ କରିବ ଗଜପତିଙ୍କର ପାଦ ପାଦର ହିସାବ ରଖି ଓଡ଼ିଶା ସମ୍ରାଜ୍ୟର ଗୁମର ଭେଦ କରିବାକୁ ? ଅବଶ୍ୟ ସମୟ ଥିଲା ଗଜପତି ପ୍ରତାପରୁଦ୍ରଙ୍କ ପିତା ଗଜପତି ପୁରୁଷୋତ୍ତମ ଦେବଙ୍କ ସିଂହାସନ ଲାଭ ସମୟରେ । ନିଶ୍ଚୟ ଓଡ଼ିଶା ପାଇଁ ଅସମୟ ଥିଲା । କପିଳେନ୍ଦ୍ରଦେବ ନିଜର ସକଳ ମର୍ଯ୍ୟାଦାର ସହିତ ଓଡ଼ିଶା ରାଷ୍ଟ୍ରର ସୀମା, ଶାସନ, ଭାଷା, ଆର୍ଥିକ ମାନଦଣ୍ଡ ବୃଦ୍ଧି କରିସାରି ଜୀବନର ଶେଷ ସମୟରେ ନିଷ୍ପତ୍ତି ନେଲେ ସାନପୁଅ ରାଜଗାଦି ପାଇବ । ବଡ଼ପୁଅ ହାମଭିରା ବେଶ ଶକ୍ତିଶାଳୀ ଓ ନିଜ ଦର୍ପର ପରିଚୟ ଦେଇଛନ୍ତି ଓଡ଼ିଶାର ଦାକ୍ଷିଣାତ୍ୟ ବିଜୟରେ । କପିଳେନ୍ଦ୍ରଙ୍କ ଦକ୍ଷିଣ ଦିଗରେ ସୈନ୍ୟଚାଳନା ସମୟରେ ବି ବଙ୍ଗଳା ନବାବ ସୁଯୋଗ ଉଣ୍ଡି ଓଡ଼ିଶାର ସୀମା ମଧ୍ୟକୁ ପଶି ଆସୁଥିଲେ । ହାମଭିରାଙ୍କୁ ଆକ୍ରମଣ ଭାର ଦେଇ ଗଜପତି କପିଳେନ୍ଦ୍ର ଫେରି ଆସିଥିଲେ ଯବାନ ଆକ୍ରମଣର ମୁକାବିଲା କରିବାକୁ । ହାମଭିରା ନିଜ ବୀରତ୍ୱର ପରିଚୟ ଦେଇ କୋଣ୍ଡାଭିଡ୍ଡୁ ସହିତ ଏକାଧିକ ବିଜୟ ଲାଭ କରିପାରିଥିଲେ । ସେଇ ରାଜପୁତ୍ର ଯେତେବେଳେ ରାଜଗାଦି ପାଇବାରୁ ବିଚ୍ୟୁତ ହେଲେ, ଓଡ଼ିଶା ପାଇଁ ବିପତ୍ତି ଆସିଲା । ଭାଇ ଭାଇ ତ ଅନ୍ତର୍ବିବାଦରେ ବ୍ୟସ୍ତ ରହିଲେ, ତୃତୀୟ ବ୍ୟକ୍ତି ଭାବରେ ବାହାମନିର ନବାବ ମହମ୍ମଦ ସାହା ହାମଭିରାଙ୍କ ନିମନ୍ତ୍ରଣରେ ଓଡ଼ିଶାର କେତେକାଂଶ ବିଚ୍ଛିନ୍ନ କରି ଦେଇଥିଲେ । ବାପା କପିଳେନ୍ଦ୍ରଦେବଙ୍କ ତଦାନୀନ୍ତନ ଗଠିତ ଗଜ, ଅଶ୍ୱ ଓ ପଦାତିକ ବାହିନୀ ଏପରି ବଳଶାଳୀ ଥିଲେ, ପୁରୁଷୋତ୍ତମ ଦକ୍ଷିଣକୁ ସୈନ୍ୟ ଚଳାଇନେଇ ବିଦ୍ରୋହ କୁହୁଳି ଉଠୁଥିବା ରାଜମହେନ୍ଦ୍ରୀ ଓ କୋଣ୍ଡାଭିଡ୍ଡୁ ଅଞ୍ଚଳରେ ନିଜର ଅଖଣ୍ଡତା ପ୍ରତିପାଦିତ କରିଥିଲେ । ତା' ପରେ ଗୃହବିବାଦର ଅବସାନ ଘଟିଥିଲା ।

କିନ୍ତୁ ଓଡ଼ିଶାର ସାମନ୍ତରାଜାମାନଙ୍କର ସାମର୍ଥ୍ୟ ଓ ସାମରିକ ବଳ ଅନୁସାରେ କିଏ କିଏ ବିଦ୍ରୋହଭାବ ପ୍ରକଟିତ କରିଛନ୍ତି । କେହି କେହି ବି ବିଚ୍ଛିନ୍ନତା ମନୋଭାବ ପ୍ରକଟ କରିଛନ୍ତି । ଭାନୁଦେବଙ୍କ ଅନୁପସ୍ଥିତିରେ ଯୁଦ୍ଧ ସମ୍ଭାଳି କପିଳେନ୍ଦ୍ର ଯେଉଁଭଳି ଶାସନଗାଦି ଅକ୍ତିଆର କରି ନେଇଥିଲେ, ଅନେକ ସାମନ୍ତ ସେଥିରେ ଈର୍ଷାପରାୟଣ ହୋଇ ପଡ଼ିଛନ୍ତି । ଓଡ଼ିଶାର କ୍ରମବର୍ଦ୍ଧିଷ୍ଣୁ ଏହି ସାମନ୍ତ ପରାଭବ ଯେ ଦିନେ ବଡ଼ବାଗ୍ନି ହେବ, ଏହା କେହି କଳନା କରିପାରି ନ ଥିଲେ । ଓଡ଼ିଶାର ସ୍ଥିର ସାମରିକ ଶକ୍ତି, ଧର୍ମଭିତ୍ତିକ ଶାସନ ଓ ଗଜପତି ସମ୍ମାନ ଅକ୍ଷୁଣ୍ଣ ହୋଇ ରହିଛି, କିନ୍ତୁ ସାମନ୍ତମାନେ ସ୍ୱପ୍ନ ବିଭୋର ବେଳକାଳ ଦେଖି ଗଜପତି ହେବାର ନିଶାରେ । ଏପରି ନିଶା ଛଡ଼ାଇଛନ୍ତି କପିଳେନ୍ଦ୍ର, ନିଜେ ଶାସନ ପ୍ରାରମ୍ଭରୁ ଖେମୁଡ଼ି ସମସ୍ୟା ସମାଧାନ କରିଛନ୍ତି । ନିଜର ଅନ୍ତରଙ୍ଗ ଗୋପୀନାଥ ପ୍ରହରାଜଙ୍କୁ ମୁଖ୍ୟ ସେନାଧ୍ୟକ୍ଷ କରି ଜୀବନକାଳର ବହୁ ସାମରିକ କୃତିତ୍ୱ ହାସଲ କରି ପାରିଛନ୍ତି । କିନ୍ତୁ ଓଡ଼ିଶାରେ ସାମନ୍ତରାଜାମାନେ ସବୁବେଳେ ଗଜପତି ହେବା ପାଇଁ ଲାଳାୟିତ ।

ଗଜପତି କପିଳେନ୍ଦ୍ରଙ୍କ ଦୁଇ ପୁରୁଷ ତଳକୁ ଓଡ଼ିଶାର ସାମରିକ ଶକ୍ତିର ଏତେଟା ଅବକ୍ଷୟ ଘଟି ନାହିଁ । ଓଡ଼ିଶାର ଗଜବାହିନୀ ଯେଉଁ ଆଡ଼କୁ ମୁହଁ କରିବେ, କିଛି ପ୍ରତିରୋଧ ନାହିଁ । କିନ୍ତୁ ନିଜ ବିଶାଳ ସୀମାର ପାର୍ଶ୍ୱରେ ଥିବା ଖଣ୍ଡ ଖଣ୍ଡ ରାଜ୍ୟମାନେ ବହୁ ସମୟରେ ସାମରିକ ଶକ୍ତିର ପରିଚୟ ଚାହୁଁଥିଲେ । ଏମିତି ଗଜପତି ଉତ୍ତର ଦକ୍ଷିଣ ହୋଇ ନିଜର ସମୟ ଅତିବାହିତ ହୋଇ ଯାଉଥିଲା । ବିଶାଳ ଓଡ଼ିଶାର ଗଜପତି ଗଙ୍ଗ ଅମଳ ପରି ଚିନ୍ତା କରିବାକୁ ସମୟ ପାଇ ନାହାନ୍ତି ନୂତନ ଶିଳାଶିଳ୍ପ ଗଢ଼ି ତୋଳିବାକୁ । ଯାହା ପୁରୁଣା କୀର୍ତ୍ତିରାଜିର ସଂରକ୍ଷଣ ଓ କିଛି ଅଂଶ ଯୋଗ କରିବାରେ ସେମାନଙ୍କର ଉଦ୍ୟମ ସୀମିତ ହୋଇଛି ।

ଏମିତି ପରିସ୍ଥିତିରେ କେହି ସାମନ୍ତରାଜା କାହିଁକି ଯେ ଗଜପତିଙ୍କୁ ଗୁପ୍ତଚର ଦ୍ୱାରା ଅନୁସରଣ କରିବେ, ତା'ର

ଯଥାର୍ଥତା ପ୍ରତିପାଦିତ ହେଉନାହିଁ । ତା' ଛଡା ଓଡିଶାର ସାମନ୍ତରାଜାଙ୍କ ପାଖରେ କିଛି ଅଛପା ନାହିଁ ଯେ ସେମାନେ ଅଧିକ ଜାଣିବାକୁ ଦୂତ ପେଷିବେ ।

ହେଲେ ଢୋଲ ଭିତରେ ମୂଷା ରହିପାରେ । ସେମିତି ହେଲେ ସିଏ ତ ଗୁପ୍ତଚରର ଗୁପ୍ତଚର ବୋଲି କୁହାଯିବ । ଗଜପତିଙ୍କ ମୁଖ୍ୟମନ୍ତ୍ରୀ ଗୋବିନ୍ଦ ବିଦ୍ୟାଧର ଯେଉଁଭଳି ଆଭିମୁଖ୍ୟ ନେଉଛି, ସିଏ ସବୁବେଳେ ସନ୍ଦେହର ପାତ୍ର । ଦିନେ ଯେ ସିଏ ଗଜପତିଙ୍କର କଣ୍ଟକ ସାଜିବେ ଜଳଜଳ ହୋଇ ଦେଖାଗଲାଣି । କିନ୍ତୁ ମାଲୁମ ପଡୁନି ଏ ଗୁପ୍ତଚର ତାଙ୍କର କି ସହାୟକ ହେବେ ? ସିଏ ତ ନିଜେ ଗଜପତିଙ୍କର ସବୁ ଗୁପ୍ତତଥ୍ୟ ଦାୟିତ୍ୱରେ ।

ଗୁପ୍ତଚରମାନେ ବହୁତ ତଥ୍ୟ ସଂଗ୍ରହ କରୁଛନ୍ତି ଗଜପତି ପ୍ରତାପରୁଦ୍ରଙ୍କ ବିଷୟରେ । ସେମାନେ ଦେଖିଶୁଣି ଉଲ୍ଲିଖିତ କରିଛନ୍ତି କି ଓଡିଶାର ଗଜପତି ପ୍ରତାପରୁଦ୍ର ପ୍ରତ୍ୟହ ସୂର୍ଯ୍ୟୋଦୟର ଦୁଇଘଣ୍ଟା ପୂର୍ବରୁ ଶଯ୍ୟା ତ୍ୟାଗ କରନ୍ତି । କାହା ମୁହଁ ନ ଚାହିଁ ଦୁଇଜଣ ବ୍ରାହ୍ମଣଙ୍କୁ ପ୍ରଣିପାତ କରନ୍ତି । ତା' ପରେ ଷୋହଳ ପାତ୍ର ମନ୍ତ୍ରୀଙ୍କ ସହିତ ଦଶ ପନ୍ଦର କୋଶ ଅଶ୍ୱାରୋହଣ କରି ଫେରନ୍ତି । ସ୍ନାନ ସାରି ଶ୍ରୀମନ୍ଦିରରେ ଦୁଇଘଣ୍ଟା ପୂଜାର୍ଚ୍ଚନା କରନ୍ତି । ନିଜର ମଧ୍ୟାହ୍ନ ଭୋଜନ ପରେ ନିଜେ କିଛି ସମୟ ରାମାୟଣ ପଢନ୍ତି । ତା' ପରେ ନିଜର ରତ୍ନଖଚିତ ରାଜ ପୋଷାକ ପରିହିତ ହୋଇ ଦୈନନ୍ଦିନ ରାଜକାର୍ଯ୍ୟ ନିର୍ବାହ କରନ୍ତି । ତା' ସହିତ ଓଡିଶାର ବିସ୍ତୃତ ସାମରିକ ଓ ଆର୍ଥିକ ପରିସ୍ଥିତି ଓ ପରିଚାଳନା ।

ଏଇ ଗୁପ୍ତଚର ବାର୍ତ୍ତା ପାଆନ୍ତି ନବ ପ୍ରତିଷ୍ଠିତ ବିଜୟନଗର ରାଜା କୃଷ୍ଣଦେବ ରାୟ । କେତେଜଣ ଗୁପ୍ତଚର ନ୍ୟସ୍ତ କରିଛନ୍ତି ଗଜପତିଙ୍କ ଆଢୁଆଳରେ । ଗଜପତି ନିଜେ ଜାଣନ୍ତିନି । ଜାଣିଲେ ବି ଧର୍ମପ୍ରାଣ ତାଙ୍କର ସମ୍ମାନ ରହିଛି ନିଜର ମାମୁଁଘର ରାଜ୍ୟ ବିଜୟନଗର ପ୍ରତି । ଯେତେ ବ୍ୟକ୍ତିଗତ ସମ୍ପର୍କ ଗଢି ଉଠିଲେ, ରାଜାମାନେ ରାଜ୍ୟ ଆକ୍ରମଣ ବା ଜୟ କଲା ବେଳକୁ ମୁହଁକୁ ଅନାନ୍ତି ନାହିଁ ପ୍ରତିଦ୍ୱନ୍ଦ୍ୱୀର । ଏମିତି ସମ୍ବନ୍ଧ ଗଢି ଉଠିଛି ଓଡିଶା ଓ ବିଜୟନଗର ମଧ୍ୟରେ । ସୀମା ବିବାଦ, ବଳ କଷାକଷି ଓ ଧାର୍ମିକ ପ୍ରତିଦ୍ୱନ୍ଦ୍ୱିତା ମୁଣ୍ଡ ଟେକିଛି ବିଗତ ପୁରୁଷେ କାଳ ଧରି । ନିଜ ସାମରିକ ଶକ୍ତି ସହିତ ସମ୍ପତ୍ତିରେ ଗଜପତିଙ୍କ ସମ୍ରାଜ୍ୟର ପ୍ରତିଷ୍ଠା ବେଶ୍ ପୁରୁଣା । ଲୋକ କୁହନ୍ତି ବିଶ୍ୱର ବିଭିନ୍ନ ସ୍ଥାନରୁ ବ୍ୟବସାୟ ଉଦ୍ଦେଶ୍ୟରେ ପାଦ ଦେଉଥିବା ପ୍ରତି ଦଶଜଣ ବ୍ୟକ୍ତିଙ୍କ ମଧ୍ୟରୁ ନଅଜଣ ମନସ୍ଥ କରିଥାଆନ୍ତି ଏଠାରେ ଚିରକାଳ ପାଇଁ ରହିଯିବା ପାଇଁ । ଧନଧାନ୍ୟରେ ଓଡିଶାକୁ ପରିପୂର୍ଣ୍ଣ କରିଯାଇଛନ୍ତି କପିଳେନ୍ଦ୍ର ଦେବ । ଓଡିଶାରାଷ୍ଟ୍ରର ଜନକ ଭାବରେ ସିଏ 'ପାଗୋଡା' ନାମକ ସ୍ୱର୍ଣ୍ଣମୁଦ୍ରା ପ୍ରଚଳନ କରିଥିଲେ । ଆଉ ଧର୍ମ କ୍ଷେତ୍ରରେ ଓଡିଶା ଯୁଗେ ଯୁଗେ ଅନନ୍ୟ ସମ୍ମାନର ଅଧିକାରୀ ।

ପୁଣି ତଦାନୀନ୍ତନ ଭାରତ ଖଣ୍ଡଖଣ୍ଡ ହୋଇ ଯବନ ଶାସିତ ହେଉଥିବା ବେଳେ ଭାରତବର୍ଷର ସର୍ବବୃହତ୍ ହିନ୍ଦୁରାଜ୍ୟ ଥିଲା ଓଡିଶା ରାଷ୍ଟ୍ର । ଭକ୍ତିର ଭାବଧାରା ପ୍ରବାହିତ ହେବା ବେଳେ ବିଦେଶୀ ଶାସନ ନିଶ୍ଚିତ ଭାବରେ ବୈଷ୍ଣବ ଭାବଧାରାର ପ୍ରତିକୂଳ ହେଉଥିବାର ଯଥେଷ୍ଟ ଉଦାହରଣ ଦେଖାଯାଏ । ଏମିତି କି ହିନ୍ଦୁଧର୍ମର ଉପାସନା କ୍ଷେତ୍ର ବାରାଣସୀରେ ବି ଏମିତି ଧର୍ମ ସଂକଟ ଦେଖାଯାଇଛି । ଧର୍ମ କ୍ଷେତ୍ରରୁ ଯବନ ଆକ୍ରମଣ ଭୟରେ ଧାର୍ମିକ ଦମ୍ପତି ପଳାୟନ କଲାବେଳେ ରାସ୍ତାରେ ବଲ୍ଲଭାଚାର୍ଯ୍ୟ ଜନ୍ମ ହୋଇଛନ୍ତି ପଞ୍ଚଦଶ ଶତାବ୍ଦୀରେ । ମାତ୍ର ଓଡିଶା ବହୁ ବର୍ଷ ଧରି ହିନ୍ଦୁ ହିନ୍ଦୁ ସମ୍ରାଜ୍ୟ ଭାବରେ ତିଷ୍ଠି ରହିପାରିଛି, ଏଠାକୁ ପୁରୁଷୋତ୍ତମଙ୍କ ଚୁମ୍ବକୀୟ ଶକ୍ତି ଟାଣି ଆଣିଛି ସବୁ ଭକ୍ତ, ଦାର୍ଶନିକ, ତାତ୍ତ୍ୱିକ ଆଉ ସାଧକମାନଙ୍କୁ । ଭକ୍ତିଯୁଗର ଆବିର୍ଭାବ ଉତ୍କଳରେ ଲହରାଇଛି ଅଗଣିତ ଭକ୍ତମାନଙ୍କର ପୁରୁଷୋତ୍ତମ ପୁରୀକୁ ପହଣ୍ଡି । ଦଶମ ଶତାବ୍ଦୀରେ ଯଯାତି କେଶରୀ ଅବା ଜନ୍ମେଜୟ ମହାଭାବଗୁପ୍ତ ଶାସନକାଳରେ ଆଦି ଶଙ୍କରାଚାର୍ଯ୍ୟ ପାଦ ଦେଇଥିଲେ ଉତ୍କଳ ଭୂଖଣ୍ଡରେ । ଶେଷ ବୌଦ୍ଧ ଶ୍ରମଣମାନେ ତାଙ୍କ ଅଦ୍ୱୈତ ମତବାଦର ପ୍ରଚଣ୍ଡ ଯୁକ୍ତିରେ ପରାସ୍ତ ହୋଇ ଶୈବ ହୋଇଥିଲେ, ପୁରୀରେ ପୁରୁଷୋତ୍ତମଙ୍କ ଅବଲୋକନ କରି ବହୁ ଶୋକ ଓ ବିଧି ବ୍ୟବସ୍ଥା କରିଥିଲେ ବୈଷ୍ଣବ ଧର୍ମର ଆଦିପୀଠ ଭାବରେ । ଦ୍ୱାଦଶ ଶତାବ୍ଦୀ ଅନଙ୍ଗ ଭୀମଦେବଙ୍କ ଶାସନ କାଳରେ ରାମାନୁଜାଚାର୍ଯ୍ୟ ମଧ୍ୟ ନିଜର ବିଶିଷ୍ଟାଦ୍ୱୈତ ମତବାଦ ନେଇ ଉତ୍କଳଭୂଇଁରେ ପାଦ ଦେଇଥିଲେ ପୁରୁଷୋତ୍ତମଙ୍କୁ ଭକ୍ତିଧାରାରେ ବୈଷ୍ଣବ ବୋଲି ସିଦ୍ଧ କରିବାକୁ ।

ପୁରୁଷୋତ୍ତମ କ୍ଷେତ୍ରରେ ଆଲୋକ ବିଚ୍ଛୁରିତ ହୋଇ ଇନ୍ଦ୍ରଧନୁର ସପ୍ତରଙ୍ଗର ସମାହାର ପରି ମଣିଷର ସକଳ ଧର୍ମର ସମାରୋହରେ ଜଗନ୍ନାଥ ଦର୍ଶନ ପରି ନୂତନ ଯୁଗାନ୍ତ ବିବର୍ତ୍ତିତ

ହେବାରେ ଲାଗିଥିଲା । ସତେକି ଉତ୍କଳରେ ବୌଦ୍ଧକୀର୍ତ୍ତି ଅପସରି ଶୈବଧାରାରେ ନବରୂପ ଧାରଣ କରୁଥିଲେ, ତନ୍ତ୍ରର ଅନ୍ଧକାରରୁ ଅଧିକ ସାମାଜିକ, ମାନସିକ ଓ ତାତ୍ତ୍ୱିକ ବୈଷ୍ଣବୀୟ ଦିଗରେ ଅଗ୍ରସର ହେଉଥିଲେ । କିନ୍ତୁ ଉତ୍କଳରେ ଶୈବ ଓ ବୈଷ୍ଣବ ଭକ୍ତିଭାବର ଅପୂର୍ବ ସମନ୍ୱୟ ସୃଷ୍ଟି ହେବାରେ ଲାଗିଥିଲା । ଏ ସବୁର ରହସ୍ୟ ହିଁ ପୁରୁଷୋତ୍ତମ କ୍ଷେତ୍ରର ମହାତ୍ମ୍ୟ ।

ଆଦିମ କାଳରୁ ଭକ୍ତିଯୁଗର ଅୟମାରମ୍ଭରୁ ଜଗନ୍ନାଥ ଯେତିକି ବିଖ୍ୟାତ, ଗଜପତି ପୁରୁଷୋତ୍ତମ କ୍ଷେତ୍ରର ଅଭିଭାବକ ଓ ତତ୍ତ୍ୱାବଧାରକ ଓ ପରିଚାଳକ ଭାବରେ ଚଳନ୍ତି ଜଗନ୍ନାଥଙ୍କର ଖ୍ୟାତି ପାଇଥାନ୍ତି ସାରା ବିଶ୍ୱରେ । ଏମିତି କି ପୁରୀ କାହିଁକି, ଓଡିଶାର ଯେକୌଣସି ବ୍ୟକ୍ତି ବିଦେଶ ଗଲେ, ସମସ୍ତେ ତାଙ୍କୁ ଜଗନ୍ନାଥଙ୍କ ପ୍ରତିନିଧି ଭାବରେ ସ୍ଥାନ ଦେଇ ପୁରୁଷୋତ୍ତମଙ୍କୁ ମର୍ଯ୍ୟାଦା ଦିଅନ୍ତି । ଏହିଭଳି ସମ୍ମାନ ଭକ୍ତିଯୁଗର ଆରମ୍ଭରୁ ରହିଛି । ଏହି ଅହେତୁକ ଭକ୍ତିଭାବର ଉତ୍ତର ଅନେକ ସମୟରେ ରାଜନୀତି କ୍ଷେତ୍ରକୁ ରୂପାନ୍ତରିତ ହେବାର ଦୃଷ୍ଟାନ୍ତ ରହିଛି । ରାଜନୈତିକ ଗୁରୁତ୍ୱ ପାଇଁ ପୁରୁଷୋତ୍ତମଙ୍କୁ ସର୍ବଧର୍ମ ସମନ୍ୱିତ କରିବାର ଅନ୍ତର୍ନିହିତ ଧାରଣା ଅନେକଙ୍କର ରହିଛି । ଏମିତି କି ଧର୍ମଗତ କାରଣରୁ ଗଜପତିଙ୍କ ଶାସନାଧୀନ ହୋଇ ରହିବା ପାଇଁ କେତେ ରାଜ୍ୟବାସୀଙ୍କ ଅଭୀପ୍ସା ଥିବାର ଅନୁମାନ କରାଯାଏ । ତା' ନହେଲେ, ବିଭିନ୍ନ ଭାଷାଭାଷୀ ଅଞ୍ଚଳଗୁଡିକ ଓଡିଶା ରାଷ୍ଟ୍ରର ଗୋଟିଏ ଛତ୍ର ଅଧୀନରେ ରହିପାରନ୍ତେ କିପରି ? ଏ ସବୁଥିରେ ଏକମାତ୍ର ଏକକ ହେଉଛି ପୁରୁଷୋତ୍ତମ ଜଗନ୍ନାଥ ।

ତେବେ କଥା ଉଠୁଛି, ଏଭଳି ଧାର୍ମିକ ବାତାବରଣରେ ଗଜପତିଙ୍କ ଅଗୋଚରରେ ଗୁପ୍ତଚର ଖଞ୍ଜିବାକୁ ଦ୍ୱିଧା ଆସିଲାନି କିପରି ବିଜୟନଗରର ନୂଆ କରି ସିଂହାସନ ଲାଭକରିଥିବା କୃଷ୍ଣଦେବ ରାୟଙ୍କର ? ନିଜକୁ କମ୍ ଧାର୍ମିକ ମନେ କରନ୍ତିନି କୃଷ୍ଣଦେବ । ବଲ୍ଲଭାଚାର୍ଯ୍ୟଙ୍କ ଶିଷ୍ୟ ବଦରାଜତୀର୍ଥଙ୍କଠାରୁ ଧାର୍ମିକ ତତ୍ତ୍ୱ ଗ୍ରହଣ କରନ୍ତି । ବୈଷ୍ଣବ ଓ ଶୁଦ୍ଧାଦିତ୍ୟ ଦର୍ଶନର ଦିଗ୍‌ଦର୍ଶୀ । ବିଜୟନଗର ଅତୀତରେ ତତ୍ତ୍ୱ ଓ ଦର୍ଶନରେ ଦେଶରେ ଦୃଷ୍ଟାନ୍ତ ସୃଷ୍ଟି କରିପାରିଛି । ବିଗତ ତିରିଶ ବର୍ଷ ପୂର୍ବରୁ ଏଠାରେ ଆଦି ଶଙ୍କରଙ୍କ ଅଦ୍ୱୈତବାଦ ଉପରେ ବିତର୍କ ସଭାର ଆୟୋଜନ କରାହୋଇଛି, ଖୁବ୍ କମ୍ ବୟସର ବଲ୍ଲଭ ସବୁ ପଣ୍ଡିତଙ୍କୁ ବଳି ଯାଇ ହୋଇଛନ୍ତି ବଲ୍ଲଭାଚାର୍ଯ୍ୟ, ବିଶାଳ ପୁରସ୍କାର ଲାଭକରି ଦୁଃସ୍ଥ ଲୋକମାନଙ୍କ ମଧ୍ୟରେ ବାଣ୍ଟି ଦେଇଛନ୍ତି ।

କୃଷ୍ଣଦେବ ରାୟ, ଜନ୍ମଦିନ ତାଙ୍କର ଶ୍ରୀକୃଷ୍ଣ ଜନ୍ମ ତିଥିରେ, ପୁଣି ସିଂହାସନରେ ଉପବିଷ୍ଟ ସେଇ ତିଥିରେ । ନିଜକୁ ଧାର୍ମିକ ଓ ସ୍ୱୟଂ କୃଷ୍ଣ ବୋଲି ନ ଭାବିବେ ବା କାହିଁକି ? ଆଚାର୍ଯ୍ୟମାନଙ୍କ ଗହଣରେ ଓ ସ୍ତୁତିଗାନରେ ବିହ୍ୱଳିତ ହୋଇ ସିଏ କିପରି ନିଜକୁ ମଣିଷ ଓ ସାଧାରଣ ରାଜା ବୋଲି ମାନିବେ ?

ପୁଣି ଶୁଣିଥିବେ ଅଳ୍ପ କେଇ ବର୍ଷ ତଳର ଇତିହାସ, ଓଡିଶାର କାଞ୍ଚିକାବେରୀ ଅଭିଯାନ, ଜଗନ୍ନାଥଙ୍କ ଯୁଦ୍ଧରେ ଯୋଗଦାନ ଓ ରତ୍ନବେଦୀପ୍ରାପ୍ତି । ଏସବୁ କଅଣ ପୁନଶ୍ଚ ସେଇ ଶାଲ୍ୱ ନରସିଂହଙ୍କ ପରି ଜଗନ୍ନାଥଙ୍କ ଅବମାନନା ? ଶାଲ୍ୱ ସିନା ପୁରୁଷୋତ୍ତମଙ୍କୁ ଜାମାତା କରିବାକୁ ଜଗନ୍ନାଥଙ୍କ ଚଣ୍ଡାଳ ବୋଲି ଧାରଣା କରିଥିଲେ, ସେଇ ଶାଲ୍ୱଙ୍କୁ ଯୁଦ୍ଧରେ ଜୀଅନ୍ତା ଧରିଥିଲେ ଗଜପତି ପୁରୁଷୋତ୍ତମ, ପରିଶେଷରେ ତାଙ୍କର କନ୍ୟା ରୂପାମ୍ବିକା ହେଲେ ଓଡିଶାର ରାଣୀ, ତାଙ୍କରି ସୁପୁତ୍ର ଗଜପତି ପ୍ରତାପରୁଦ୍ର । ସେହି ପ୍ରତାପରୁଦ୍ର କୃଷ୍ଣଦେବଙ୍କର ଯୁଗଟିଏ ପୂର୍ବରୁ ଓଡିଶା ରାଷ୍ଟ୍ରର ସିଂହାସନ ଲାଭ କରିଛନ୍ତି, ବିଚକ୍ଷଣ କୃଷ୍ଣଦେବ ପୂର୍ବାପର ସମ୍ପର୍କ ଉହ୍ୟ ରଖି ଗଜପତିଙ୍କ ସମ୍ରାଜ୍ୟରେ କୁଠାରାଘାତ କରିବାର ପରିକଳ୍ପନା କରିଛନ୍ତି । ବଳ କଳନା କରୁଛନ୍ତି ଗଜପତି ପ୍ରତାପରୁଦ୍ରଙ୍କର । ତା' ସହିତ ଗଜପତିଙ୍କର ମତିଗତି, ସ୍ୱଭାବ ଓ ଧର୍ମ ଆନୁଗତ୍ୟ ସକଳ ବିଷୟରେ ।

ଗଜପତିଙ୍କ ବିଶାଳ ସାମରିକ ଶକ୍ତିର ସମ୍ମୁଖୀନ ହେବାକୁ କୃଷ୍ଣଦେବ ରାୟ ନିଜକୁ ଅସମର୍ଥ ମଣୁ ନାହାନ୍ତି, ପ୍ରତିଟି ଯୁଦ୍ଧରେ ସିଏ ନିଜେ ପୁରୋଭାଗରେ ରହି ପରିଚାଳନା କରନ୍ତି । ଏମିତି ସବୁ ପଡୋଶୀ ଯବନ ରାଜ୍ୟ କରଗତ କରିସାରିଲେଣି । ପୁଣି ନୂତନ ଆଗନ୍ତୁକ ପର୍ତ୍ତୁଗୀଜମାନଙ୍କୁ ସହାୟ ହୋଇଛନ୍ତି ଗୋଆରେ ବସତି ସ୍ଥାପନ କରିବାକୁ । ନିବିଡ ସମ୍ପର୍କ ଗଢି ତୋଳିଛନ୍ତି, ତାଙ୍କର ବ୍ୟକ୍ତିଗତ ଲକ୍ଷ୍ୟ କିଛି ଆରବୀୟ ଅଶ୍ୱ ଓ ବନ୍ଧୁକ ପ୍ରାପ୍ତି । ଏଗୁଡିକ ସେଇ ସମୟରେ କୌଣସି ଯୁଦ୍ଧ କ୍ଷେତ୍ରରେ ଅସାଧ ସାଧନ ପାଇଁ ପାଥେୟ ହୋଇପାରିବ ।

ଗୁପ୍ତଚରମାନଙ୍କର ସମସ୍ତ ତଥ୍ୟ ପର୍ଯ୍ୟାଲୋଚନା କରି ଗଜପତି ସାମ୍ରାଜ୍ୟକୁ ଶନୈଃ ଶନୈଃ ଆକ୍ରମଣ କରିବାର ମସୁଧା

କରିଛନ୍ତି । ନିଜ ସୀମା ଉଦୟଗିରିରୁ ଆରମ୍ଭ କରିଛନ୍ତି ଯୁଦ୍ଧ, ଓଡିଶାର ସୈନ୍ୟ ପଶ୍ଚାତ୍‌ଗମନ କରିଛନ୍ତି, ବିଜୟ ଉଲ୍ଲାସରେ କୃଷ୍ଣଦେବ ତିରୁପତି ଦର୍ଶନ କରିଛନ୍ତି, ନିଜ ରାଣୀଦ୍ୱୟଙ୍କର ମୂର୍ତ୍ତି ସ୍ଥାପନ କରିଛନ୍ତି ମନ୍ଦିରରେ । ଦ୍ୱିତୀୟ ଥର ଆକ୍ରମଣ କରିଛନ୍ତି ଓଡିଶାର ଦକ୍ଷିଣର ଶକ୍ତିଶାଳୀ କୋଣ୍ଡାଭିଡୁ ଦୁର୍ଗ, ଏଇଟା ସୁରକ୍ଷିତ ଏବଂ ଯୁବରାଜ ବୀରଭଦ୍ରଙ୍କ ଶାସନାଧୀନ । ଏଥର ସୈନ୍ୟବଳ ଦେଖି କୃଷ୍ଣଦେବ କଳନା କରିପାରୁ ନାହାନ୍ତି, କୋଣ୍ଡାଭିଡୁ ଉପରେ ବିଜୟ ସମ୍ଭବ ହେବ ବୋଲି । ବୀରଭଦ୍ରଙ୍କର କି ଚାଲ୍ ଥାଇପାରେ ରଣକୌଶଳରେ । କିନ୍ତୁ କୃଷ୍ଣଦେବଙ୍କ ଧୂର୍ତ୍ତ ପ୍ରଧାନ ମନ୍ତ୍ରୀ ସାଲୁଭା ତିମାରସୁ ସ୍ଥାନୀୟ ଭାଷାରେ ଗୁପ୍ତ ମନ୍ତ୍ର ଜାଣିବାରେ ସମର୍ଥ ହୋଇପାରିଛନ୍ତି, ଫଳସ୍ୱରୂପ ଧରାଶାୟୀ ହେଲା ଉତ୍କଳୀୟ ପ୍ରତିରକ୍ଷା, ବନ୍ଦୀ ହେଲେ ବହୁ ପଦାଧିକାରୀ, ଯୁବରାଜ ବୀରଭଦ୍ର ବନ୍ଦୀହୋଇ ବିଜୟନଗର କାରାଗାରରେ ରହିଲେ, ଏଇଟା କୃଷ୍ଣଦେବଙ୍କ ପଞ୍ଚମ ବର୍ଷ ଶାସନର ଘଟଣା ।

କୃଷ୍ଣଦେବ ରାୟଙ୍କର ଶକ୍ତି ସାମର୍ଥ୍ୟ ତୁଳନାରେ ଦଣ୍ଡନୀୟ ସ୍ୱଭାବ ବାରି ହୋଇପଡେ । ଯୁଦ୍ଧରେ ମୃତ୍ୟୁଯନ୍ତା ହୋଇ ଯେପରି ଅଗ୍ରଧାବନ କରନ୍ତି, ସାଧାରଣ ଦୋଷ ପାଇଁ ଅଙ୍ଗ ଛେଦନ, ଚକ୍ଷୁ ଉତ୍ପାଟନ ଓ ମୃତ୍ୟୁଦଣ୍ଡ ନୀତିହୀନତା ବୋଲି ଜନତା ମତ ଦିଏ । ସେଇ କାରଣରୁ ଓଡିଶା ରାଷ୍ଟ୍ରର ଯୁବରାଜ ବୀରଭଦ୍ର ବିଜୟନଗର କାରାଗାରରେ ବିଷ ପିଇ ଆତ୍ମହତ୍ୟା କରିଥିବାର ଶୁଣିବାକୁ ମିଳେ ।

ଅଜଗର ସାପ ପରି କୃଷ୍ଣଦେବ ଧୀରେ ଧୀରେ ଓଡିଶା ରାଷ୍ଟ୍ରକୁ ଗ୍ରାସ କରି ଚାଲିଥିଲେ । ତୃତୀୟ ପର୍ଯ୍ୟାୟରେ ବିଜୟୱାଡା ଦଖଲ କରି ଚତୁର୍ଥ ପର୍ଯ୍ୟାୟରେ ଓଡିଶାର ଭେଙ୍ଗି ଦଖଲ କରିନେଇଥିଲେ । ସୀମାଚଳମ୍‌ରେ ନରସିଂହ ସ୍ୱାମୀଙ୍କୁ ଦର୍ଶନ କରି ପୋଣ୍ଟୁନୁଠାରେ ନିଜର ବିଜୟ ସ୍ତମ୍ଭ ନିର୍ମାଣ କରିଥିଲେ ।

ପରିଶେଷରେ କୃଷ୍ଣଦେବ ରାୟ କଟକ ଆକ୍ରମଣ କରି କଟକରେ ନିଆଁ ଜଳାଇଛନ୍ତି । ବିଜୟ ପତାକା ଉଡାଇଛନ୍ତି । ଏହି ବିଜୟନଗର କର୍ତ୍ତୃକ ଓଡିଶା ଆକ୍ରମଣ ସ୍ତର ସ୍ତର ହୋଇ ପାଞ୍ଚ ସ୍ତରରେ ସଂଘଟିତ ହୋଇଛି । ଏହା ଗୋଟିଏ ରାତିରେ ବା ଗୋଟିଏ ମାସରେ ନ ହୋଇ ଘଟିଛି ଦୀର୍ଘ ୬ ବର୍ଷରେ । ଏଇଟା କୋଉ ପ୍ରକାରର ଶତ୍ରୁତା ? ବୀର ରାଷ୍ଟ୍ରର କି ପ୍ରକାର ଆତ୍ମରକ୍ଷା ? ଓଡିଶାରାଷ୍ଟ୍ର ନିର୍ବାକ୍ ହୋଇଯାଇଛି । ଏମିତି ଧୀର ଭାବରେ ଉଦରସ୍ଥ କରିଚାଲିଛି ବିଜୟନଗର । କ୍ଷୀଣ ପ୍ରତିରୋଧ । ନିର୍ବଳ ହୋଇ ପଡିଛି ଦେଶ ।

ଓଡିଶାର ସାମରିକ ଶକ୍ତି ଏବେ ଘଡିସନ୍ଧିରେ । ବିଗତ ୯ ବର୍ଷ ହେବ ମହାପ୍ରଭୁ ଶ୍ରୀଚୈତନ୍ୟଙ୍କ ଭକ୍ତିଭାବରେ ଉନ୍ମତ୍ତ ସଂକୀର୍ତ୍ତନ ଓ ଅଚିନ୍ତ୍ୟ ଭେଦାଭେଦର ଗୂଢ ଦର୍ଶନ ସହିତ ଶ୍ରୀଜଗନ୍ନାଥଙ୍କଠାରେ ମଜ୍ଜି ଯିବାର ସୁଦୃଶ୍ୟ ରାଜ୍ୟରେ ସମର୍ପଣ ଭାବର ଏକ ନିଶ୍ଚେତନା ସୃଷ୍ଟି କରି ଆତ୍ମରକ୍ଷା ଓ ପ୍ରତିରକ୍ଷାର ନୂତନ ସୂତ୍ର ବିସ୍ତାର କରିବା ଅବସ୍ଥାକୁ ଆସୁଛନ୍ତି । ଓଡିଶାର ପୁରପଲ୍ଲୀ ସଂକୀର୍ତ୍ତନରେ ମୁଖରିତ, ଭକ୍ତିଭାବରେ ପଂକ୍ତି ଭୋଜନରେ ଆପ୍ୟାୟିତ । ଅଳ୍ପରେ ସନ୍ତୁଷ୍ଟ । ଭବଲୀଳାରେ ମଜ୍ଜିତ । ଦାରିଦ୍ର୍ୟ ଭୂଷଣ ହୋଇଛି ଆଦର୍ଶ !

ଗଜପତିଙ୍କ ପ୍ରବଳ ପ୍ରତାପ କୌଣସି କାରଣରୁ କ୍ଷୁଣ୍ଣ ହୋଇଛି । କଷଟି ପଥରରେ ନିଜର ସାମରିକ ଶକ୍ତିର ବାରମ୍ବାର ପରୀକ୍ଷା କରିଚାଲିଛନ୍ତି । ସିଏ ବି ମହାପ୍ରଭୁ ଶ୍ରୀଚୈତନ୍ୟଙ୍କ ପାଖରେ ପୂର୍ଣ୍ଣ ସମର୍ପଣ ଅବସ୍ଥାରେ ଉପନୀତ ହୋଇଗଲେଣି । ଏପରି ସ୍ଥଳେ ରାଜ୍ୟ ଜୟ କରିଥିବା ବିଜୟନଗରର ବିଜେତା ରାଜାଙ୍କର କିପରି ସମ୍ମୁଖୀନ ହେବେ ?

ପରିଶେଷରେ କୃଷ୍ଣଦେବ ରାୟଙ୍କୁ ନିଜର ସୁନ୍ଦରୀ କନ୍ୟା ଜଗନମୋହିନୀଙ୍କୁ ଅର୍ପଣ କରି ସନ୍ଧିର ସୂତ୍ର ଲଦି ଦେଇଛନ୍ତି ଜାମାତାଙ୍କ ଉପରେ । ଏହି ଘଟଣା କେବଳ କାଞ୍ଚି–କାବେରୀ ନାଟକର ବିପରୀତ ଶୀର୍ଷ ହୋଇନି, ଏହା ଦୀର୍ଘଦିନର ଦୁର୍ବାର ଗଜବାହିନୀର ପତନମୁଖୀ ସଂଜ୍ଞା ଧରି ଆବିର୍ଭୂତ ହୋଇଛି ।

ଏମ୍.ଡି., ସମାରୋହ, ୧୨୮, ଡୁମୁଡୁମା (କ)
ଖଣ୍ଡଗିରି, ଭୁବନେଶ୍ୱର–୩୦

ପୂର୍ବତନ ଅଧ୍ୟାପିକା
ଲୋକ ପ୍ରଶାସନ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ

# ଭାଷା ରକ୍ଷା ହିଁ ଜାତୀୟତା ରକ୍ଷା

ଦେବପ୍ରସାଦ ମିଶ୍ର

ପୁଣ୍ୟଶ୍ଲୋକ ପଣ୍ଡିତ ଗୋପବନ୍ଧୁ ଦାସ ଉତ୍କଳର ଯେପରି ଶ୍ରେଷ୍ଠ ଜନସେବକ, ସେହିଭଳି ଜଣେ ଚିନ୍ତାସମ୍ପନ୍ନ ବ୍ୟକ୍ତି ହିସାବରେ ଆମ ନିକଟରେ ସୁପରିଚିତ। ତାଙ୍କର ଅମର ଲେଖନୀରୁ ନିଃସୃତ ବିଭିନ୍ନ ସମସ୍ୟା ସମ୍ପର୍କୀୟ ଆଲୋଚନା ଏବଂ ତହିଁର ଏକ ଗଠନମୂଳକ ସାମାଜିକ ମୂଲ୍ୟବୋଧ ଏ ଜାତିର ଉନ୍ନତି କଳ୍ପେ ଉଦ୍ଦିଷ୍ଟ। ଓଡ଼ିଆ ଜାତିର ଅନ୍ଧକାରମୟ ଦୁର୍ଦ୍ଦିନରେ ଏକ ବତିଘରର ଉଜ୍ଜ୍ୱଳ ରଶ୍ମିରେଖା ରୂପେ ଏହା ଅଦ୍ୟାପି ବିଦ୍ୟମାନ। ପ୍ରସ୍ତୁତ ପ୍ରବନ୍ଧରେ ଗୋପବନ୍ଧୁଙ୍କ ଦୃଷ୍ଟିରେ ଭାଷା ସମ୍ପର୍କରେ ସର୍ବଶ୍ରୀ ଚିନ୍ତାମଣି ଦାସ, ରବିନାରାୟଣ ଦାସ, ସର୍ବେଶ୍ୱର ଦାସ,ବିକ୍ରମ ଦାସ,ରାଧାନାଥ ରଥଙ୍କ ସହିତ ଆଲୋଚନା ଓ ମତାମତ ଏଠାରେ ଉଦ୍ଧାର କରାଯାଇଛି।

### ଭାଷାଦର୍ଶନର ପୃଷ୍ଠଭୂମି

ଭାବପ୍ରକାଶ ପାଇଁ ଭାଷା ମନୁଷ୍ୟର ଏକ ମାଧ୍ୟମ। ଏହା ଏକ ସହଜାତ ପ୍ରକୃତି ରୂପେ ମନୁଷ୍ୟ, ତା'ର ସମାଜ, ବହୁ ସାମାଜିକ ସମବାୟ ବା ଦେଶ ଏବଂ ସର୍ବୋପରି ସମସ୍ତ ସମବାୟର ସମାହାର ରୂପେ ବିଶ୍ୱର ସର୍ବତ୍ର ବିଦ୍ୟମାନ। ଏହି ନିୟମର ଆଞ୍ଚଳିକ ଭେଦରୁ ହିଁ ଭାଷାର ବିଭିନ୍ନତା ତା'ର ସୃଷ୍ଟି ଓ ସଂଘାତ ହିଁ ଭାଷାବୈଚିତ୍ର୍ୟର କାହାଣୀ ଅଟେ। ଗୋଟିଏ ଅଞ୍ଚଳରେ ବସବାସ କରି ଗୋଟିଏ ଭାଷା କହୁଥିବା ଲୋକମାନଙ୍କ ଜୀବନ ପ୍ରଣାଳୀରେ ସେ ଭାଷାର ପ୍ରଭାବ ଓତପ୍ରୋତଃ ଭାବରେ ଜଡ଼ିତ। ସେହି ଭାଷାର ସଂରକ୍ଷଣ, ତା'ର ସମୃଦ୍ଧି ତଥା ତା'ର ବିସ୍ତାର ପାଇଁ ସେମାନେ ଅବଗତ ହେବା ହିଁ ସ୍ୱାଭାବିକ। ଏଥିରେ କୌଣସି ବାଧା ଜନ୍ମିଲେ ତହିଁର ପ୍ରତିକାର ଓ ପ୍ରତିବିଧାନ ପାଇଁ ଉଦ୍ୟମ କରିବା ସେମାନଙ୍କ କର୍ତ୍ତବ୍ୟ। ପଣ୍ଡିତ ଗୋପବନ୍ଧୁଙ୍କ ଜନ୍ମର ଅବ୍ୟବହିତ ପୂର୍ବରୁ ଓଡ଼ିଆ ଭାଷା ପଡୋଶୀମାନଙ୍କ ହୀନ ଉଦ୍ୟମ ଫଳରେ ତଳିତଳାନ୍ତ ହେଲା ଭଳି ଅବସ୍ଥାକୁ ଆସିଯାଇଥିଲା। ତାଙ୍କ ବାଲ୍ୟ ତଥା କର୍ମମୟ ଜୀବନ କାଳରେ ଓଡ଼ିଆ ଭାଷା ଉପରେ ହୋଇଥିବା ବହୁ ଆକ୍ରମଣ ଓ ଅତ୍ୟାଚାର ସେ ଅଙ୍ଗେ ନିଭାଇଥିଲେ। ତା'ର ପ୍ରତିରୋଧ କରିବାକୁ ଏକ ଜାତୀୟ କର୍ତ୍ତବ୍ୟ ମନେକରି ସେ ସେଥିପାଇଁ ତାଙ୍କର ମୌଳିକ ଚିନ୍ତା ପ୍ରକାଶ କରିଥିଲେ। ଭାରତରେ ପ୍ରାୟ ଏକ ଶତାବ୍ଦୀ ଧରି ଇଂରେଜମାନଙ୍କଦ୍ୱାରା ଅନୁସନ୍ଧାନ କରାଯାଇ ଭାଷା ଅନୁସାରେ ଲିପିବଦ୍ଧ ରଚନା କରାଯାଇଥିବା ବିଭିନ୍ନ ଜନଗଣନା ରିପୋର୍ଟ ୧୯୦୧ ମସିହାରେ ସଙ୍କଳନ କରାଯାଇଥିଲା। ଗ୍ରିୟରସନ ସାହେବ ଏହି ଭାଷାମାନଙ୍କର ଶବ୍ଦକୋଷ, ବ୍ୟାକରଣ ପଦ୍ଧତି, ତା'ର ଉତ୍ପତ୍ତି ଏବଂ ସ୍ୱାତନ୍ତ୍ର୍ୟର ବିବରଣୀମାନ ସନ୍ନିବେଶିତ କରି ଏହି ରିପୋର୍ଟ ପ୍ରସ୍ତୁତ କରିଥିଲେ। ଏତଦ୍ ବ୍ୟତୀତ କେତେକ ଜର୍ମାନ ପଣ୍ଡିତ ଓ ଅନ୍ୟାନ୍ୟ ପାଶ୍ଚାତ୍ୟ ପଣ୍ଡିତ ମଧ୍ୟ ଭାରତୀୟ ଭାଷାମାନଙ୍କ ସମ୍ପର୍କରେ ହୃଦୟଙ୍ଗମ କରିଥିବା ତଥ୍ୟାବଳୀ ବିଭିନ୍ନ ଗବେଷଣାତ୍ମକ ପତ୍ରିକା ମାଧ୍ୟମରେ ପ୍ରକାଶ କରିଥିଲେ। ପଣ୍ଡିତ ଗୋପବନ୍ଧୁ ଏଗୁଡ଼ିକର ଅଧ୍ୟୟନ ତଥା ଅନୁସନ୍ଧାନ କରି ନିଜର ସ୍ୱକୀୟ ମତାମତ 'ସତ୍ୟବାଦୀ'ର ଆଲୋଚନା ସ୍ତମ୍ଭମାନଙ୍କରେ ପ୍ରଦାନ କରିଥିଲେ ଏବଂ ଏ ସମ୍ପର୍କରେ ଅଧିକ ଗବେଷଣା ପାଇଁ ପଣ୍ଡିତ ଲିଙ୍ଗରାଜ ମିଶ୍ର ଓ ପଣ୍ଡିତ ନୀଳକଣ୍ଠ ଦାଶଙ୍କୁ ନିୟୋଜିତ କରିଥିଲେ। ଏହାର ଫଳସ୍ୱରୂପ ପଣ୍ଡିତ ନୀଳକଣ୍ଠ ଓଡ଼ିଆ ଭାଷାର ଉତ୍ପତ୍ତି ଏବଂ ବ୍ୟାକରଣ ଆଦି ସମ୍ପର୍କରେ

ଅନୁଧ୍ୟାନ କରିଥିଲେ ଓ ପଣ୍ଡିତ ଲିଙ୍ଗରାଜ ମିଶ୍ର 'ସତ୍ୟବାଦୀ' ୫ମ ଖଣ୍ଡ ୧୦ମ ସଂଖ୍ୟାରେ ସଂସ୍କୃତ କେବେ ଭାରତର ପ୍ରଚଳିତ ଭାଷା ଥିଲା କି ପ୍ରବନ୍ଧରେ ସଂସ୍କୃତ ଭାଷାର ମୂଳ ଉତ୍ସ ଓ ପାଲି, ଦ୍ରାବିଡ଼ ଏବଂ ପ୍ରାକୃତ ଆଦି ଅନ୍ୟାନ୍ୟ ଭାରତୀୟ ଭାଷାମାନଙ୍କ ଉପରେ ବିସ୍ତୃତ ଆଲୋଚନା କରିଥିଲେ।

**ଭାରତୀୟ ଭାଷାର ମୌଳିକ ଧର୍ମ ଓ କ୍ରମ ଅନୁଶୀଳନ**

ଭାଷାର ଦୁଇଟି ବିଭାଗ ରହିଛି। ଗୋଟିଏ ହେଉଛି ଲିପି ଓ ଅନ୍ୟଟି ଧ୍ୱନି। ଧ୍ୱନିକୁ ଅନେକ ସମୟରେ ଉଚ୍ଚାରଣ କୁହାଯାଇଥାଏ। ଲିପି ଭାଷାର ବାହ୍ୟରୂପ ଓ ଧ୍ୱନି ଅନ୍ତର୍ନିହିତ ଶକ୍ତି। ଏହାର ପ୍ରକୃତି ଉପରେ ଭାଷାର ଗତି ନିର୍ଭର କରେ। ଯେଉଁ ଭାଷା ଯେତେ ପରିମାଣରେ ଧ୍ୱନିର ସାମଞ୍ଜସ୍ୟ ରକ୍ଷା କରେ, ତାହା ସେତେ ପରିମାଣରେ ମାର୍ଜିତ ତଥା ସଂସ୍କୃତ ବୋଲି ଧରାଯାଏ। ମାର୍ଜିତ ଭାଷାର ନିୟମ ହିଁ ବ୍ୟାକରଣ ରୂପେ ପ୍ରକାଶ ପାଏ ଭାରତୀୟ ଭୂଖଣ୍ଡରେ । ବେଦ, ଉପନିଷଦ୍, ପୁରାଣ, ଗୀତା, ଦର୍ଶନ, କାବ୍ୟ ଓ ନାଟକ ଆଦିରେ ପ୍ରୟୋଗ କରାଯାଇ ତା'ର ବିକାଶ ପଥକୁ ସୁଗମ କରିଅଛି। ତେଣୁ ଏହି ଭାଷାମାନଙ୍କ ସମ୍ପର୍କରେ ଗବେଷଣା ହେବା ହିଁ ସର୍ବାଦୌ ଆବଶ୍ୟକ ବୋଲି ମନେକରି ଇଂରେଜ ପଣ୍ଡିତ ତଥା ଶାସକମାନେ ଏ ଦିଗରେ ଉଦ୍ୟମ କରିଥିଲେ। ଭାରତରେ ପାଣିନୀ ଓ ବରରୁଚି ପ୍ରଥମେ ପ୍ରାକୃତ ଭାଷାମାନଙ୍କ ସମ୍ପର୍କରେ ଅଧ୍ୟୟନ କରି ସେ ବିଷୟରେ ବିଚାର ଆଲୋଚନା କରିଥିଲେ। ପାଣିନୀ ସଂସ୍କୃତ ଭାଷାର ବ୍ୟାକରଣ ରଚନା କରି ତାହାର ଗତି ଓ ପ୍ରକୃତିକୁ ନିର୍ଦ୍ଧାରଣ କରିଥିଲେ। ଏମାନଙ୍କ ବ୍ୟତୀତ ପାଲି ପ୍ରଭୃତି ଭାଷା ସମ୍ପର୍କରେ କାତ୍ୟାୟନ ଆଦି ବହୁ ଭାରତୀୟ ପଣ୍ଡିତ ମଧ୍ୟ ଆଲୋଚନା ଓ ଉଦ୍ୟମ କରିଥିଲେ। ମାତ୍ର ସେମାନଙ୍କ ଆଲୋଚନା ଅତୀତ କାଳର ଭାଷାମାନଙ୍କ ଉପରେ ସୀମିତ ଥିବାରୁ ଭାରତୀୟ ଭାଷା ସକଳର ପରବର୍ତ୍ତୀ ବିକାଶ ଉପରେ ଆଲୋଚନାର ଧାରା କ୍ଷୁଣ୍ଣ ହୋଇଥିବା କିମ୍ବା ଏପରି ଆଲୋଚନା ଓ ଆଲୋଚକମାନଙ୍କ ବିଷୟରେ କୌଣସି ଗ୍ରନ୍ଥ ଭାରତୀୟ ପଣ୍ଡିତମାନଙ୍କ ଦୃଷ୍ଟିର ଅନ୍ତରାଳରେ ଥିବାର ଗୋପବନ୍ଧୁ ମନେ କରୁଥିଲେ। ତେଣୁ ଭାରତୀୟ ଭାଷାମାନଙ୍କ ସମ୍ପର୍କରେ ଆଲୋଚନା ଭାରତୀୟମାନଙ୍କଦ୍ୱାରା କରିବା ପାଇଁ ମନସ୍ଥ କରି ପଣ୍ଡିତ ଗୋପବନ୍ଧୁ ଏ ଦିଗରେ ଉଦ୍ୟମ କରିଥିଲେ। କଲିକତାର ଏସିଆଟିକ୍ ସୋସାଇଟି, ବନାରସ ଓ କାଶୀର ସଂସ୍କୃତ ବିଦ୍ୟାପୀଠ ସମୂହ, ପୁନାର ଡ଼େକାନ୍ ଗବେଷଣା ସଂସ୍ଥା ଆଦି ପଣ୍ଡିତ ଗୋପବନ୍ଧୁ ଏ ଉଦ୍ୟମରେ ପ୍ରେରଣାର ଉତ୍ସ ଥିଲା ପରି ମନେହୁଏ। ଏଥିପାଇଁ ପଣ୍ଡିତ ଲିଙ୍ଗରାଜ ମିଶ୍ର ସମ୍ଭବତଃ ପଣ୍ଡିତ ଗୋପବନ୍ଧୁଙ୍କ ନିର୍ଦ୍ଦେଶରେ ଏସିଆଟିକ୍ ସୋସାଇଟିର ଜଣେ ସଭ୍ୟ ଥିଲେ। ବର୍ଦ୍ଧମାନ ମହାବିଦ୍ୟାଳୟରେ ସଂସ୍କୃତ ବିଭାଗର ଅଧ୍ୟାପକ ଥିବାବେଳେ ସେ ଏହି ପଦର ଅଧିକାରୀ ଥିଲେ।

**ସଂସ୍କୃତ ଭାଷା ଓ ଅନ୍ୟାନ୍ୟ ପ୍ରାଚୀନ ଭାରତୀୟ ଭାଷା**

ପ୍ରତ୍ୟେକ ଜାତିର ଏକ ବା ଏକାଧିକ ଭାଷା ରହିଅଛି। ଏ ସମସ୍ତର ଉତ୍କର୍ଷ ସେ ଜାତିର ଗୌରବଗାଥା ରୂପେ ଗୃହୀତ ହୋଇଥାଏ। ଏହା ଜାତୀୟ ଜାଗରଣ ସହିତ ବିଶ୍ୱଜାଗରଣ ଆଭିମୁଖ୍ୟ ହୁଏ। ଭାଷାର ଅନ୍ତର୍ନିହିତ ଭାବ ହିଁ ଏହାର ପ୍ରାଣ ଓ ତାହାର ଗତିଶୀଳ ପ୍ରକୃତି ହିଁ ତାହାର ବଳ। ଭାଷାର ଉତ୍ପତ୍ତି ଓ ପ୍ରାଚୀନତା ଉପରେ ତାହାର ଅନ୍ତର୍ନିହିତ ସତ୍ତା ନିର୍ଭର କରେ। ପଣ୍ଡିତ ଗୋପବନ୍ଧୁ ଦାସ ଏହା ହୃଦୟଙ୍ଗମ କରି ଓଡ଼ିଆ ତଥା ଅନ୍ୟାନ୍ୟ ପ୍ରାନ୍ତୀୟ ଭାରତୀୟ ଭାଷାର ଆଦ୍ୟ ଜନନୀ ସଂସ୍କୃତକୁ ଉଚ୍ଚ ସ୍ଥାନ ଦେଉଥିଲେ। 'ସତ୍ୟବାଦୀ' ୨ୟ ଖଣ୍ଡ ୮ମରୁ ୧୨ଶ ସଂଖ୍ୟାରେ ଏକ ଲିପି ପ୍ରଚାର ପ୍ରସଙ୍ଗରେ ଆଲୋଚନା କରି ପଣ୍ଡିତ ଗୋପବନ୍ଧୁ ଲେଖିଥିଲେ– ଭାରତର ଭାଷାମାନଙ୍କର ମୂଳ ଦୁଇଟି– ସଂସ୍କୃତ ଭାଷା ଆବହମାନ କାଳରୁ ଏ ଦେଶରେ ଏପରି ପ୍ରଭାବ ବିସ୍ତାର କରି ଆସିଅଛି ଯେ, ଦ୍ରାବିଡ଼ ଭାଷାମାନ ବହୁ ପରିମାଣରେ ତଦ୍ୱାରା ପ୍ରଭାବିତ ହୋଇଅଛନ୍ତି। ଏହାଛଡ଼ା ମୁସଲମାନମାନଙ୍କ କଥିତ ଭାଷା ଉର୍ଦ୍ଦୁ ହିନ୍ଦୁସ୍ଥାନୀ ମିଶ୍ରିତ। ଦେବନାଗରୀ ଅକ୍ଷର ସଂସ୍କୃତ ଭାଷାର ମୌଳିକ ଲିପି ଭାରତର ଭିନ୍ନ ଭିନ୍ନ ଅଞ୍ଚଳର ସଂସ୍କୃତ ପୁସ୍ତକମାନ ପ୍ରଗାଢ଼ ଭକ୍ତି ଏବଂ ଆଦର ହେବା ସ୍ୱାଭାବିକ। ଗୋପବନ୍ଧୁଙ୍କ ନିର୍ଦ୍ଦେଶରେ ପଣ୍ଡିତ ଲିଙ୍ଗରାଜ ମିଶ୍ର ଓ ପଣ୍ଡିତ ନୀଳକଣ୍ଠ ଦାଶ ପ୍ରଭୃତି ବୈଦିକ ତଥା ସଂସ୍କୃତ ସାହିତ୍ୟର ଭାଷା ଓ ତା'ର ଗଠନରେ ପ୍ରୟୋଗ କରାଯାଇଥିବା ବ୍ୟାକରଣ ଉପରେ ଯଥାକ୍ରମେ ୫ମ ଖଣ୍ଡ ୧୦ମ ସଂଖ୍ୟା ଓ ୩ୟ ଖଣ୍ଡ, ୫ମ ଖଣ୍ଡ ଓ ୬ ଖଣ୍ଡ ସଂଖ୍ୟାରେ ଚିତ୍ର ଓ କବିତାରେ କଳାର କ୍ରମ (୨) କବିତା ପ୍ରସଙ୍ଗରେ ଆଲୋଚନା କରିଅଛନ୍ତି। ଗୋପବନ୍ଧୁ ସମଗ୍ର ଭାରତରେ ସଂସ୍କୃତ

ଭାଷା ଓ ସାହିତ୍ୟକୁ ଭାରତୀୟ ଐତିହ୍ୟର ଭାବବିକାଶରେ ଆଞ୍ଚଳିକ ତଥା ଦ୍ରାବିଡ ଭାଷାମାନଙ୍କର ପ୍ରାଣକେନ୍ଦ୍ର ରୂପେ ଏହି ମହାଜାତିର ଐକ୍ୟ ସଂରକ୍ଷଣ କରୁଥିବା ଦର୍ଶାଇଥାନ୍ତି । 'ସତ୍ୟବାଦୀ'ର ୮ମରୁ ୧୨ଶ ସଂଖ୍ୟାରେ ସଂସ୍କୃତ ଶିକ୍ଷା ପ୍ରସଙ୍ଗରେ ଗୋପବନ୍ଧୁ ଉଲ୍ଲେଖ କରିଛନ୍ତି ଯେ, ସଂସ୍କୃତ ଭାଷା ବଳରେ ଏ ଦେଶରେ ଆର୍ଯ୍ୟ ସଭ୍ୟତା ଅକ୍ଷୁଣ୍ଣ ରହିଅଛି । ପଣ୍ଡିତ ଲିଙ୍ଗରାଜ ମିଶ୍ର ସଂସ୍କୃତ ଭାଷାର ବିବର୍ତ୍ତନ ନିର୍ଦ୍ଦେଶ କରିବାକୁ ଯାଇ ବୈଦିକ ଓ ଲୌକିକ ସଂସ୍କୃତ ଆଦିରେ ତା'ର ବିଭାଜନ କରିଅଛନ୍ତି ଏବଂ ସଂସ୍କୃତ ଶବ୍ଦମାନଙ୍କର ଅର୍ଥଗତ ପରିବର୍ତ୍ତନକୁ ତା'ର ପ୍ରଚଳନର ସାକ୍ଷ୍ୟ ବହନ କରିଥିବାର ସ୍ଥିର କରି ସମୟାନୁସାରେ ତା'ର ଗତି ଓ ପ୍ରକୃତି ନିର୍ଦ୍ଦେଶ କରିଅଛନ୍ତି । ଏଥିପାଇଁ ସମାସର ନ୍ୟୂନତାକୁ ଭାଷା ପ୍ରଚଳନର ଅନ୍ୟ ଏକ କାରଣ ରୂପେ ସେ ଗ୍ରହଣ କରିଛନ୍ତି । ଏପରି ପ୍ରଚଳନ ଆଦିମ ଭାଷାମାନଙ୍କର ସଂସ୍କୃତ ଭାଷା ସହିତ ସଂଘାତ ଫଳରେ ହୋଇଥିବାର ସେ ଅବଧାରଣା କରିଛନ୍ତି । ତାଙ୍କ ମତରେ ଭାଷାର କ୍ରମ ଅବକ୍ଷୟର ପ୍ରଧାନ କାରଣ ବ୍ୟାକରଣ । ପାଣିନୀଙ୍କ ବ୍ୟାକରଣ ସଂସ୍କୃତ ଭାଷାର ମୁକ୍ତ ପ୍ରବାହ ପଥରେ ପ୍ରତିବନ୍ଧକ ହୋଇ ତା'ର ଅବକ୍ଷୟର ପ୍ରଧାନ କାରଣ ହୋଇଥିଲା ଏବଂ ସେହି ଅନୁଯାୟୀ କାତ୍ୟାୟନଙ୍କ ପାଲି ବ୍ୟାକରଣ ପାଲି ଭାଷାର ସଂକୋଚନର ମଧ୍ୟ କାରଣ ହୋଇଅଛି ବୋଲି ସେ ସିଦ୍ଧାନ୍ତ କରିଛନ୍ତି ।

### ଭାରତର ପ୍ରାଦେଶିକ ଭାଷା

ପଣ୍ଡିତ ଗୋପବନ୍ଧୁ 'ସତ୍ୟବାଦୀ' ୨ୟ ବର୍ଷ ୮ମରୁ ୧୨ଶ ସଂଖ୍ୟାରେ ଏକ ଲିପି ପ୍ରଚାର ପ୍ରସଙ୍ଗରେ ଲେଖିଛନ୍ତି– ଭାରତର ମୁଖ୍ୟ ଭାଷା ୧୪/୧୫ଟି । ସେସବୁର ସାହିତ୍ୟ ଅଛି । ସମସ୍ତ ସାହିତ୍ୟ ଅଳ୍ପାଧିକ ପରିମାଣରେ ସଂସ୍କୃତ ଛାଞ୍ଚରେ ଢଳା ହେଲେ ସୁଦ୍ଧା ପ୍ରତ୍ୟେକ ପ୍ରାଦେଶିକ ସାହିତ୍ୟର ଅନେକ ବିଷୟରେ ସ୍ୱାତନ୍ତ୍ର୍ୟ ଅଛି । ଏହାଛଡ଼ା ସମଗ୍ର ଭାରତରେ ଶତାଧିକ କଥିତ ଭାଷା ପ୍ରଚଳିତ । ସେସବୁ କାଳକ୍ରମେ ଊଣା ହୋଇ ଆସୁଅଛି ଏବଂ ସେ ଭାଷାଭାଷୀ ଲୋକେ ଶିକ୍ଷାର ପ୍ରଚାର ସଙ୍ଗେ ସଙ୍ଗେ ମୁଖ୍ୟ ଭାଷାମାନ ଗ୍ରହଣ କରୁଛନ୍ତି । ମାତ୍ର ମୁଖ୍ୟ ପ୍ରାଦେଶିକ ଭାଷାମାନଙ୍କର ଇତିହାସ ଓ କ୍ରମବିକାଶ ବିଧାନ ଦେଖିଲେ ସେସବୁ ଲୋପପାଇବା ସହଜ ନୁହେଁ ବୋଲି ବୁଝାଯାଏ । ସେସବୁକୁ ଲୋପ କରିବାର ଉଦ୍ୟମ ଅସ୍ୱାଭାବିକ ଏବଂ ମାନବ ଉନ୍ନତିର ନୈସର୍ଗିକ ପ୍ରବାହରେ ପ୍ରତିବନ୍ଧକ । ଗୋପବନ୍ଧୁ ଏହି ପ୍ରାଦେଶିକ ଭାଷାମାନଙ୍କର ଇତିହାସ ଅଦ୍ୟାବଧି ଉପଯୁକ୍ତ ଭାବରେ ଅନୁଧ୍ୟାନ କରାଯାଇ ନ ଥିବାର ଦର୍ଶାଇ ସେହି ଭାଷାମାନେ କେଉଁ ପ୍ରାକୃତ ଓ ଅପଭ୍ରଂଶ ଭାଷାରୁ ସୃଷ୍ଟ ହୋଇଛନ୍ତି, ତାହା ଅନୁସନ୍ଧାନ ପାଇଁ ଆଗ୍ରହ ପ୍ରକାଶ କରିଛନ୍ତି । ଏପରି ଏକ ଭାଷା ଇତିହାସର ଧାରା ମଧ୍ୟରେ ବିବର୍ତ୍ତିତ ହେଲେ ମଧ୍ୟ ଲୋପ ପାଇ ନ ଥିବାରୁ ତାହା ଲୋପ ହେବ ନାହିଁ ବୋଲି ସ୍ଥିରକରି ତହିଁର ବ୍ୟାପକ ଅନୁସନ୍ଧାନ ଓ ଅନୁଧ୍ୟାନ ପାଇଁ ଆଗ୍ରହୀ ହୋଇଅଛନ୍ତି । ସେ 'ସତ୍ୟବାଦୀ' ୬ଷ୍ଠ ଖଣ୍ଡ ୧ମ ସଂଖ୍ୟାରେ ସତ୍ୟବାଦୀର ନବପ୍ରସ୍ଥ ଆଲୋଚନା ପ୍ରସଙ୍ଗରେ କହିଛନ୍ତି– ବହୁ କାଳ ଯାଏଁ ଗୁଜରାତ ତଥା ଓଡ଼ିଶା ଜୈନ, ବୌଦ୍ଧ ଧର୍ମର ପୀଠ ଥିଲା । ସେ କାଳର ପ୍ରାକୃତ ଏବଂ ଅପଭ୍ରଂଶ ଭାଷା ଲିଖିତ ସାହିତ୍ୟ ଗୁଜୁରାତରୁ ବାହାରୁଅଛି । ଏହା ହିଁ ନୂଆ ଗୁଜୁରାଟୀ ଭାଷାର ଆଦି ବୋଲି ଧରାଯାଉଛି । ଓଡ଼ିଶାରେ ସେ ସାହିତ୍ୟ ଅଛି କି ନାହିଁ, ତାହା କେହି ଜାଣନ୍ତି ନାହିଁ । ଓଡ଼ିଶାର ଦିନେ ଯେ ଗୌରବ ଥିଲା, ସାହିତ୍ୟ ଯେ ଏ ଦେଶରେ ଅତି ପ୍ରାଚୀନ କାଳରୁ ଆରମ୍ଭ ହୋଇଥିଲା, ସାହିତ୍ୟ ଦର୍ପଣ, ଏକାବଳୀ, ଗଦାଧର ସ୍ମୃତି, ବାଜପେୟୀ, ଶ୍ରୀଧର ଟୀକା ପ୍ରଭୃତି ଲେଖାହେବା କାଳରେ ଯେ ସଂସ୍କୃତ ତଥା ପ୍ରାକୃତ ସାହିତ୍ୟ ଏ ଦେଶରେ ବହୁ ବିସ୍ତାର ଲାଭ କରିଥିଲା । ତାହା ଆଜି ଲୋକେ ମନେ ରଖି ନାହାନ୍ତି । ପ୍ରାକୃତ ଭାଷାରେ ଉପଲବ୍ଧ ହେଉଥିବା ବୌଦ୍ଧଗାନ ଓ ଦୋହା ଏହି ସିଦ୍ଧାନ୍ତକୁ ସ୍ୱୀକାର କରିଥାଏ । ଏବେ ଏହାକୁ ଆଦି ଓଡ଼ିଆ ଭାଷା ଓ ଓଡ଼ିଆ ଯୋଗ ତଥା ଧର୍ମସାହିତ୍ୟର ପୂର୍ବରୂପ ବୋଲି ପ୍ରମାଣ କରି ଡ଼କ୍ଟର କରୁଣାକର କର ଓ ଖଗେଶ୍ୱର ମହାପାତ୍ର ପୁସ୍ତକମାନ ରଚନା କରିଅଛନ୍ତି । ପଣ୍ଡିତ ନୀଳକଣ୍ଠ 'ସତ୍ୟବାଦୀ' ୫ମ ଖଣ୍ଡ ୮ମ ଓ ୯ମ ସଂଖ୍ୟାରେ ଜାତୀୟତାର ଭିତ୍ତିଭୂମି ସମ୍ପର୍କରେ ଏକ ପ୍ରବନ୍ଧ ରଚନା କରି ଭାଷା ଓ ସାହିତ୍ୟକୁ ଏବଂ ବିଶେଷ କରି ପ୍ରାଦେଶିକ ଭାଷା ମାଧ୍ୟମରେ ଫୁଟିଉଠୁଥିବା ସାହିତ୍ୟକୁ ପ୍ରାଦେଶିକ ଜାତୀୟତା ଓ ଏହି ପ୍ରାଦେଶିକ ଜାତୀୟତାର ସମନ୍ୱୟରେ ସର୍ବଭାରତୀୟ ଜାତୀୟତାର ପ୍ରତିଷ୍ଠା ଚିନ୍ତା କରିଛନ୍ତି । ସେଥିପାଇଁ ସେ ଭାରତର ଏକ ଭାଷା ତଥା ଭାବପ୍ରକାଶର ଗୋଟିଏ ମାଧ୍ୟମ ସୃଷ୍ଟି ହେଲେହେଁ ପ୍ରାଦେଶିକ ଭାଷାର ସ୍ଥାନ ଅକ୍ଷୁଣ୍ଣ ରହିବାର ସମ୍ଭାବନା ଦେଖିଛନ୍ତି ।

### ମାତୃଭାଷା ବା ପ୍ରାଦେଶିକ ଭାଷା ସାହାଯ୍ୟରେ ଶିକ୍ଷା

ଦେଶୀୟ ତଥା ପ୍ରାଦେଶିକ ଭାଷାମାନଙ୍କରେ ଶିକ୍ଷାର ସୁଫଳ ବିଷୟ ଉଲ୍ଲେଖ ପଣ୍ଡିତ ଗୋପବନ୍ଧୁ ପ୍ରକାଶ କରିଛନ୍ତି ଯେ, ମାତୃଭାଷା ସହଜ ଅବରୋଧ, ଭାବପ୍ରକାଶ ବିନିମୟର ମାଧ୍ୟମ ଅଟେ। ଏହାକୁ ଶିକ୍ଷା କରିବା କିମ୍ବା ବୁଝି ସେଥିରେ ଭାବ ବିସ୍ତାର କରିବା ନିମିତ୍ତ ଆୟାସ କରିବାକୁ ହୋଇ ନ ଥାଏ କିମ୍ବା ଅତି ଅଳ୍ପ ଶ୍ରମ ଆବଶ୍ୟକ ହୋଇଥାଏ। ମାତ୍ର ବିଦେଶୀ ଭାଷା ଶିକ୍ଷା କଲେ ତହିଁରେ ବ୍ୟୁତ୍ପନ୍ନ ହେବା ଦୁଷ୍କର ହୋଇଥାଏ। କେବଳ ଇଂରାଜୀ ଶିକ୍ଷା ପାଇଁ ଯେଉଁ ଶ୍ରମ ଆବଶ୍ୟକ ହୁଏ ତଦ୍ୱାରା ଅନ୍ୟାନ୍ୟ ଗୁରୁତ୍ୱପୂର୍ଣ୍ଣ ବିଷୟମାନଙ୍କର ତତ୍ତ୍ୱ ଚିନ୍ତା ଓ ଆଲୋଚନା ପାଇଁ ଅଧିକ ସମୟ ମିଳେ ନାହିଁ ତେଣୁ ପ୍ରାଦେଶିକ ଭାଷାମାନଙ୍କରେ ଶିକ୍ଷା ପ୍ରଦତ୍ତ ହେବା ହିଁ ସୁବିଧାଜନକ। ତାଙ୍କ ମତରେ ବିଶ୍ୱବିଦ୍ୟାଳୟର ଶିକ୍ଷା ମାତୃଭାଷାରେ ପ୍ରଦତ୍ତ ହେବା ସର୍ବାଦୌ କର୍ତ୍ତବ୍ୟ। ଅବଶ୍ୟ ପ୍ରାଦେଶିକ ଭାଷା ଓ ମାତୃଭାଷା ମଧ୍ୟରେ ଅବସ୍ଥାନଗତ ବ୍ୟତିକ୍ରମ ନେଇ କେତେକ ପୃଥକ ଅବସ୍ଥା ଦୃଷ୍ଟିଗୋଚର ହୋଇପାରେ ମାତ୍ର ସାଧାରଣତଃ ପ୍ରାଦେଶିକ ଭାଷା ହିଁ ମାତୃଭାଷା ରୂପେ ଗ୍ରହଣ କରାଯାଇପାରେ। ମାତୃଭାଷା ସାହାଯ୍ୟରେ ଶିକ୍ଷା ପ୍ରସଙ୍ଗରେ ଅନୁକୂଳ ମତ ପ୍ରକାଶ କରିଥିବା ମଣ୍ଟେଗୁ ଚେମସଫୋର୍ଡ଼, ସାଡ଼ଲର, ବଟଲର ଆଦି ସାହେବ ଓ ରାମନାୟାଙ୍ଗର, ତିଲକ ପ୍ରଭୃତି ବିଶିଷ୍ଟ ଶିକ୍ଷାବିତ୍ ଏବଂ ଚିନ୍ତାଶୀଳ ଇଂରେଜ ତଥା ଭାରତୀୟ ଜନନାୟକମାନଙ୍କ ଉକ୍ତିର ଆଲୋଚନା କରି 'ସତ୍ୟବାଦୀ' ର ବିଭିନ୍ନ ସଂଖ୍ୟାରେ ଗୋପବନ୍ଧୁ ନିଜର ମତାମତ ପ୍ରକାଶ କରିଛନ୍ତି। 'ସତ୍ୟବାଦୀ' ୩ୟ ଖଣ୍ଡ ୧ମ ୨ୟ ସଂଖ୍ୟାରେ ଆଲୋଚନା ସ୍ତମ୍ଭରେ ପ୍ରାଦେଶିକ ଭାଷା ସାହାଯ୍ୟରେ ଶିକ୍ଷା ପ୍ରସଙ୍ଗରେ ପଣ୍ଡିତ ଗୋପବନ୍ଧୁ ଉଲ୍ଲେଖ କରିଛନ୍ତି ଯେ– ଯେକୌଣସି ଜାତିର ଶିକ୍ଷା ସେହି ଜାତିର ନିଜ ଭାଷାରେ ନ ହେବା ଯାଏ ତାହା ଜାତୀୟ ଶିକ୍ଷା ନୁହେଁ। ଭାଷା ଭାବପ୍ରକାଶର ଉପାୟ ମାତ୍ର ସତ, କିନ୍ତୁ ଯେଉଁ ଭାଷା ମନୁଷ୍ୟର ନିଜ ଭାଷା, ଯେଉଁ ଭାଷାବେଷ୍ଟନୀ ମଧ୍ୟରେ ସେ ଜନ୍ମଦିନୁ ଲାଳିତପାଳିତ, ସେ ଭାଷାରେ ଭାବ ଯେପରି ସୁବୋଧ୍ୟ ହୁଏ, ଅନ୍ୟ ଭାଷାରେ ସେପରି ହୁଏ ନାହିଁ। ଆମ୍ଭେମାନେ କୌଣସି ବିଦେଶୀୟ ଭାଷା ଶିଖିଲାବେଳେ ମନେ ମନେ ସେହି ଭାଷାରେ ଅନୁବାଦ କରିଥାଉ। ଅନ୍ୟତ୍ର ଗୋପବନ୍ଧୁ ଦର୍ଶାଇଛନ୍ତି ଯେ ଯଦି ବିଜ୍ଞାନ ଓ ଅନ୍ୟାନ୍ୟ ଉନ୍ନତ ପାଶ୍ଚାତ୍ୟ ଜ୍ଞାନରାଶି ଦେଶୀୟ ଭାଷାମାନଙ୍କଦ୍ୱାରା ପ୍ରକାଶିତ ହୋଇ ଜ୍ଞାନ ବିତରଣରେ ନ ଲାଗେ, ତେବେ ତାହା ଜାତୀୟ ଶିକ୍ଷାର ରୂପ ନେଇପାରେ ନାହିଁ। ଜାତୀୟ ଶିକ୍ଷା ଜାତୀୟ ଭାଷା ମାଧ୍ୟମରେ ଏବଂ ବୋଧଗମ୍ୟ ଭାବରେ ଦେଶର ଅଧିବାସୀମାନଙ୍କ ଚିନ୍ତା–ରାଜ୍ୟରେ ପ୍ରବେଶ କରିଥାଏ ଏବଂ ସେମାନଙ୍କର ମୌଳିକ ଚିନ୍ତାର ସୃଜନରେ ସହାୟକ ହୋଇଥାଏ। ତେଣୁ ସମସ୍ତ ଶିକ୍ଷାଦେଶୀୟ ଭାଷାରେ ସବୁ ଶ୍ରେଣୀର ଲୋକଙ୍କ ବୋଧଗମ୍ୟ ହେବା ଭଳି ଦିଆଯିବା ହିଁ କାମ୍ୟ। ଏଥିପାଇଁ ଗୋପବନ୍ଧୁ ଏହି ଆଲୋଚନାରେ ଦର୍ଶାଇଛନ୍ତି ଯେ– ବିଶ୍ୱବିଦ୍ୟାଳୟର ଉଚ୍ଚତମ ଶିକ୍ଷା ଦେଶୀୟ ଭାଷା ସାହାଯ୍ୟରେ ଦିଆଯିବା ଭାରତୀୟ ଭାଷା ନୀତିର ଲକ୍ଷ୍ୟ ହେବା ଉଚିତ। ଏକ ସ୍ୱତନ୍ତ୍ର ଭାଷା ନୀତିର ପ୍ରଣୟନର ଆବଶ୍ୟକତା ହୃଦୟଙ୍ଗମ କରି ପଣ୍ଡିତ ଗୋପବନ୍ଧୁ ବିଦେଶୀ ଶାସନର ଚକ୍ରତଳେ ନିଜର ଚେଷ୍ଟା ସଫଳ ହେବାରେ ବହୁ ପ୍ରତିବନ୍ଧକ ଥିବା ଦେଖି ତାହାକୁ ଜାତୀୟ କଂଗ୍ରେସରେ ଗୃହୀତ କରାଇବାକୁ ଆପ୍ରାଣ ଉଦ୍ୟମ କରିଛନ୍ତି। ତାଙ୍କରି ଚେଷ୍ଟାର ସଦ୍ୟ ଫଳସ୍ୱରୂପ ସିଂହଭୂମିର କଂଗ୍ରେସ ସଭ୍ୟମାନେ ଓଡ଼ିଶା କଂଗ୍ରେସ ଦଳର ଅନ୍ତର୍ଗତ ହୋଇଥିଲେ ଏବଂ ପରବର୍ତ୍ତୀ କାଳରେ ଭାଷା ସୂତ୍ରରେ ପ୍ରଦେଶ ଗଠନ କଂଗ୍ରେସରେ ନୀତି ରୂପେ ଗୃହୀତ ହୋଇଥିଲା।

### ସ୍ୱାଧୀନତା ସଂଗ୍ରାମରେ ଭାଷା

ସ୍ୱାଧୀନତା ସଂଗ୍ରାମରେ ଭାଷାର କିଛି ଭୂମିକା ଥିବାର ମନେ କରାଯାଇ ନ ଥିଲା। କିନ୍ତୁ ଗୋପବନ୍ଧୁ ଦେଶର ଆନ୍ଦୋଳନ ପରିଚାଳନା ପାଇଁ ପ୍ରାଦେଶିକ ତଥା ଲୋକଙ୍କ ବୋଧଗମ୍ୟ ଭାଷାର ପ୍ରଚଳନ କରିଥିଲେ। ଜନସାଧାରଣଙ୍କୁ ବିଭିନ୍ନ ସମସ୍ୟା ବୁଝାଇବା ଏବଂ ବିଦେଶୀ ସରକାରଙ୍କ ଶୋଷଣ ନୀତିର ବ୍ୟାଖ୍ୟା ସେମାନଙ୍କ ମାତୃଭାଷା ମାଧ୍ୟମରେ ଦେବାଦ୍ୱାରା ବିଦେଶୀ ଶାସନ ବିରୁଦ୍ଧରେ ପ୍ରତିରୋଧ ଶକ୍ତି ଜାଗ୍ରତ ହୋଇ ତାହା ଗଣବିପ୍ଳବର ଆଭିମୁଖ୍ୟ ନେଇପାରିଥିଲା। କଲିକତାରେ ଓଡ଼ିଆ ଶ୍ରମିକମାନଙ୍କ ସଂଗଠନ ଗଢି ଆନ୍ଦୋଳନ ପରିଚାଳନାରେ ସେ ତାହା ପ୍ରମାଣ କରିଯାଇଛନ୍ତି। ତାଙ୍କ ସମ୍ପାଦିତ 'ସମାଜ' ପତ୍ରିକାରେ ଓଡ଼ିଆମାନଙ୍କୁ ନିଜ ନିଜର ସହଜ ଓ ବୋଧଗମ୍ୟ ଭାଷାରେ ଅତ୍ୟାଚାର ତଥା ଦମନାଦିର ବାର୍ତ୍ତା ଦେଇ ଗୋପବନ୍ଧୁ ନିର୍ଭୀକ ସମାଲୋଚନାର ପଥ ଉନ୍ମୁକ୍ତ କରିଥିଲେ। 'ବନ୍ଦୀର

ଆତ୍ମକଥା' ଓ 'କାରାକବିତା' ଆଦି ପୁସ୍ତକମାନ ଓଡ଼ିଆ ଭାଷାରେ ଅନ୍ୟାୟ, ଅତ୍ୟାଚାର ତଥା ଶୋଷଣ ବିରୁଦ୍ଧରେ ସଂଗ୍ରାମ ପାଇଁ ଲୋକଜାଗରଣ ଏକ ମନସ୍ତାତ୍ତ୍ୱିକ ପ୍ରୟାସ ଥିଲା। ଏହା ମାଧ୍ୟମରେ ସେ ବିପ୍ଳବର ବୀଜ ସମଗ୍ର ଓଡ଼ିଶାରେ ବୁଣି ଦେଇଥିଲେ। 'ସମାଜ' ଓ 'ସତ୍ୟବାଦୀ' ରେ ସେ ସରକାରଙ୍କ ଆଇନକାନୁନ ତଥା ନୀତିମାନଙ୍କର ବ୍ୟାଖ୍ୟା ସହଜ ଓଡ଼ିଆ ଭାଷାରେ କରି ଲୋକବିପ୍ଳବ ପାଇଁ ସାମାଜିକ ମୂଳଦୁଆ ପକାଇ ଥିଲେ। ଗୋପବନ୍ଧୁ ଉତ୍କଳ ସମ୍ମିଳନୀ ମଣ୍ଡପରେ ଏକତ୍ର ହେବା ପାଇଁ ଓଡ଼ିଆମାନଙ୍କୁ ପ୍ରବର୍ତ୍ତାଇ ଥିଲେ। ଓଡ଼ିଆ ଭାଷାଭାଷୀ ରାଜ୍ୟର ମିଶ୍ରଣ ସରକାରୀ ଅବହେଳାରୁ ସୃଷ୍ଟି ହୋଇଥିବାର ପ୍ରତିଷ୍ଠା କରି ଓଡ଼ିଆ ଜତୀୟତାର ଲକ୍ଷ୍ୟ ହାସଲ ନିମିତ୍ତ ସେ ସମ୍ମିଳନୀକୁ କଂଗ୍ରେସରେ ମିଶାଇବାର ପ୍ରସ୍ତାବ କରିଥିଲେ। ତାଙ୍କରି ଉଦ୍ୟମରେ ଉତ୍କଳ ସମ୍ମିଳନୀ କଂଗ୍ରେସରେ ମିଶିଥିଲା।

### ପ୍ରାଦେଶିକ ଭାଷାରେ ପୁସ୍ତକ ରଚନା

ପ୍ରାଦେଶିକ ଭାଷାର ପୁସ୍ତକ ରଚନାଦ୍ୱାରା ଦେଶୀୟ ଭାଷା କ୍ରମେ ପୁଷ୍ଟ ଓ ବଳିଷ୍ଠ ହେବ ବୋଲି ଗୋପବନ୍ଧୁ ମନେ କରିଥିଲେ। ଏଥିପାଇଁ ସେ ଅନୁବାଦ ଦ୍ୱାରା ଇଂରାଜୀ, ସଂସ୍କୃତ ତଥା ଅନ୍ୟାନ୍ୟ ପ୍ରାଦେଶିକ ଭାଷାରେ ରହିଥିବା ଉନ୍ନତ ସାହିତ୍ୟରାଜିରୁ ଉନ୍ନତ ଜ୍ଞାନ ଆମ ସାହିତ୍ୟ ମଧ୍ୟରେ ସମ୍ପାଦିବାର ଯତ୍ନ କରୁଥିଲେ। ଏହି ନିର୍ଦ୍ଦେଶ ବଶବର୍ତ୍ତୀ ହୋଇ ପଣ୍ଡିତ ଗୋଦାବରୀଶ ମିଶ୍ର, ପଣ୍ଡିତ ନୀଳକଣ୍ଠ ଦାଶ ପ୍ରମୁଖ ଇଂରାଜୀ ସାହିତ୍ୟ, ଦର୍ଶନ, ବିଜ୍ଞାନ ଆଦିର ସଫଳ ତଥା ସରଳ ଓ ସାବଲୀଳ ଅନୁବାଦ ଦ୍ୱାରା ଓଡ଼ିଆ ସାହିତ୍ୟକୁ ସମୁନ୍ନତ କରିବାର ପ୍ରୟାସ କରିଥିଲେ। ସାଧାରଣତଃ ରାଧାନାଥଙ୍କ ନନ୍ଦିକେଶରୀ ଆଦି କାବ୍ୟରେ ଥିବା ବିଦେଶୀୟ ଚିନ୍ତାଧାରାର ସମାଲୋଚନା ହିଁ ଗୋପବନ୍ଧୁ ଓ ସତ୍ୟବାଦୀ ସାହିତ୍ୟଗୋଷ୍ଠୀଙ୍କ ସାହିତ୍ୟ ସାଧନାର ଲକ୍ଷ୍ୟ ରୂପେ ଅନେକେ ସ୍ଥିର କରନ୍ତି। ମାତ୍ର ପ୍ରକୃତ ପକ୍ଷେ ଏହା ଓଡ଼ିଆ ଭାଷାର ଉନ୍ନତି ଏବଂ ଏହାକୁ ଜ୍ଞାନଗମ୍ଭୀର କରିବା ନିମନ୍ତେ ଯେଉଁ ପ୍ରୟାସ, ତାହା ପ୍ରଚ୍ଛନ୍ନ ଭାବରେ ହିଁ କାର୍ଯ୍ୟ କରୁଥିବାର ସ୍ଥିର କରାଯାଇପାରେ। ପଣ୍ଡିତ ନୀଳକଣ୍ଠ ଓ ପଣ୍ଡିତ ଗୋଦାବରୀଶଙ୍କଦ୍ୱାରା ଇଂରାଜୀ ସାହିତ୍ୟରୁ ହୋଇଥିବା ପାଦ୍ୟାନୁବାଦ ସକଳ ଏ ଦେଶର ମାଟି ପାଣି– ପବନରେ ବଢି ଥିବାର ମନେହୁଏ। ଏହା ହିଁ ତାଙ୍କର ଆଦର୍ଶ ଭାଷା ଉନ୍ନତିର ଲକ୍ଷ୍ୟ ଭାବରେ ଅନୁଶୀଳନ କରାଯାଇପାରେ। ଯେପରି ଇଂରାଜୀ ସାହିତ୍ୟରୁ ଜ୍ଞାନ ଆହରଣ ସେ ଚିନ୍ତା କରିଛନ୍ତି, ସେହିପରି ଜାତୀୟ ସଂସ୍କୃତ ସାହିତ୍ୟର ମଧ୍ୟ ଓଡ଼ିଆ ସାହିତ୍ୟ ଓ ଭାଷା ମଧ୍ୟକୁ ଜ୍ଞାନାୟନର ଚିନ୍ତା ତାଙ୍କ ମନରେ ସ୍ଥାନ ପାଇଛି। ଗୋପବନ୍ଧୁ ନିଜେ ସଂସ୍କୃତ ସାହିତ୍ୟରୁ କବିତା ମାଧ୍ୟମରେ ଯେଉଁ ନଚିକେତା ଉପାଖ୍ୟାନ ଲେଖିଅଛନ୍ତି, ତାହା ସଂସ୍କୃତ ସାହିତ୍ୟରେ ଆବଦ୍ଧ ଥିବା ଉନ୍ନତ ଦାର୍ଶନିକ ଚିନ୍ତାକୁ ଓଡ଼ିଆ ଭାଷାର ଗଣ୍ଡି ମଧ୍ୟକୁ ଆଣିବା ପାଇଁ ଚେଷ୍ଟାର ଏକ ସୁଚିନ୍ତିତ ଓ ଦୃଢ ପଦକ୍ଷେପ ବୋଲି ପ୍ରକାଶ କରାଯାଇପାରେ। କେବଳ ସହଜ ଓ ସରଳ ଭାଷାରେ ରଚନା ପଦ୍ଧତିର ପ୍ରୟୋଗକୁ ସେ ସବୁକାଳେ ଗ୍ରହଣ କରି ନାହାନ୍ତି। ତାଙ୍କ ମତରେ ଭାଷା ସହଜ ହେଲେ ମଧ୍ୟ ତାହା ଭାବଗମ୍ଭୀର ଓ ଚିନ୍ତାଯୁକ୍ତ ହେବା ହିଁ ସର୍ବାଦୌ କାମ୍ୟ। ଏହା ଜାତୀୟ ଭାଷା ତଥା ଜାତୀୟ ଚିନ୍ତାର ଉନ୍ନୟନ କରିବାରେ ସହାୟକ ହୋଇପାରିବ। ଏଥିପାଇଁ ଯେତେବେଳେ ବିଭିନ୍ନ ପ୍ରଦେଶର ପ୍ରାଦେଶିକ ଭାଷାମାନଙ୍କୁ ଉନ୍ନତ କରିବାର ଆୟୋଜନ କରାଯାଇ ତାହାକୁ ବିଶ୍ୱବିଦ୍ୟାଳୟ ଶିକ୍ଷାର ମାଧ୍ୟମ କରିବାର ବ୍ୟବସ୍ଥା ହେଉଅଛି ସେତେବେଳେ ଓଡ଼ିଶା ମଧ୍ୟ ପଛରେ ନ ପଡ଼ି ଏଥିପାଇଁ ଆଗହୁଁ ଉଦ୍ୟମ କରିବା ଉଚିତ।

### ପ୍ରାଦେଶିକ ସଂସ୍କୃତ ଭାଷା

ସଂସ୍କୃତ ଭାଷା ଊଣା ଅଧିକେ ସମସ୍ତ ଦେଶୀୟ ଭାଷାମାନଙ୍କର ଜନନୀ। ଏହାର ସାହିତ୍ୟ ଓ ଜ୍ଞାନରାଶିରୁ ସମସ୍ତ ଦେଶୀୟ ଭାଷା ନିଜ ନିଜର ଜ୍ଞାନ ତଥା ସାହିତ୍ୟିକ ବିକାଶ ଘଟାଇ ଅଛନ୍ତି। ସଂସ୍କୃତ ସାହିତ୍ୟ ପୃଥିବୀର ସର୍ବପ୍ରାଚୀନ ଓ ଏକ ଶାଶ୍ୱତ ପ୍ରବାହରେ ନିତ୍ୟନୂତନ। ଭାରତର ଜାତୀୟତା ତଥା ସ୍ୱାତନ୍ତ୍ର୍ୟ ହିଁ ସଂସ୍କୃତ ଭାଷାକୁ ଆଶ୍ରୟ କରି ତିଷ୍ଠି ରହିଛି। ଗୋପବନ୍ଧୁଙ୍କ ଦୃଷ୍ଟିରେ ସଂସ୍କୃତ ଭାଷାର ମୃତ୍ୟୁ ହିଁ ଭାରତୀୟ ଜାତୀୟତାର ମୃତ୍ୟୁ। ତେଣୁ ଆମ୍ଭମାନଙ୍କ ଉପରେ ଲଦି ଦିଆଯାଇଥିବା ବିଦେଶୀ ଭାଷାର ବୋଝରେ ଭାରତୀୟ ପ୍ରାଚୀନ ଭାଷା ସଂସ୍କୃତର ବିସ୍ମୃତି ସର୍ବଥା ଗ୍ରହଣଯୋଗ୍ୟ ହୋଇ ନ ପାରେ। ସେଥିପାଇଁ ସଂସ୍କୃତ ଭାଷାର ଉନ୍ନତି ତଥା ତାହାର ବିକାଶ ପାଇଁ ଗୋପବନ୍ଧୁ ବଦ୍ଧପରିକର ଥିଲେ। ଆଉ ମଧ୍ୟ ଜାତୀୟ ଭାଷାର ସ୍ଥାନ ସଂସ୍କୃତ ଭାଷା ଗ୍ରହଣ କରିବା ପାଇଁ ସେ ବହୁବାର

'ସତ୍ୟବାଦୀ' ର ଆଲୋଚନା ସ୍ତମ୍ଭରେ ଉଲ୍ଲେଖ କରିବା ସହିତ ପୁରୀ ସଂସ୍କୃତ ମହାବିଦ୍ୟାଳୟ ସଂକ୍ରାନ୍ତ ଆଲୋଚନା ସୂଚାଇ ଥିଲେ । ତାଙ୍କ ମତରେ ପ୍ରାଦେଶିକ ଭାଷା ଓ ସଂସ୍କୃତ ଭାଷା ମଧ୍ୟରେ ଦ୍ୱନ୍ଦ୍ୱ ସୃଷ୍ଟି ହେବା ପରିବର୍ତ୍ତେ ସେମାନଙ୍କ ମଧ୍ୟରେ ସହଯୋଗିତା ରହିବା ହିଁ କର୍ତ୍ତବ୍ୟ । ଅତୀତରେ ଓଡ଼ିଆ ସାହିତ୍ୟର ବିକାଶରେ ମନୋନିବେଶ କରିଥିବା ସାରଳା ଦାସ ଏବଂ ଜଗନ୍ନାଥ ଓ ବଳରାମ ପ୍ରଭୃତି ବୈଷ୍ଣବ ସାହିତ୍ୟର ସ୍ରଷ୍ଟାଗଣ ଦେଶୀୟ ଭାଷାରେ ସାହିତ୍ୟ ରଚନା କରିଥିବାରୁ ସାମାଜିକ ପ୍ରତିଷ୍ଠା ପାଇ ନ ଥିଲେ । ସେମାନଙ୍କୁ ସଂସ୍କୃତଜ୍ଞ ପଣ୍ଡିତମାନଙ୍କ ନିକଟରୁ ବହୁ ସମାଲୋଚନା ଶୁଣିବାକୁ ହୋଇଥିଲା । ତେଣୁ ସଂସ୍କୃତ ଏବଂ ଓଡ଼ିଆ ତଥା ସଂସ୍କୃତ ଏବଂ ଓଡ଼ିଆ ତଥା ସଂସ୍କୃତ ଓ ଅନ୍ୟାନ୍ୟ ପ୍ରାଦେଶିକ ଭାଷାମାନଙ୍କ ମଧ୍ୟରେ ନୁହେଁ, ଏଭଳି ଭାଷାମାନଙ୍କରେ ପାଣ୍ଡିତ୍ୟ ଲାଭ କରିଥିବା ଓ ସେହି ଭାଷାମାନଙ୍କୁ ଉନ୍ନତ କରିବା ପାଇଁ ଉଦ୍ୟମ କରୁଥିବା ପଣ୍ଡିତମାନଙ୍କ ମଧ୍ୟରେ ବିଭେଦ ସୃଷ୍ଟି ହୋଇଥିଲା । ବିଦେଶୀୟମାନେ ଇଂରାଜୀ ଭାଷା ମାଧ୍ୟମରେ ସଂସ୍କୃତ ଭାଷା ଶିକ୍ଷା କରୁଥିବାର ଦର୍ଶାଇ ସେ ପ୍ରାଦେଶିକ ଭାଷାମାନଙ୍କ ମାଧ୍ୟମରେ ସଂସ୍କୃତ ଶିକ୍ଷାର ଆୟୋଜନକୁ ଅଗ୍ରାଧିକାର ଦେବାର ଇଚ୍ଛା ପୋଷଣ କରିଥିଲେ । ଏହାଦ୍ୱାରା ପ୍ରାଦେଶିକ ଭାଷାଗୁଡ଼ିକ କ୍ରମ ଅବନତି ପ୍ରାପ୍ତ ହେବେ ନାହିଁ ବୋଲି ସେ ଦର୍ଶାଇଥିଲେ ।

### ପ୍ରାଦେଶିକ ଭାଷା ମାଧ୍ୟମରେ ବ୍ୟାବହାରିକ ଜ୍ଞାନ

ପ୍ରାଦେଶିକ ଭାଷା ସମୂହର ଅଧିକାରୀ ବ୍ୟକ୍ତିମାନେ ନିଜ ନିଜର ସ୍ୱାଭାବିକ ରୀତିରେ ସେହି ଭାଷା ଜରିଆରେ ନିଜର ମତ ବିନିମୟ ତଥା ଭାବ ଆହରଣ କରିଥାଆନ୍ତି । ଏହା ଏକ ନୈସର୍ଗିକ ପନ୍ଥା । ତେଣୁ ସେମାନେ ନିଜ ନିଜର ଜ୍ଞାନ, ବିଶେଷ କରି ବ୍ୟାବହାରିକ ଜ୍ଞାନ ଲାଭ ପାଇଁ ନିଜର ମାତୃଭାଷା ସାହାଯ୍ୟରେ ତାଲିମ ପାଇବା ସର୍ବାଦୌ କର୍ତ୍ତବ୍ୟ । ବିଦେଶୀ ଇଂରାଜୀ ଭାଷା ମାଧ୍ୟମରେ ବ୍ୟାବହାରିକ ଜ୍ଞାନ ଅର୍ଥାତ୍ ସ୍ୱାସ୍ଥ୍ୟରକ୍ଷାର ନିୟମ, ଭୌଗୋଳିକ ଜ୍ଞାନ, ଆଇନଶୃଙ୍ଖଳା ତଥା ଯେକୌଣସି ସାଧାରଣ କାରିଗରୀ ଜ୍ଞାନ ଲାଭ କରିବା ନିମନ୍ତେ ମାତୃଭାଷା ହିଁ ଏକମାତ୍ର ସଫଳ ମାଧ୍ୟମ । ତେଣୁ ଗୋପବନ୍ଧୁ ଦେଶର ମାତୃଭାଷାରେ ହିଁ ଏହାର ଶିକ୍ଷା ବ୍ୟବସ୍ଥା ଉପରେ ଜୋର୍ ଦେଇଥିଲେ । ସେଥିପାଇଁ ଆବଶ୍ୟକ ହେଲେ ମାତୃଭାଷାକୁ ସେ ଦୃଷ୍ଟିରୁ ବିକଶିତ ବା ପ୍ରସ୍ତୁତ କରିବାକୁ ପରାମର୍ଶ ଦେଇଛନ୍ତି ।

### ଇଂରାଜୀ ଭାଷା ଓ ପ୍ରାଦେଶିକ ଭାଷା

ଇଂରାଜୀ ଭାଷା ଓ ପ୍ରାଦେଶିକ ଭାଷାମାନଙ୍କ ମଧ୍ୟରେ ଏକ ତୁଳନାତ୍ମକ ନିବନ୍ଧରେ ପଣ୍ଡିତ ଗୋପବନ୍ଧୁ ଦର୍ଶାଇଛନ୍ତି ଯେ, ପ୍ରାଦେଶିକ ଭାଷାମାନେ ଇଂରାଜୀ ଭାଷାଠାରୁ ବହୁ ପ୍ରାଚୀନ ଓ ଇଂରାଜୀ ଭାଷାରେ ସାହିତ୍ୟ ସୃଷ୍ଟି ହେବାର ବହୁ ପୂର୍ବରୁ ସେଗୁଡ଼ିକର ସତ୍ତା ସାହିତ୍ୟ ଆଦି ଥିଲା । ସେହି ଭାଷାମାନଙ୍କର ବ୍ୟାକରଣ ନିୟମ ଓ ପଦ୍ୟରଚନାରେ ପ୍ରୟୋଗ କରାଯାଇଥିବା ଛନ୍ଦ ଯୋଜନା ବହୁ ଉନ୍ନତ । ଏପରିକି ଓଡିଆ ଭାଷାର ପଦ୍ୟ, ବିଶେଷ କରି ଉପେନ୍ଦ୍ର ଭଞ୍ଜଙ୍କ ଛନ୍ଦ ତଥା ପଦ୍ୟ ଯୋଜନାର ବୈଚିତ୍ର୍ୟ ଇଂରାଜୀ ସାହିତ୍ୟରେ ବହୁ କମ୍ ଦୃଷ୍ଟିଗୋଚର ହୋଇପାରେ । ସେଥିପାଇଁ ଗୋପବନ୍ଧୁ ପ୍ରାଚୀନ ପ୍ରାଦେଶିକ ଭାଷାମାନଙ୍କ ବଳ ଇଂରାଜୀ ଭାଷାଠାରୁ ବହୁ ଗୁଣରେ ଅଧିକ ବୋଲି ମତପ୍ରକାଶ କରିଥିଲେ । ରାଜନୀତି, ବିଜ୍ଞାନ, ଅର୍ଥନୀତି ଆଦି କେତେକ ବିଷୟରେ ପ୍ରାଦେଶିକ ଭାଷାମାନେ ବିଶେଷ ସମୃଦ୍ଧ ନ ଥିବାର ଚିନ୍ତା ତାଙ୍କ ମନକୁ ଯେ ଛୁଇଁ ନ ଥିଲା, ଏପରି ନୁହେଁ । ତେଣୁ ସେ ବିଜ୍ଞାନାଦିର ଜ୍ଞାନ ପ୍ରାଦେଶିକ ଭାଷା ମଧ୍ୟକୁ ଆଣିବାର ଉପଦେଶ ଦେଇଥିଲେ । ବିଶେଷ କରି ସରକାରୀ ସ୍ତରରେ ଏପରି ନିୟମ ଧାର୍ଯ୍ୟ ହେଲେ ସେଥିପାଇଁ ସାହିତ୍ୟ ସୃଷ୍ଟି ବିଳମ୍ବିତ ନ ହେବାର ଆଶା ସେ କରିଥିଲେ । ଏହାଦ୍ୱାରା ପ୍ରାଦେଶିକ ଭାଷାମାନଙ୍କ ଉନ୍ନତି ହୋଇପାରିବ ବୋଲି ସେ ମନେ କରିଥିଲେ ।

### ଇଂରାଜୀ ଭାଷା ବିରୁଦ୍ଧରେ ଜାତୀୟ ସଂଗ୍ରାମ

ପ୍ରାଦେଶିକ ଭାଷାମାନଙ୍କର ତଥା ଭାରତୀୟ ଭାଷାମାନଙ୍କର ଉନ୍ନତି ନିମିତ୍ତ ପଣ୍ଡିତ ଗୋପବନ୍ଧୁଙ୍କ ଲେଖାରେ ଯେଉଁ ଅଧୀରତା ତଥା ସଂଗ୍ରାମୀ ମନୋଭାବ ଦେଖିବାକୁ ମିଳେ, ତାହା ପଛରେ ତାଙ୍କର ଇଂରାଜୀ ଭାଷା ବିରୁଦ୍ଧରେ ଜାତୀୟ ସଂଗ୍ରାମର ଲକ୍ଷ୍ୟ ରହିଥିବାର ସିଦ୍ଧାନ୍ତ କରାଯାଇପାରେ । କୌଣସି କ୍ଷେତ୍ରରେ ସେ ଇଂରାଜୀ ଭାଷାକୁ ପ୍ରାଦେଶିକ ଭାଷା କିମ୍ବା ଭାରତୀୟ ଭାଷାର ମାଧ୍ୟମ କରିବା ପାଇଁ ଇଚ୍ଛା ପ୍ରକାଶ କରି ନାହାନ୍ତି । ତାଙ୍କ ମତରେ ଇଂରାଜୀ ଭାଷା ଶାସକର ଭାଷା ଓ ଅନ୍ୟାନ୍ୟ ଭାରତୀୟ ଭାଷା ତଦ୍ୱାର ଅବହେଳିତ ଓ ଦଳିତ ।

ତେଣୁ ଏହିଭଳି ଏକ ବିଦେଶୀ ଭାଷାର ସାହାଯ୍ୟରେ ଭାରତୀୟ ପରାଧୀନତାକୁ ଦୀର୍ଘସ୍ଥାୟୀ କରାଯିବାର ଉଦ୍ୟମ ତାଙ୍କ ଦୃଷ୍ଟିରେ ଘୃଣିତ । ସେଥିପାଇଁ ପ୍ରାଦେଶିକ ଭାଷା ଏବଂ ଭାରତୀୟ ଭାଷା ତାଙ୍କ ନିକଟରେ ସ୍ୱଦେଶୀ ଆନ୍ଦୋଳନ ପାଇଁ ଏକ ପନ୍ଥା ଥିଲା । ସେ ଆଜୀବନ ସଂଗ୍ରାମୀ ଭାବରେ ଦେଶର ସମସ୍ତ ଅନୁଷ୍ଠାନ ଶିଳ୍ପ ଭାଷା ସାହିତ୍ୟ ତଥା ସମସ୍ତ ଦେଶୀୟ ଚିନ୍ତାର ଗୁଣବାନ କରିଛନ୍ତି । ସ୍ଥଳ ବିଶେଷରେ ବିଦେଶୀୟ ସଭ୍ୟତାରୁ ଆମର ଆବଶ୍ୟକ ଉପାଦାନ ସଂଗ୍ରହ କରିବାର ଉଦ୍ୟମ ମଧ୍ୟ କରିଛନ୍ତି । ଏହାଦ୍ୱାରା ଦେଶୀୟ ବସ୍ତୁ ଓ ଦେଶୀୟ ଅନୁଷ୍ଠାନ ଏବଂ କ୍ରିୟାକଳାପଗୁଡ଼ିକର ଆଦର ଓ ଲୋକମାନଙ୍କ ମଧ୍ୟରେ ତାହାର ଚିନ୍ତା ପ୍ରସାରଦ୍ୱାରା ସେ ବିଦେଶୀ ଶାସନ, ଶିକ୍ଷା ଭାଷା ତଥା ସଭ୍ୟତାର ପ୍ରତିରୋଧ ଶକ୍ତି ଲୋକମାନଙ୍କ ମଧ୍ୟରେ ଜାଗ୍ରତ କରିବାର ପ୍ରୟାସ କରିଛନ୍ତି । ଭାରତୀୟ ସ୍ୱଦେଶୀ ଆନ୍ଦୋଳନ ସହିତ ଏହା ଏପରି ଭାବରେ ସଂଶ୍ଳିଷ୍ଟ ଯେ, ତାହାକୁ ସ୍ୱତନ୍ତ୍ର ଭାବରେ କଳ୍ପନା କରିବା ସମ୍ଭବ ହୁଏ ନାହିଁ । ମାତ୍ର ଗୋପବନ୍ଧୁ ନିଜର ମୌଳିକ ଦୃଷ୍ଟିରେ ଲୋକମାନଙ୍କ ମଧ୍ୟରେ ସ୍ୱାଧୀନତା ଆନ୍ଦୋଳନର ଯେଉଁ ପ୍ରସାର କରିଛନ୍ତି, ତାହା ଓଡ଼ିଶାର ମହାଭାରତୀୟ ଚିନ୍ତାକୁ ଏକ ମହତ ଦାନ । ସେହି ଦୃଷ୍ଟିରୁ ଗୋପବନ୍ଧୁ ଭାଷା ସଂକ୍ରାନ୍ତରେ ଦେଇଥିବା ମତାମତ ପ୍ରଣିଧାନଯୋଗ୍ୟ ।

ଗୋପବନ୍ଧୁ ଦର୍ଶାଇଛନ୍ତି ଯେ, କେତେକଙ୍କ ମତରେ ମାତୃଭାଷା ସେବା ଦେଶ ଓ ଜାତିର ସାମୂହିକ ସେବାର ପରିପନ୍ଥୀ ମାତ୍ର ଗୋପବନ୍ଧୁ ଏହାର ପ୍ରତ୍ୟୁତ୍ତର ଦେବାକୁ ଯାଇ କହିଛନ୍ତି ଯେ, ମାତୃଭାଷାର ସେବା ହିଁ ମାତୃଭୂମି ତଥା ଜାତୀୟ ସେବା । ଜାତୀୟ ଭାଷା ଯେହେତୁ ମାତୃଭାଷାମାନଙ୍କର ସମନ୍ୱୟ, ସେଥିପାଇଁ ମାତୃଭାଷା ସେବାରେ ହିଁ ଦେଶସେବା ଓ ବିଶ୍ୱସେବା ନିହିତ । ଏହି ଭାବର ପ୍ରତିଧ୍ୱନି ପଣ୍ଡିତ ନୀଳକଣ୍ଠଙ୍କ ଯୌବନର ପ୍ରଭାବ ଓ ପ୍ରତିଷ୍ଠା ପ୍ରବନ୍ଧରେ ଦେଖିବାକୁ ମିଳିଥାଏ । ଏହି ଚିନ୍ତାଧାରା ପ୍ରବନ୍ଧରେ ଦେଖିବାକୁ ମିଳିଥାଏ । ଏହି ଚିନ୍ତାଧାରା ଫରାସୀ ବିପ୍ଳବରେ ବିଶିଷ୍ଟ ସ୍ଥାନ ଅଧିକାର କରିଥିବା ବିଶ୍ୱବିପ୍ଳବ ମାଧ୍ୟମରେ ବିଶ୍ୱସେବା ଦର୍ଶନରୁ ଓଡ଼ିଆ ସାହିତ୍ୟ ଓ ଚିନ୍ତା ମଧ୍ୟକୁ ଯେଭଳି ଅଣାଯାଇପାରିଛି, ତାହାର ଅନୁଧ୍ୟାନ କରିବା ସର୍ବାଦୌ ସଙ୍ଗତ । ଓଡ଼ିଆ ଭାଷାର ରକ୍ଷାକର୍ତ୍ତା ଫକୀରମୋହନ ଏବଂ ଗୌରୀଶଙ୍କର ଆଦିଙ୍କର ପ୍ରଶଂସା କରି ସେମାନଙ୍କୁ ଗୋପବନ୍ଧୁ ଜାତୀୟ ବୀର ରୂପେ ଦେଖିଛନ୍ତି । ମାତୃଭାଷାର ଉନ୍ନତି ନିମିତ୍ତ ସେମାନଙ୍କର ଅବଦାନ ଓ ସଂଗ୍ରାମ ତାଙ୍କ ଦୃଷ୍ଟିରେ ଏକ ମହତ ଆସନ ଅଧିକାର କରିଅଛି । ଏହା ବ୍ୟତୀତ ସେ ନୂତନ ସାହିତ୍ୟସେବୀମାନଙ୍କୁ ମାତୃଭାଷାର ବନ୍ଦନା ପାଇଁ ଆହ୍ୱାନ ଦେଇଛନ୍ତି ।

ଓଡ଼ିଆ ଭାଷାର ମୃତ୍ୟୁରେ ଓଡ଼ିଆ ଜାତିର ମୃତ୍ୟୁ ଚିନ୍ତାକରି ସେ ଜଣାଇଛନ୍ତି ଯେ ଏଥିପାଇଁ ଓଡ଼ିଆ କାହାରି ଭାଷାର ବିଲୋପ ଘଟାଇ ନାହିଁ । ଓଡ଼ିଆ ଭାଷାକୁ ଲୋପ କରିବା ପାଇଁ ଓଡ଼ିଶାର ପଡ଼ୋଶୀ ବଙ୍ଗଳା, ହିନ୍ଦୀ ଓ ତେଲୁଗୁ ଭାଷାଭାଷୀମାନେ ସର୍ବଦା ଉଦ୍ୟମ କରିଛନ୍ତି । ମାତ୍ର ସଫଳ ହୋଇନାହାନ୍ତି । ଏହି ଅବସ୍ଥା ପାଇଁ ବିଦେଶୀ ଶାସନ ହିଁ ଦାୟୀ । ଇଂରେଜ ଶାସକମାନେ ଓଡ଼ିଆମାନଙ୍କ ଦାବୀକୁ ଉପଯୁକ୍ତ ଧ୍ୟାନ ଦେଇ ବୁଝି ନାହାନ୍ତି, ଓଡ଼ିଆ ଭାଷାକୁ ରକ୍ଷା କରିବାକୁ ଚେଷ୍ଟା କରିନାହାନ୍ତି, ଅଥଚ ସେମାନଙ୍କ ଅନ୍ୟାୟ ଶାସନରେ ଓଡ଼ିଆମାନେ ପଡ଼ୋଶୀ ଉଚ୍ଚ କର୍ମଚାରୀମାନଙ୍କଦ୍ୱାରା ନିଷ୍ପେଷିତ ହୋଇଛନ୍ତି । ତେଣୁ ଓଡ଼ିଆ ଜାତି ତଥା ଏହି ଭାଷାର ଅଧୋଗତିର ନିରାକରଣ ପାଇଁ ଓଡ଼ିଆମାନଙ୍କୁ ନିଜ ନିଜ ମାତୃଭାଷା ସଂରକ୍ଷଣରେ ଉଦ୍ୟମ କରିବାକୁ ହେବ ଏବଂ ସେହି ଦୃଷ୍ଟିକୋଣରୁ ଉତ୍କଳ ସମ୍ମିଳନୀର ସଭାପତି ଅଭିଭାଷଣରେ ସେ ଦର୍ଶାଇଛନ୍ତି ଯେ, ଉପାନ୍ତ ଓଡ଼ିଆ ଅଞ୍ଚଳରେ ଓଡ଼ିଆ ସ୍କୁଲ ପ୍ରତିଷ୍ଠା ଆଦିରେ ଗୁରୁତ୍ୱ ଦେଲେ ସେ ଅଞ୍ଚଳରେ ଓଡ଼ିଆମାନଙ୍କର ମାତୃଭାଷା ସୁରକ୍ଷିତ ହୋଇପାରିବ । ଗୋପବନ୍ଧୁଙ୍କ ଉଦ୍ୟମରେ ପ୍ରଚାରକ ଅନନ୍ତ ମିଶ୍ର ଉପାନ୍ତ ଓଡ଼ିଆ ଅଞ୍ଚଳମାନଙ୍କରେ ଓଡ଼ିଆ ଭାଷା ସଂରକ୍ଷଣରେ ନିଜର ସମଗ୍ର ଜୀବନ ଉତ୍ସର୍ଗ କରିଥିଲେ । 'ଭାଷା ରକ୍ଷା ହିଁ ଜାତୀୟତା ରକ୍ଷା'– ଏହି ବାଣୀ ହିଁ ଗୋପବନ୍ଧୁଙ୍କର ଓଡ଼ିଶାକୁ ଏକ ମହତ ଦାନ ।

ବରିଷ୍ଠ ସାମ୍ବାଦିକ
ସାମ୍ବାଦିକ କଲୋନୀ, ତୁଳସୀପୁର, କଟକ-୮

# ଓଡ଼ିଶା ବିଧାନସଭାରେ ମାନ୍ୟବର ରାଜ୍ୟପାଳ ଡକ୍ଟର ଏସ୍.ସି. ଜମିରଙ୍କ ଅଭିଭାଷଣ

ବାଚସ୍ପତି ମହୋଦୟ ଓ ମାନ୍ୟବର ସଭ୍ୟବୃନ୍ଦ,

ପଞ୍ଚଦଶ ଓଡ଼ିଶା ବିଧାନସଭାର ଷଷ୍ଠ ଅଧିବେଶନକୁ ମୁଁ ଅତ୍ୟନ୍ତ ଆନନ୍ଦର ସହିତ ଆପଣମାନଙ୍କୁ ସ୍ୱାଗତ କରୁଛି । ଏ ଅବସରରେ ସମସ୍ତ ମାନ୍ୟବର ସଦସ୍ୟ ତଥା ଓଡ଼ିଶାବାସୀଙ୍କୁ ହାର୍ଦ୍ଦିକ ଶୁଭେଚ୍ଛା ଜଣାଉଛି ।

୧. ଏହି ପବିତ୍ର ଗୃହ ଭାରତର ପୂର୍ବତନ ରାଷ୍ଟ୍ରପତି ସ୍ୱର୍ଗତ ଏ.ପି.ଜେ. ଅବଦୁଲ କଲାମଙ୍କ ଦୁଃଖଦ ବିୟୋଗରେ ଗଭୀର ଶୋକ ପ୍ରକାଶ କରିଛି । ତତ୍‌ସହିତ ରାଜ୍ୟର ଉନ୍ନତିରେ ଉଲ୍ଲେଖନୀୟ ଯୋଗଦାନ କରିଥିବା ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ତଥା ଆସାମର ପୂର୍ବତନ ରାଜ୍ୟପାଳ ସ୍ୱର୍ଗତ ଜାନକୀ ବଲ୍ଲଭ ପଟ୍ଟନାୟକ, ପୂର୍ବତନ ମନ୍ତ୍ରୀ ସ୍ୱର୍ଗତ ହବିବୁଲ୍ଲା ଖାଁ, କାଳିନ୍ଦୀ ବେହେରା, ଶ୍ରୀବଲ୍ଲଭ ପାଣିଗ୍ରାହୀ, ଆନନ୍ଦ ଆଚାର୍ଯ୍ୟ, କଳ୍ପତରୁ ଦାସ, ପୂର୍ବତନ ରାଷ୍ଟ୍ରମନ୍ତ୍ରୀ ସ୍ୱର୍ଗତ କାର୍ତ୍ତିକ ମହାପାତ୍ର ଏବଂ ଏହି ଗୃହର ପୂର୍ବତନ ସଦସ୍ୟ ଦୟାନିଧି କିଷାନ, ସତ୍ୟାନନ୍ଦ ଚମ୍ପତିରାୟ, ଓଁକାର ସିଂ ମାଝୀ, ପର୍ଶୁରାମ ପାଣିଗ୍ରାହୀ, ଶରତ ପାଇକରାୟ, ପ୍ରେମଲତା ମହାପାତ୍ର, ଚନ୍ଦ୍ରଶେଖର ପ୍ରଧାନ, ରବୀନ୍ଦ୍ର କୁମାର ଦାସ, ରାଜକିଶୋର ପ୍ରଧାନ ଓ ବିଧୁଭୂଷଣ ପ୍ରହରାଜଙ୍କ ଦୁଃଖଦ ବିୟୋଗରେ ଏହି ପବିତ୍ର ଗୃହ ଗଭୀର ଶୋକ ପ୍ରକାଶ କରିଅଛି । ଏହି ଗୃହ ମଧ୍ୟ ଉଲ୍ଲେଖନୀୟ ନିଃସ୍ୱାର୍ଥପର ସେବା ଓ ଜାତି ଉଦ୍ଦେଶ୍ୟରେ ଆତ୍ମବଳିଦାନ କରିଥିବା ଓଡ଼ିଶା ପୁଲିସର ପୂର୍ବତନ ଗ୍ରାମରକ୍ଷୀ ସ୍ୱର୍ଗତ ଜଗା ଖିଲ୍ଲାଙ୍କ ପ୍ରତି ଶୋକପ୍ରକାଶ କରିଅଛି । ପୂର୍ବତନ ମନ୍ତ୍ରୀ ସ୍ୱର୍ଗତ ମହେଶ୍ୱର ବାଗ୍, ଏହି ଗୃହର ପୂର୍ବତନ ସଦସ୍ୟ ସ୍ୱର୍ଗତ ଗୁରୁବାରୁ ମାଝି ଓ ଏନ୍.କୁର୍ମା ନାଇକୁଲୁ, ସୀମା ସୁରକ୍ଷା ବଳର ପୂର୍ବତନ ଡେପୁଟି କମାଣ୍ଡାଣ୍ଟ ସ୍ୱର୍ଗତ ସୁନୀଲ କୁମାର ବେହେରା ଓ ସୀମା ସୁରକ୍ଷା ବଳର ପୂର୍ବତନ କନ୍‌ଷ୍ଟେବଳ ସ୍ୱର୍ଗତ କିଶୋର ରଞ୍ଜନ ରାଉତ ଓ ଶିବାଶିଷ ପଣ୍ଡା ଯେଉଁମାନେ କି ଆଉ ଆମ ଗହଣରେ ନାହାନ୍ତି ସେମାନଙ୍କ ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିବା ପାଇଁ ମୋ ସହିତ ଯୋଗ ଦେବାକୁ ମୁଁ ମାନ୍ୟବର ସଦସ୍ୟମାନଙ୍କୁ ଅନୁରୋଧ କରୁଛି । ଏହି ଗୃହ ପରଲୋକଗତ ସ୍ୱର୍ଗତ ଅମର ଆତ୍ମାମାନଙ୍କ ସଦ୍‌ଗତି କାମନା କରିବା ସହିତ ସେମାନଙ୍କ ଶୋକସନ୍ତପ୍ତ ପରିବାରବର୍ଗଙ୍କ ପ୍ରତି ଆନ୍ତରିକ ସମବେଦନା ଜ୍ଞାପନ କରୁଛି ।

୨. ନୂତନ ସହସ୍ରାବ୍ଦୀର ପ୍ରଥମ ନବକଳେବରକୁ ସଫଳତାର ସହ ଅନୁଷ୍ଠିତ କରାଇବା ନିମନ୍ତେ ମୋ ସରକାର ଅବିଶ୍ରାନ୍ତ ଉଦ୍ୟମ କରିଥିବା ହେତୁ ସମଗ୍ର ବିଶ୍ୱର ବିଭିନ୍ନ ଅଞ୍ଚଳରୁ ଆସିଥିବା ଲକ୍ଷ ଲକ୍ଷ ଭକ୍ତ ନବକଳେବର ପରବର୍ତ୍ତୀ ଘଟଣାବହୁଳ ରଥଯାତ୍ରାରେ ଯେଭଳି ଶାନ୍ତିପୂର୍ଣ୍ଣ ଭାବରେ ଅଂଶଗ୍ରହଣ କରିପାରିଲେ ସେଥିପାଇଁ ମୁଁ ଏହି ଅବସରରେ ଆନ୍ତରିକ ଧନ୍ୟବାଦ

ଜ୍ଞାପନ କରୁଛି । ଦେଶ ଓ ବିଦେଶର ବିଭିନ୍ନ ଅଞ୍ଚଳରୁ ରଥଯାତ୍ରା ସମୟରେ ଆସିଥିବା ଲକ୍ଷାଧିକ ଭକ୍ତଙ୍କୁ ଓଡ଼ିଶାବାସୀ ଆପଣାର ସଂସ୍କୃତି ଓ ପରମ୍ପରା ପ୍ରତି ପ୍ରତିବଦ୍ଧ ରହି ଅସୀମ ଧୈର୍ଯ୍ୟ ଓ ଉଦାରତା ପ୍ରଦର୍ଶନ କରିଥିବାରୁ ମୁଁ ସେମାନଙ୍କୁ ଗଭୀର କୃତଜ୍ଞତା ଜ୍ଞାପନ କରୁଛି ।

୩. ଦାରିଦ୍ର୍ୟ ହ୍ରାସ କ୍ଷେତ୍ରରେ ମୋ ସରକାରଙ୍କର ଉଲ୍ଲେଖନୀୟ ସଫଳତା ସହିତ ତାଳ ଦେଇ ଗୁଣାତ୍ମକ ଜୀବନଯାପନ ନିମନ୍ତେ ପରିବର୍ତ୍ତନର ଅନେକ ଆହ୍ୱାନ ଆମ ସାମ୍ନାକୁ ଆଣିଛି । ମୋ ସରକାର ଏହି ସବୁ ବ୍ୟାବହାରିକ ପରିବର୍ତ୍ତନର ଧାରାକୁ ଅନୁଧ୍ୟାନ କରୁଛି ଏବଂ ଏକ ଉନ୍ନତ ଶାସନ ବ୍ୟବସ୍ଥା ପ୍ରବର୍ତ୍ତନ କରିବା ଲକ୍ଷ୍ୟରେ ଶାସନ ପ୍ରଣାଳୀକୁ ନିରନ୍ତର ଅଭିବୃଦ୍ଧି ଅଭିମୁଖୀ କରିଚାଲିଛି ।

୪. ବିଗତ ବର୍ଷ ପୁଣି ଥରେ ଆମ ଦକ୍ଷତା ଓ କାର୍ଯ୍ୟ ସଫଳତା ପରୀକ୍ଷିତ ହୋଇଛି । ବିଗତ ବର୍ଷଟି ସବୁଠୁ ଉତ୍ତପ୍ତ ବର୍ଷ ହେବା ସାଙ୍ଗକୁ ଆର୍ଦ୍ରତାରେ ବହୁଳ ହ୍ରାସ କାରଣରୁ ରାଜ୍ୟର ଅଧିକାଂଶ ଅଞ୍ଚଳରେ ଉତ୍କଟ ମରୁଡି ପରିସ୍ଥିତି ଆକାରରେ ଏକ ବାସ୍ତବ ବିପଦ ସୃଷ୍ଟି ହୋଇଥିଲା । ମୁଁ ଗର୍ବର ସହ ମାନ୍ୟବର ସଦସ୍ୟମାନଙ୍କୁ ସୂଚାଇ ଦେବାକୁ ଚାହେଁ ଯେ ମୋ ସରକାର ବିଭିନ୍ନ କ୍ଷେତ୍ରରେ ଆଗତୁରା କ୍ଷତି ନିୟନ୍ତ୍ରଣ ପଦକ୍ଷେପମାନ ଗ୍ରହଣ କରି ଆହ୍ୱାନର ସଠିକ୍ ମୁକାବିଲା କରିଛି ଓ ରାଜ୍ୟର ଚାଷୀମାନଙ୍କ ଉପରେ ଏହାର ପ୍ରଭାବକୁ ସଫଳତାର ସହ ହ୍ରାସ କରିପାରିଛି ।

୫. ହଜାରେ କୋଟି ଟଙ୍କାର ପ୍ୟାକେଜ୍ ଅବିଳମ୍ବେ ଘୋଷଣା କରାଯାଇଛି, ଭୂରାଜସ୍ୱ ଓ ଶସ୍ୟ ଋଣକୁ ତିନି ବର୍ଷ ପାଇଁ ସ୍ଥଗିତ ରଖାଯାଇଛି, ଋଣ ପରିଶୋଧ ଉପରେ ଗୁରୁତ୍ୱ ଦିଆନଯାଇ ପୁଣି କୃଷକମାନଙ୍କୁ ଋଣ ଦିଆଯାଇଛି ଏବଂ ଜମିରେ ଥିବା ଫସଲର ସୁରକ୍ଷା ପାଇଁ ଅଚଳ ଜଳସେଚନ ଉତ୍ସଗୁଡିକର ମରାମତି ତଥା ପୁନରୁଦ୍ଧାର ପାଇଁ ତ୍ୱରିତ ପଦକ୍ଷେପମାନ ଗ୍ରହଣ କରାଯାଇଛି ।

୬. ମରୁଡି ପରିସ୍ଥିତିର ମୁକାବିଲା ନିମନ୍ତେ ୨୩୪୪.୯୯ କୋଟି ଟଙ୍କାର କେନ୍ଦ୍ରୀୟ ସହାୟତା ଯୋଗାଇଦେବା ପାଇଁ ମୋ ସରକାର କେନ୍ଦ୍ର ସରକାରଙ୍କୁ ମରୁଡି କ୍ଷୟକ୍ଷତି ସଂକ୍ରାନ୍ତୀୟ ଚୂଡାନ୍ତ ସ୍ମାରକ ପତ୍ର ପ୍ରଦାନ କରିଛି ଏବଂ ଏ ବାବଦରେ କେନ୍ଦ୍ର ସରକାରଙ୍କଠାରୁ କୌଣସି ସହାୟତା ମିଳିନଥିବା ସତ୍ତ୍ୱେ ମରୁଡିଗ୍ରସ୍ତ ଜିଲ୍ଲାଗୁଡିକରେ କ୍ଷତିଗ୍ରସ୍ତ କୃଷକମାନଙ୍କୁ ବଣ୍ଟନ ନିମନ୍ତେ ୫୧୯.୩୦ କୋଟି ଟଙ୍କାର କୃଷିନିବେଶ ରିହାତି ପ୍ରଦାନ କରାଯାଇଛି ।

ମୋ ସରକାର ସଫଳତାର ସହିତ ମରୁଡିଜନିତ କୁପ୍ରଭାବକୁ ପ୍ରତିହତ କରିଛି ଓ ପ୍ରଭାବିତ ପରିବାର ତଥା ଲୋକମାନଙ୍କର ଜୀବନ ତଥା ଜୀବିକାକୁ ସୁରକ୍ଷିତ କରିପାରିଛି ।

୭. ଆମ ସମୟ ବହୁଳ ଭାବରେ ପ୍ରଯୁକ୍ତି ପ୍ରସୂତ ଜ୍ଞାନକୌଶଳ ଦ୍ୱାରା ପ୍ରଭାବିତ । ତେଣୁ ଆମ ଜୀବନ ଧାରଣ ମାନରେ ସକାରାତ୍ମକ ପ୍ରଭାବ ପକାଇ ପାରୁଥିବା ଏହି ସବୁ ପ୍ରଯୁକ୍ତି ବିଦ୍ୟାର ଉପଯୋଗ କରିବା ଏକାନ୍ତ ଆବଶ୍ୟକ । ସାମାଜିକ ସମସ୍ୟାର ସମାଧାନ ହେଉ କି ଅର୍ଥନୈତିକ ସମସ୍ୟା ମୋ ସରକାର ପ୍ରଯୁକ୍ତି ବିଦ୍ୟାର ବ୍ୟାପକ ଉପଯୋଗ ପାଇଁ ଅତ୍ୟନ୍ତ ଆଗ୍ରହୀ । ଆମେ ଆଗକୁ ଅଗ୍ରସର ହେଉଥିବା ବେଳେ, ଆମର ଜୀବନଯାପନର ପ୍ରତ୍ୟେକ ସ୍ତରରେ ପ୍ରଯୁକ୍ତି ବିଦ୍ୟାର ସର୍ବାଧିକ ଉପଯୋଗ ମୋ ସରକାରର ଅନ୍ୟତମ ପ୍ରମୁଖ ନୀତି ହେବ ।

୮. ଦ୍ୱାଦଶ ଯୋଜନା କାଳରେ ୯% ଅଭିବୃଦ୍ଧି ହାର ହାସଲ କରିବା ହେଉଛି ଆମର ଲକ୍ଷ୍ୟ ଯାହାକୁ ମୋ ସରକାର 'ନୂତନ ମାନ' ଭାବରେ ଧାର୍ଯ୍ୟ କରିବାକୁ ଚାହୁଁଛି ଏବଂ ଏହାକୁ ହାସଲ କରିବା ପାଇଁ ମୋ ସରକାର ବିଭିନ୍ନ ରାଜ୍ୟ ଯୋଜନା ବ୍ୟୟ ବାବଦରେ ସମ୍ବଳ ଆବଣ୍ଟନ କ୍ରମାଗତ ଭାବରେ ବୃଦ୍ଧି କରିଚାଲିଛି । ମୋ ସରକାର ୨୦୧୫-୧୬ ଆର୍ଥିକ ବର୍ଷ ପାଇଁ ୪୪,୧୫୦ କୋଟି ଟଙ୍କାର ବ୍ୟୟକୁ ଅନୁମୋଦନ କରିଥିବା ବେଳେ, ଆମେ ୨୦୧୬-୧୭ ଆର୍ଥିକ ବର୍ଷ ପାଇଁ ଯୋଜନା ବ୍ୟୟକୁ ୪୫ ହଜାର କୋଟି ଟଙ୍କାକୁ ବୃଦ୍ଧି କରିବାକୁ ଲକ୍ଷ୍ୟ ରଖିଛୁ ।

୯. ନିଜସ୍ୱ କ୍ରମବର୍ଦ୍ଧିଷ୍ଣୁ ସମ୍ବଳ ଆବଣ୍ଟନ ସହିତ ପୋଷଣୀୟ ଅଭିବୃଦ୍ଧି ପାଇଁ ଆମର ପ୍ରତିବଦ୍ଧତା ଆମକୁ ଦ୍ରୁତତମ ଅଭିବୃଦ୍ଧି ହାସଲ କରୁଥିବା ଅର୍ଥନୀତିରେ ପରିଣତ କରିଛି: ମୁଣ୍ଡପିଛା ଆୟ ପାଖାପାଖି ଦୁଇ ଗୁଣ ହେବା ସହ ଦେଶର ସମସ୍ତ ରାଜ୍ୟମାନଙ୍କ ମଧ୍ୟରେ ବିଗତ ଏକ ଦଶନ୍ଧି ମଧ୍ୟରେ ଆମେ ରାଜ୍ୟରେ ସର୍ବାଧିକ ଦାରିଦ୍ର୍ୟ ହାର ହ୍ରାସ ଘଟିଛି । ମୁଁ ଆମ ରାଜ୍ୟର ଅଭିବୃଦ୍ଧି ନିମନ୍ତେ ଆମର ଦୃଢ଼ ପ୍ରତିବଦ୍ଧତା ବାବଦରେ ଆପଣମାନଙ୍କୁ ସଂପୂର୍ଣ୍ଣ ଭରସା ଦେଉଛି ।

୧୦. କେବିକେ ଜିଲ୍ଲାଗୁଡ଼ିକୁ ସ୍ୱତନ୍ତ୍ର କେନ୍ଦ୍ରୀୟ ସହାୟତା ବନ୍ଦ ହେବା ସତ୍ତ୍ୱେ, ମୋ ସରକାର ଏହି ଅଞ୍ଚଳରେ ଚାଲୁଥିବା ପ୍ରକଳ୍ପଗୁଡ଼ିକୁ ସଂପୂର୍ଣ୍ଣ କରିବା ପାଇଁ ରାଜ୍ୟ ଯୋଜନାରୁ ଅନୁଦାନ ରାଶି ବୃଦ୍ଧି କରିଛନ୍ତି । ୨୦୧୫–୧୬ ଆର୍ଥିକ ବର୍ଷ ପାଇଁ ବିଜୁ କେବିକେ ଯୋଜନାରେ ପ୍ରସ୍ତାବିତ ୨୫୦ କୋଟି ଟଙ୍କା ମଧ୍ୟରୁ ରାଜ୍ୟ କ୍ଷେତ୍ର ପାଇଁ ୧୩୦ କୋଟି ଟଙ୍କା ଓ ଜିଲ୍ଲା କ୍ଷେତ୍ର ପାଇଁ ୧୨୦ କୋଟି ଟଙ୍କା ବରାଦ କରାଯାଇଛି ।

୧୧. ସ୍ଥାନୀୟ ସମସ୍ୟାଗୁଡ଼ିକର ସମାଧାନରେ ମିତବ୍ୟୟିତା ଅବଲମ୍ବନ ପାଇଁ ଆବଶ୍ୟକ ଅଭିନବ ପ୍ରୟାସକୁ ପ୍ରୋତ୍ସାହନ ଦେବା ଲକ୍ଷ୍ୟରେ ମୋ ସରକାର ୪ ଗୋଟି ଉପଯୋଜନାର ଶୁଭାରମ୍ଭ କରିବା ସହିତ ପ୍ରତ୍ୟେକଟି ପାଇଁ ପୁରସ୍କାର ବ୍ୟବସ୍ଥା କରିଛି । ତୀକ୍ଷ୍ଣ ସମାଧାନ ନିମନ୍ତେ ଅଭିନବ ଚିନ୍ତନକୁ ପ୍ରୋତ୍ସାହିତ କରିବା ଲକ୍ଷ୍ୟରେ ମୋ ସରକାର ୬ଟି ଉଦ୍ଭବ ତଥା ବିକାଶ ଅବଧି କେନ୍ଦ୍ର ସ୍ଥାପନ କରିଛି ।

୧୨. ସମନ୍ୱୟୀ ଚିନ୍ତନ ମାଧ୍ୟମରେ ଅଭିନବ ଯୋଜନା ପ୍ରଣୟନ କରିବାକୁ ମୋ ସରକାର ସଂପୃକ୍ତ ବିଭାଗକୁ ‘ଯୋଜନା ଓ ସଂଯୋଜନା’ ବିଭାଗ ଭାବରେ ନାମିତ କରି ଯୋଜନା ପ୍ରକ୍ରିୟାରେ ବିଭିନ୍ନ ଅଂଶୀଦାରମାନଙ୍କ ସଂହତିକୁ ଉତ୍ସାହିତ କରିଛି ।

୧୩. ଯେତେବେଳେ କେନ୍ଦ୍ରୀୟ ରାଜନୀତିରେ କୌଣସି ପରିବର୍ତ୍ତନ ଆସିଛି, ସେତେବେଳେ କେତେଗୁଡ଼ିଏ କେନ୍ଦ୍ର ପ୍ରାୟୋଜିତ ଯୋଜନା ଓ କାର୍ଯ୍ୟକ୍ରମ ପୁନର୍ଗଠିତ ହୋଇଛି, କେତେକକୁ ବନ୍ଦ କରିଦିଆଯାଇଛି ତ କେତେକ ନୂଆ କାର୍ଯ୍ୟକ୍ରମ ହାତକୁ ନିଆଯାଇଛି । ଜାତୀୟ ସ୍ତରରେ ଏଭଳି ପରିବର୍ତ୍ତନ ଯୋଗୁଁ ରାଜ୍ୟଗୁଡ଼ିକୁ ମିଳୁଥିବା କେନ୍ଦ୍ରୀୟ ସହାୟତା ପରିମାଣ ପ୍ରଭାବିତ ହୋଇଛି । ଏହା ରାଜ୍ୟକୁ ଆସିବାକୁ ଥିବା କେନ୍ଦ୍ରୀୟ ସହାୟତାର ପରିମାଣକୁ ନେଇ ଅନିଶ୍ଚିତତା ସୃଷ୍ଟି କରୁଛନ୍ତି ଯାହାଫଳରେ ରାଜ୍ୟସ୍ତରରେ ବଜେଟ୍ ପ୍ରସ୍ତୁତି କଷ୍ଟକର ହୋଇପଡୁଛି । ରାଜ୍ୟ ପାଇବାକୁ ଥିବା ସହାୟତାର ପରିମାଣ ବାବଦରେ ନିର୍ଦ୍ଦିଷ୍ଟ ସୂଚନା ମିଳୁନଥିବାରୁ ବଜେଟ୍ ପ୍ରସ୍ତୁତି ଏକ ଅଯଥା ପ୍ରଚେଷ୍ଟାରେ ପରିଣତ ହେଉଛି ।

୧୪. ଏହି ପରିପ୍ରେକ୍ଷୀରେ କେନ୍ଦ୍ରୀୟ ଅର୍ଥ ଆବଣ୍ଟନରେ ସ୍ୱଷ୍ଟତା ନ ଆସିବା ପର୍ଯ୍ୟନ୍ତ ବିଧାନସଭାରେ ବଜେଟ୍ ଉପସ୍ଥାପନକୁ ଘୁଞ୍ଚାଇ ଦେବା ପାଇଁ ମୋ ସରକାର ପ୍ରଥମ ଥର ପାଇଁ ଏକ ସୁଚିନ୍ତିତ ନିଷ୍ପତ୍ତି ଗ୍ରହଣ କରିଛି, ଯାହାଫଳରେ କେନ୍ଦ୍ର ସମର୍ଥିତ ଯୋଜନା ଓ କାର୍ଯ୍ୟକ୍ରମଗୁଡ଼ିକରେ ଆବଶ୍ୟକ ଅର୍ଥ ବରାଦ ସହ ସମନ୍ୱୟ ରଖି ବଜେଟ ପ୍ରସ୍ତୁତ କରିହେବ ।

୧୫. ମୋ ସରକାର ଏହି ଭଳି କେନ୍ଦ୍ରୀୟ ପାଣ୍ଠିର ଆକାର ଓ ଚତୁର୍ଦ୍ଦଶ ଅର୍ଥ କମିଶନଙ୍କ ସୁପାରିଶ ବାବଦ ପ୍ରାପ୍ୟକୁ ନେଇ ଅନିଶ୍ଚିତତା ଭୋଗିବା ସତ୍ତ୍ୱେ ଭୌତିକ ଓ ଲୌକିକ ପୁଞ୍ଜି ସୃଷ୍ଟି ନିମନ୍ତେ ସାମାଜିକ ଓ ଅର୍ଥନୈତିକ କ୍ଷେତ୍ରରେ ପୁଞ୍ଜି ନିବେଶକୁ ଅଧିକ ଗୁରୁତ୍ୱ ଦେଇ ୨୦୧୫–୧୬ ଆର୍ଥିକ ବର୍ଷ ପାଇଁ ଏକ ବାସ୍ତବବାଦୀ ବଜେଟ୍ ପ୍ରସ୍ତୁତ କରିପାରିଛି । ଏହି ବିଜ୍ଞତା ଆଧାରରେ ଅଗ୍ରସର ହୋଇ ଆମେ ୨୦୧୬–୧୭ ଆର୍ଥିକ ବର୍ଷ ପାଇଁ ଏକ ଅତ୍ୟୁତ୍ତମ ବଜେଟ୍ ଉପସ୍ଥାପନ କରିବା ପାଇଁ ଆମେ ଦୃଢ଼ ନିଶ୍ଚିତ ।

୧୬. ଅର୍ଥନୈତିକ ଓ ସାମାଜିକ କ୍ଷେତ୍ରରେ ପୁଞ୍ଜି ନିବେଶକୁ ଗୁରୁତ୍ୱ ଦେଇ ମୋ ସରକାର ଆଠ ବର୍ଷ ଅନ୍ତରରେ କେନ୍ଦ୍ର ସରକାରଙ୍କ ନିର୍ଦ୍ଧାରିତ ହାରାହାରି ସୀମା ମଧ୍ୟରେ ଖୋଲା ବଜାରରୁ ଋଣ ଉଠାଣ କରିଛି । ଏହି ସମସ୍ତ ୩ହଜାର କୋଟି ଟଙ୍କାକୁ ପୁଞ୍ଜି ନିବେଶରେ ବିନିଯୋଗ କରାଯାଇଛି, ଯାହା ଫଳରେ ମୋଟ ରାଜ୍ୟ ଘରୋଇ ଉତ୍ପାଦରେ ପୁଞ୍ଜି ନିବେଶର ଅଂଶ ୩.୬%କୁ ବୃଦ୍ଧି କରାଯାଇପାରିଛି ।

୧୭. ଅର୍ଥନୈତିକ ମାନ୍ଦାବସ୍ଥା ମୋ ସରକାରର ସମ୍ବଳ ସଂଗ୍ରହ ବୃଦ୍ଧି କରିବାର ସାମର୍ଥ୍ୟକୁ ପ୍ରଭାବିତ କରିଥିଲେ ମଧ୍ୟ ଉତ୍ତମ ରାଜସ୍ୱ ସଂଗ୍ରହ ପଦକ୍ଷେପସମୂହ ଦ୍ୱାରା ଆମେ ବଜେଟ୍ ନିର୍ଦ୍ଧାରିତ ଲକ୍ଷ୍ୟ ପୂରଣ କରିପାରିଛୁ । ମୁଁ ଆନନ୍ଦର ସହ ଆପଣମାନଙ୍କୁ ଜଣାଉଛି ଯେ ରାଜ୍ୟର ନିଜସ୍ୱ ଟିକସ ରାଜସ୍ୱ ୧୭.୪୩% ବୃଦ୍ଧି ପାଇଛି ଏବଂ ଅଣରାଜସ୍ୱ ଆୟରେ ୧୦.୪୦% ଅଭିବୃଦ୍ଧି ଘଟିଛି, ଯାହା ଫଳରେ ଟିକସ ଓ ମୋଟ ରାଜ୍ୟ ଘରୋଇ ଉତ୍ପାଦର ଅନୁପାତ ୬.୩୮%ରେ ପହଞ୍ଚିଛି ।

୧୮. କୃଷି ପ୍ରଧାନ ରାଜ୍ୟ ହୋଇଥିବାରୁ ଏବଂ ରାଜ୍ୟ ଲୋକ ସଂଖ୍ୟାର ପାଖାପାଖି ୬୦ ଶତାଂଶ ଜୀବିକା ନିର୍ବାହ ପାଇଁ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ଏହି କ୍ଷେତ୍ର ଉପରେ ନିର୍ଭରଶୀଳ ଥିବାରୁ କୃଷି ଓଡ଼ିଶାର ସବୁଠୁ ଗୁରୁତ୍ୱପୂର୍ଣ୍ଣ କ୍ଷେତ୍ର ଭାବରେ ରହିଆସିଛି । ମୋ ସରକାର ସର୍ବଦା ଏହି କ୍ଷେତ୍ରର କାର୍ଯ୍ୟକାରିତା ପ୍ରତି ବିଶେଷ ସଂବେଦନଶୀଳ ଏବଂ ଆମ ରାଜ୍ୟର କୃଷକମାନଙ୍କୁ ସହାୟତା ପ୍ରଦାନ ଓ ସଶକ୍ତିକରଣ ପାଇଁ କାର୍ଯ୍ୟ କରିଆସୁଛି । ଏହି କ୍ଷେତ୍ରର ଗୁରୁତ୍ୱକୁ ଉପଲବ୍ଧି କରି ମୋ ସରକାର ସମ୍ବଳ ବଣ୍ଟନ, କୃଷକମାନଙ୍କ ଆବଶ୍ୟକତାକୁ ଅଗ୍ରାଧିକାର ପ୍ରଦାନ ଓ ଉତ୍ପାଦକତା ବୃଦ୍ଧି ଉଦ୍ଦେଶ୍ୟରେ ଏହି କ୍ଷେତ୍ର ପାଇଁ ସ୍ୱତନ୍ତ୍ର ବଜେଟ୍ ଗତ ତିନି ବର୍ଷ ଧରି ପ୍ରସ୍ତୁତ କରିଆସୁଛି ।

୧୯. ରାଜ୍ୟସାରା ବ୍ୟାପକ ଆର୍ଦ୍ରତା ହ୍ରାସଜନିତ ଚାପ ସତ୍ତ୍ୱେ, ଆମେ ଗତ ବର୍ଷର ଖାଦ୍ୟଶସ୍ୟ ଉତ୍ପାଦନକୁ ଅତିକ୍ରମ କରି ଏ ବର୍ଷ ୧୨୦ ଲକ୍ଷ ମେଟ୍ରିକ୍ ଟନ୍‌କୁ ଛୁଇଁ ପାରିଛୁ, ଯେଉଁଥି ପାଇଁ ଏଠାରେ ଉପସ୍ଥିତ ଆମେ ସମସ୍ତେ ଆମ କୃଷକମାନଙ୍କ ଦୃଢ଼ ଉଦ୍ୟମକୁ ପ୍ରଶଂସା କରିବା ଉଚିତ । ଏହା କେବଳ ସମ୍ଭବ ହୋଇପାରିଛି ମୋ ସରକାରଙ୍କର କୃଷକମାନଙ୍କ ଆବଶ୍ୟକତା ପ୍ରତି ତୁରନ୍ତ କାର୍ଯ୍ୟାନୁଷ୍ଠାନ ଯୋଗୁଁ ଏବଂ ବିଗତ ପାଞ୍ଚ ବର୍ଷରେ ଲଗାତାର ଭାବରେ ୪ ଥର ରାଜ୍ୟ ପାଇଥିବା କୃଷିକର୍ମଣ ପୁରସ୍କାର ହେଉଛି ସେମାନଙ୍କ ଉତ୍ସର୍ଗୀକୃତ କାର୍ଯ୍ୟର ସ୍ୱୀକୃତି ।

୨୦. ଏହି କ୍ଷେତ୍ରର ଉତ୍ପାଦକତା ବୃଦ୍ଧି ନିମନ୍ତେ ମୋ ସରକାର ବିହନ ପ୍ରତିବଦଳ ହାରରେ ଅଭିବୃଦ୍ଧି ଘଟାଇଛି ଯାହା ଏବେ ୩୭ ପ୍ରତିଶତରେ ପହଞ୍ଚିଛି ଏବଂ ଦେଶୀ ବିହନର ସୁରକ୍ଷା ସହିତ ଉନ୍ନତ କିସମର ବିହନ ଚାଷୀମାନଙ୍କୁ ଉପଲବ୍ଧ କରାଇବା ଆଦି ଫଳପ୍ରସୂ ପଦକ୍ଷେପମାନ ଗ୍ରହଣ କରୁଛି । କୃଷି ନିବେଶଗୁଡ଼ିକର ଉତ୍ତମ ସଂଯୋଜନା ନିମନ୍ତେ ୨୭ଟି ସ୍ଥାୟୀ ଓ ୧୧ଟି ଭ୍ରାମ୍ୟମାଣ ପରୀକ୍ଷାଗାର ସହାୟତାରେ ସ୍ୱାସ୍ଥ୍ୟପ୍ରଦ ମୃତ୍ତିକା ସୁପରିଚାଳନାକୁ ଯଥାଯଥ ଗୁରୁତ୍ୱ ଦିଆଯାଉଛି । ନୂତନ ଜ୍ଞାନକୌଶଳର ଉପଯୋଗ ଓ ମେସିନ୍‌ଚାଳିତ କୃଷି ଯନ୍ତ୍ରପାତିର ବ୍ୟବହାର ମଧ୍ୟ ଆମ କୃଷି ଉତ୍ପାଦକତା ବୃଦ୍ଧି କାର୍ଯ୍ୟକ୍ରମର ଅଂଶବିଶେଷ ଅଟେ ।

୨୧. ଉଦ୍ୟାନ କୃଷି ପାଇଁ ଆମ ରାଜ୍ୟର ଜଳବାୟୁ ଓ ମୃତ୍ତିକା ଅନୁକୂଳ ହୋଇଥିବାରୁ ଏବଂ ଏହା ଚାଷୀମାନଙ୍କୁ ବେଶୀ ଉପାର୍ଜନ ଦେଉଥିବାରୁ ମୋ ସରକାର ଏହି ସବୁ ଫସଲକୁ ଖରିଫ ଫସଲ ପରିବର୍ତ୍ତେ ଚାଷ କରି ଅମଳ ପରବର୍ତ୍ତୀ କ୍ଷତି ହ୍ରାସ କରିବା ନିମନ୍ତେ ଚାଷୀମାନଙ୍କୁ ପ୍ରବର୍ତ୍ତାଉଛି । ଏହାର ପରିଚାଳନା, ସଂରକ୍ଷଣ ଓ ପରିବହନ ନିମନ୍ତେ ମୋ ସରକାର ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମମାନ ଗ୍ରହଣ କରିଛି । ରାଜ୍ୟର ଆଭ୍ୟନ୍ତରୀଣ ଅଞ୍ଚଳରେ ଏହି ସବୁ ସେବା ପ୍ରଦାନ ନିମନ୍ତେ ଉଦ୍ୟୋଗୀମାନଙ୍କୁ ପ୍ରୋତ୍ସାହିତ କରିବା ଲକ୍ଷ୍ୟରେ ମୋ ସରକାର ଜାତୀୟ ଉଦ୍ୟାନ କୃଷି ମିଶନ ପ୍ରଦତ୍ତ ସହାୟତା ରାଶି ଉପରେ ଅତିରିକ୍ତ ୨୦% ସହାୟତାର ବ୍ୟବସ୍ଥା କରିଛି ।

୨୨. ରାଜ୍ୟର କୃଷକମାନଙ୍କ ମଧ୍ୟରେ କ୍ଷୁଦ୍ର ଏବଂ ନାମମାତ୍ର କୃଷକଙ୍କ ସଂଖ୍ୟା ଯଥେଷ୍ଟ ଅଧିକ ହୋଇଥିବାରୁ ସେହିଭଳି ପ୍ରତ୍ୟେକ ଚାଷୀଙ୍କୁ ସରକାରଙ୍କ ବିଭିନ୍ନ ଯୋଜନା ଏବଂ କାର୍ଯ୍ୟକ୍ରମ ମାଧ୍ୟମରେ ମିଳୁଥିବା ସହାୟତା ହାସଲ କରିବା ପାଇଁ ସଶକ୍ତ ଓ ସମର୍ଥ କରିବା ନିମନ୍ତେ ଗୁରୁତ୍ୱ ପ୍ରଦାନର ଯଥେଷ୍ଟ ଆବଶ୍ୟକତା ରହିଥିବାରୁ ନିକଟରେ ମୋ ସରକାର ଯଥାର୍ଥ ଭାବରେ କୃଷି ବିଭାଗର ନାମକୁ 'କୃଷି ଓ କୃଷକ ସଶକ୍ତିକରଣ' ବିଭାଗ ଭାବରେ ନାମିତ କରିଛି, ଯାହା ଦ୍ୱାରା ବର୍ତ୍ତମାନ ଏକ ପୋଷଣୀୟ ଆଭିମୁଖ୍ୟ ସହିତ କୃଷକମାନଙ୍କ ସାମଗ୍ରିକ ବିକାଶ ପାଇଁ ସେମାନଙ୍କୁ ସଶକ୍ତ କରିବ ।

◆◆◆

୨୩. କୃଷିର ଅଭିବୃଦ୍ଧି ଓ କୃଷକମାନେ ସମ୍ମୁଖୀନ ହେଉଥିବା ପ୍ରତିବନ୍ଧକଗୁଡ଼ିକର ଦୂରୀକରଣ ନିମନ୍ତେ କାର୍ଯ୍ୟପନ୍ଥା ନିର୍ଦ୍ଧାରଣ ପାଇଁ ଆମ ଦେଶର ଅଳ୍ପ କେତେକ ରାଜ୍ୟ ଭଳି ଆମ ରାଜ୍ୟରେ ମଧ୍ୟ ବର୍ତ୍ତମାନ କୃଷି କ୍ୟାବିନେଟ୍ ଗଢ଼ାଯାଇଛି ଏବଂ ଏହି କ୍ୟାବିନେଟ୍‌ର ପ୍ରଥମ ବୈଠକ ଚଳିତ ବର୍ଷ ମାର୍ଚ୍ଚ ୩ ତାରିଖରେ ଅନୁଷ୍ଠିତ ହୋଇଯାଇଛି ।

୨୪. ମତ୍ସ୍ୟ କ୍ଷେତ୍ରର ଅଭିବୃଦ୍ଧି ନିମନ୍ତେ ଆମ ରାଜ୍ୟରେ ୬.୭୮ ଲକ୍ଷ ହେକ୍ଟର ମଧୁର ଜଳ, ୪୮୦ କିଲୋମିଟର ଦୈର୍ଘ୍ୟ ବେଳାଭୂମି ଓ ୪.୧୮ ଲକ୍ଷ ହେକ୍ଟର ଲବଣ ଜଳ ଉତ୍ସ ରହିଛି । ସୁତରାଂ ମୂଲ୍ୟବାନ ବିଦେଶୀ ମୁଦ୍ରା ଅର୍ଜନର ପ୍ରଭୁତ ସାମର୍ଥ୍ୟ ସହିତ ଏହି କ୍ଷେତ୍ରରେ ବ୍ୟବସାୟିକ ସମ୍ଭାବନା ମଧ୍ୟ ବହୁତ ଅଧିକ । ଅଧିକ ଅଗ୍ରାଧିକାର ସହିତ ଏହି କ୍ଷେତ୍ରର ସାମର୍ଥ୍ୟ ବୃଦ୍ଧି କରିବା ଓ ଆଗାମୀ ୫ ବର୍ଷରେ ମତ୍ସ୍ୟ ଉତ୍ପାଦନକୁ ଦୁଇଗୁଣା କରିବା ଲକ୍ଷ୍ୟରେ ମୋ ସରକାର 'ଓଡ଼ିଶା ମତ୍ସ୍ୟ ନୀତି–୨୦୧୫'କୁ ଅନୁମୋଦନ କରିଛି । ଏହି ନୀତି ଆହୁରି ଅଧିକ ଆବଶ୍ୟକୀୟ ଭିତ୍ତିଭୂମି ସୃଷ୍ଟି ତଥା ଅଭିବୃଦ୍ଧି ସହିତ ଏଥିରେ ନିୟୋଜିତ ଲୋକମାନଙ୍କର ଦକ୍ଷତା ଓ ଜ୍ଞାନ ବୃଦ୍ଧି ସହିତ ରାଜ୍ୟରେ ଲୁଣି ଜଳ ଚିଙ୍ଗୁଡ଼ି ଉତ୍ପାଦନ ବୃଦ୍ଧି ଉପରେ ବିଶେଷ ଗୁରୁତ୍ୱ ଆରୋପ କରିଛି ।

୨୫. ପ୍ରାଣୀ ସଂପଦ କ୍ଷେତ୍ରରେ ସ୍ୱାବଲମ୍ୱନଶୀଳତା ହାସଲ କରିବା ସହିତ ରାଜ୍ୟକୁ ଏହି କ୍ଷେତ୍ରରେ ଅଗ୍ରଣୀ ରାଜ୍ୟରେ ପରିଣତ କରିବାକୁ ମଧ୍ୟ ସମାନ ଭାବରେ ନୀତି ନିର୍ଦ୍ଧାରଣ କରାଯାଉଛି । ରାଜ୍ୟରେ ଗୋ–ମହିଷାଦି ପ୍ରାଣୀଧନଙ୍କ ଉନ୍ନତି ଲକ୍ଷ୍ୟରେ ମୋ ସରକାର ଗୋ–ମହିଷାଦି ପ୍ରଜନନ ନୀତି–୨୦୧୫ ଓ କୁକ୍କୁଟ ପାଳନରେ ସ୍ୱାବଲମ୍ୱନଶୀଳ ହେବା ପାଇଁ କୁକ୍କୁଟ ନୀତି–୨୦୧୫ ପ୍ରଣୟନ କରିଛି ।

୨୬. ଭୁବନେଶ୍ୱରରେ ସ୍ୱାସ୍ଥ୍ୟପ୍ରଦ ତଟକା ମାଛ ଯୋଗାଇଦେବା ଲକ୍ଷ୍ୟରେ ମୋ ସରକାର ୨୬ଟି ଅଧିକ 'ଚିଲିକା ଫ୍ରେସ' ବିକ୍ରୟ କେନ୍ଦ୍ର ଖୁବ୍ ଶୀଘ୍ର ଖୋଲିବାକୁ ପ୍ରସ୍ତାବ ରଖିଥିବା ବେଳେ ସାରା ରାଜ୍ୟରେ ୧୦୦ଟି 'ଚିଲିକା ଫ୍ରେସ' ଓ ୧୦୦ଟି 'ଚିକେନ୍ ଫ୍ରେସ' ବିକ୍ରୟ କେନ୍ଦ୍ର ଖୋଲିବାକୁ ଲକ୍ଷ୍ୟ ରଖିଛି ।

୨୭. ମୁଁ ଆପଣମାନଙ୍କୁ ନିର୍ଭରଯୋଗ୍ୟ ପ୍ରତିଶ୍ରୁତି ଦେଇ କହିବାକୁ ଚାହେଁ ଯେ ଆମର ଗ୍ରାମାଞ୍ଚଳ ଅଭିବୃଦ୍ଧିରେ ସମବାୟ ଆନ୍ଦୋଳନ ଏକ ଶକ୍ତିଶାଳୀ ସ୍ତମ୍ଭ ଭାବରେ ସଦାସର୍ବଦା ରହିଥିବ । କୃଷି ଋଣ ଓ ଆନୁଷଙ୍ଗିକ କାର୍ଯ୍ୟ ପାଇଁ ପ୍ରତ୍ୟକ୍ଷ ଭାବରେ ଓ କିଷାନ୍ କ୍ରେଡିଟ୍ କାର୍ଡ ତଥା କିଷାନ୍ କ୍ରେଡିଟ୍ ଗୋଲ୍ଡ କାର୍ଡ ଜରିଆରେ ଋଣ ସହାୟତା ପ୍ରଦାନ ଏବଂ କୃଷକମାନଙ୍କୁ ଶସ୍ୟବୀମା ଯୋଜନାରେ ସୁରକ୍ଷା ପ୍ରଦାନ ନିମନ୍ତେ ସମବାୟ ବିଭାଗ ପ୍ରତ୍ୟାଶୀ କୃଷକ ତଥା ସମାଜର ଅନ୍ୟାନ୍ୟ ଦୁର୍ବଳ ବର୍ଗଙ୍କୁ ସମର୍ଥନ ଯୋଗାଇ ଦେବାରେ ବିଶେଷ ଭୂମିକା ଗ୍ରହଣ କରିଛି । ଅମଳ ପରବର୍ତ୍ତୀ କ୍ଷତି ହ୍ରାସ ଓ କୃଷକମାନଙ୍କୁ ଉତ୍ପାଦର ଅଭାବୀ ବିକ୍ରିରୁ ନିବର୍ତ୍ତାଇବା ପାଇଁ ମୋ ସରକାର କଂକ୍ରିଟ୍ ଧାନଖଳା, ଧାନ ଶୁଖାଇବା ପ୍ରାଙ୍ଗଣ ଓ ଗୋଦାମ ଘର ନିର୍ମାଣ, ଆଧୁନିକ ପଣ୍ୟାଗାର ସୁବିଧା ସୃଷ୍ଟି, ଶୀତଳ ଭଣ୍ଡାର ପୁଂଜ ନିର୍ମାଣ ଏବଂ ସବୁଠୁ ଫଳପ୍ରଦ ସେବା ପ୍ରଦାନ ନିମନ୍ତେ ନେଟୱାର୍କ ମାଧ୍ୟମରେ ସାରା ରାଜ୍ୟରେ ଗୁରୁତ୍ୱପୂର୍ଣ୍ଣ ସଂଯୋଗୀକୃତ ସେବା ସୁବିଧା ଆରମ୍ଭ କରିଛି ।

୨୮. ରାଜ୍ୟର ଅପହଞ୍ଚ ତଥା ଆଦିବାସୀ ଅଧ୍ୟୁଷିତ ବ୍ଲକ୍‌ଗୁଡ଼ିକର କୃଷକ ଏବଂ ଅନ୍ୟ ଲୋକମାନଙ୍କ ପାଖରେ ପହଞ୍ଚିବା ନିମନ୍ତେ ମୋ ସରକାର ଦେଶରେ ପ୍ରଥମ କରି ଏକ 'ଭ୍ରାମ୍ୟମାଣ ବ୍ୟାଙ୍କ' ସୁବିଧା ରାଜ୍ୟର ୧୬ଟି ଜିଲ୍ଲାର ୨୦ଟି ପଛୁଆ ବ୍ଲକ୍‌ରେ ଆରମ୍ଭ କରିଛି ଏବଂ ମୋ ସରକାର ନିଶ୍ଚିତ କରିବାକୁ ଚାହେଁ ଯେ ଓଡ଼ିଶାର ୩୧୪ଟି ଯାକ ବ୍ଲକ୍‌କୁ ଏହିଭଳି ଭ୍ରାମ୍ୟମାଣ ବ୍ୟାଙ୍କର ସୁବିଧା ଯୋଗାଇ ଦିଆଯିବ ଯେଉଁଥିରେ ଏଟିଏମ୍, ସୂଚନା କିଓସ୍କ ଏବଂ ସଂପୂର୍ଣ୍ଣ ବ୍ୟାଙ୍କିଙ୍ଗ ସୁବିଧା ରାଜ୍ୟର ଆଦିବାସୀ ଅଧ୍ୟୁଷିତ ଅଞ୍ଚଳର କୃଷକମାନଙ୍କୁ ମିଳିପାରିବ ।

୨୯. ମୋ ସରକାର କୋର୍ ବ୍ୟାଙ୍କିଙ୍ଗ୍ ବ୍ୟବସ୍ଥା ସେବା ସମ୍ବଳିତ ପ୍ରଦାନ ପାଇଁ ଓଡ଼ିଶା ରାଜ୍ୟ ସମବାୟ ବ୍ୟାଙ୍କ ଓ ଜିଲ୍ଲା କେନ୍ଦ୍ର ସମବାୟ ବ୍ୟାଙ୍କଗୁଡ଼ିକୁ ସଂଯୋଗ ପ୍ରଦାନ ନିମନ୍ତେ ଏକ କୋର୍ ବ୍ୟାଙ୍କିଂ ଡାଟା ମ୍ୟାନେଜ୍‌ମେଣ୍ଟ ସେଣ୍ଟର ମଧ୍ୟ ପ୍ରତିଷ୍ଠା କରିଛି ।

୩୦. ଦେଶର ସମସ୍ତ ବ୍ୟାଙ୍କରେ କୃଷକମାନଙ୍କୁ ସହଜ ଋଣ ଉଠାଣ ସୁବିଧା ଦେବା ପାଇଁ ଓଡ଼ିଶା ରାଜ୍ୟ ସମବାୟ ବ୍ୟାଙ୍କ ଭାରତୀୟ ଜାତୀୟ ପ୍ରଦାନ ନିଗମର ସଦସ୍ୟ ହୋଇ ସାରା ଦେଶରେ ୧.୮୮ ଲକ୍ଷ ଏଟିଏମ୍ ଜରିଆରେ ଉପଯୋଗ ହୋଇପାରୁଥିବା 'ରୁପେ' ଏଟିଏମ୍ ଡେବିଟ୍ କାର୍ଡ କୃଷକମାନଙ୍କୁ ପ୍ରଦାନ କରିଛି ।

୩୧. ଜଳସେଚନ ଓ ଜଳସେଚନ କ୍ଷେତ୍ରର ସୁଦକ୍ଷ ପରିଚାଳନାକୁ ମୋ ସରକାର ସର୍ବୋଚ୍ଚ ପ୍ରାଥମିକତା ଦେଇଛି । ୨୦୧୯ ମସିହା ସୁଦ୍ଧା ଅତିରିକ୍ତ ୧୦ ଲକ୍ଷ ହେକ୍ଟରକୁ ଜଳସେଚନ ସୁବିଧା ସୃଷ୍ଟି ପାଇଁ କାର୍ଯ୍ୟକାରୀ ହେଉଥିବା ବୃହତ୍/ମଧ୍ୟମ/ କ୍ଷୁଦ୍ର ଜଳସେଚନ ପ୍ରକଳ୍ପଗୁଡ଼ିକୁ ସଂପୂର୍ଣ୍ଣ କରିବା, ନିର୍ମାଣ କରାଯାଇଥିବା ଜଳଭଣ୍ଡାର ପ୍ରକଳ୍ପଗୁଡ଼ିକର କେନାଲ ସଂପ୍ରସାରଣ, ଅନ୍ତତଃ ୧୦ ହଜାର ଆଡ଼ିବନ୍ଧ ନିର୍ମାଣ, ଏକ ଲକ୍ଷ ଗଭୀର ନଳକୂପ ସ୍ଥାପନ ଓ ଅଣୁ ଉଠା ନଦୀ ଜଳସେଚନ ପ୍ରକଳ୍ପ ସହିତ ବହୁ ସଂଖ୍ୟାରେ ଉଠା ଜଳସେଚନ ପ୍ରକଳ୍ପକୁ କାର୍ଯ୍ୟକ୍ଷମ କରିବା ନିମନ୍ତେ ଜଳସଂପଦ ବିଭାଗକୁ ନିର୍ଦ୍ଦେଶ ଦିଆଯାଇଛି । ଏହା ହାସଲ କରିବାକୁ ମୋ ସରକାର ଏହି କ୍ଷେତ୍ର ପାଇଁ ଯଥେଷ୍ଟ ପରିମାଣରେ ବଜେଟ୍ ବ୍ୟବସ୍ଥା କରିଛି । ଏହି ଅବସରରେ ମୁଁ ଆନନ୍ଦର ସହ ଆପଣମାନଙ୍କୁ ଜଣାଇବାକୁ ଚାହେଁ ଯେ ଏହି କ୍ଷେତ୍ରରେ ଆମର ଅଗ୍ରଗତି ଏଯାବତ୍ ଯଥେଷ୍ଟ ଉତ୍ସାହଜନକ ରହିଛି ଓ ଧାର୍ଯ୍ୟ ଲକ୍ଷ୍ୟ ପୂରଣ ନିମନ୍ତେ ଆମେ ଦୃଢ଼ ନିଶ୍ଚିତ ।

୩୨. ଗଭୀର ନଳକୂପ କାର୍ଯ୍ୟକ୍ଷମ ଓ ଆଡ଼ିବନ୍ଧ ନିର୍ମାଣ କାର୍ଯ୍ୟକ୍ରମ ପ୍ରତି ଚାଷୀମାନଙ୍କର ରହିଥିବା ବିପୁଳ ଆଗ୍ରହରେ ମୋ ସରକାର ଅତ୍ୟନ୍ତ ଉତ୍ସାହିତ । ଗଭୀର ନଳକୂପକୁ ବିଦ୍ୟୁତ ଯୋଗାଣ ପାଇଁ ୯୪,୫୨୦ ଦରଖାସ୍ତ ମିଳିଥିବା ବେଳେ ୧୪,୮୫୯ ଜଣ ହିତାଧିକାରୀ ସେମାନଙ୍କର ଅଂଶଧନ ପଇଠ କରିଛନ୍ତି । ଏହା ବ୍ୟତୀତ ମୋ ସରକାରଙ୍କର ଏକ ପ୍ରମୁଖ କାର୍ଯ୍ୟକ୍ରମ ମେଗା ଉଠାଜଳସେଚନ ପ୍ରକଳ୍ପ ନିର୍ମାଣ କାର୍ଯ୍ୟ ଧାର୍ଯ୍ୟ ସମୟସୀମା ମୁତାବକ ଆଗେଇ ଚାଲିଛି ଏବଂ ନିକଟରେ ଆମେ କଳାହାଣ୍ଡିରେ ପ୍ରଥମ ପ୍ରକଳ୍ପ କାର୍ଯ୍ୟକ୍ଷମ କରିଛୁ ।

୩୩. ମୁଁ ଖୁସି ଯେ ରାଜ୍ୟର ସାମଗ୍ରିକ ଆଇନଶୃଙ୍ଖଳା ପରିସ୍ଥିତି ଶାନ୍ତିପୂର୍ଣ୍ଣ ରହିଛି । ସାଂପ୍ରଦାୟିକ ସଂହତି ବଜାୟ ରହିବା ସହ ଶିଳ୍ପଜଗତର ବାତାବରଣ ମଧ୍ୟ ଶାନ୍ତିପୂର୍ଣ୍ଣ ରହିଛି । ରେଳ ଓ ରାସ୍ତାରୋକକୁ ମୁକାବିଲା କରିବା ନିମନ୍ତେ 'ଷ୍ଟାଣ୍ଡାର୍ଡ ଅପରେଟିଂ ପ୍ରୋସିଡିଓର' ପ୍ରଣୟନ କରାଯାଇଛି । ବାମପନ୍ଥୀ ଉଗ୍ରବାଦ ଦୃଶ୍ୟପଟ୍ଟରେ ଆଖିଦୃଶିଆ ଉନ୍ନତି ପରିଲକ୍ଷିତ ହୋଇଛି । ଯାଜପୁର, ଢେଙ୍କାନାଳ, କେଉଁଝର, ମୟୂରଭଞ୍ଜ, ଗଜପତି, ଗଞ୍ଜାମ, ନବରଙ୍ଗପୁର, ଦେବଗଡ, ସୁନ୍ଦରଗଡ ଓ ନୟାଗଡ ଜିଲ୍ଲାରେ ଅବସ୍ଥା ଆୟତ୍ତାଧୀନ ରହିଥିବା ବେଳେ ମାଲକାନଗିରି, କୋରାପୁଟ, କେଉଁଝର, ନୟାଗଡ, ବୌଦ୍ଧ, ଅନୁଗୋଳ, ବଲାଙ୍ଗୀର, ବରଗଡ ଓ ରାୟଗଡ ଜିଲ୍ଲାର କେତେକ ଅଞ୍ଚଳରେ ପରିସ୍ଥିତି ଆହ୍ୱାନମୂଳକ ହୋଇ ରହିଛି ।

୩୪. ଚଳିତ ବର୍ଷ ବାମପନ୍ଥୀ ଉଗ୍ରବାଦ ଉପଦ୍ରବ ଏବଂ ସୁରକ୍ଷା କର୍ମଚାରୀ ତଥା ସାଧାରଣ ଲୋକଙ୍କ ପ୍ରାଣହାନି ସଂଖ୍ୟାତ୍ମକ ଦୃଷ୍ଟିରୁ କମିଛି । ରାଜ୍ୟରେ ମାଓବାଦୀମାନଙ୍କ ଆତ୍ମସମର୍ପଣ ବୃଦ୍ଧି ପାଇଛି । ସାମାଜିକ ସୁରକ୍ଷା ପଦକ୍ଷେପଗୁଡ଼ିକ ସମେତ ଆମର ବିକାଶମୂଳକ କାର୍ଯ୍ୟକ୍ରମ ଏସବୁ ଅଞ୍ଚଳରେ ପ୍ରଭାବ ପକାଇ ପାରିଛି ।

୩୫. ଦଣ୍ଡବିଧାନ ହାର ବୃଦ୍ଧି ଲକ୍ଷ୍ୟରେ ଫୌଜଦାରୀ ନ୍ୟାୟ ବ୍ୟବସ୍ଥାକୁ ସୁଦୃଢ଼ କରିବା ନିମନ୍ତେ ଆଇନଗତ କାର୍ଯ୍ୟାନୁଷ୍ଠାନ ବ୍ୟବସ୍ଥାର ପୁନଃତର୍ଜମା କରାଯାଉଛି । ଯୁବ ଆଇନଜୀବୀମାନଙ୍କୁ ପ୍ରୋତ୍ସାହନ ଦେବା ଉଦ୍ଦେଶ୍ୟରେ ପ୍ରସିକ୍ୟୁଟର ନିଯୁକ୍ତି ପାଇଁ ଉଦ୍ଦିଷ୍ଟ ପାଠ୍ୟକ୍ରମକୁ ସଂଶୋଧିତ କରାଯାଇଛି । 'ମାମଲାରୁ ଖଲାସ' ନିର୍ଦ୍ଦେଶଗୁଡ଼ିକୁ ପୁନଃସମୀକ୍ଷା କରି ତ୍ରୁଟି ପରୀକ୍ଷା କରିବା ଓ ଉତ୍ତରଦାୟିତ୍ୱ ନିଶ୍ଚିତ କରିବା ଉଦ୍ଦେଶ୍ୟରେ ରାଜ୍ୟ ଓ ଜିଲ୍ଲାସ୍ତରୀୟ ଷ୍ଟାଣ୍ଡିଂ କମିଟିମାନ କାର୍ଯ୍ୟ କରୁଛି । ମହିଳାଙ୍କ ବିରୋଧରେ ହିଂସା ଓ ଅନ୍ୟାନ୍ୟ ଜଘନ୍ୟ ହିଂସା ଉପରେ ନିର୍ଦ୍ଦିଷ୍ଟ ଭାବରେ ଗୁରୁତ୍ୱ ପ୍ରଦାନ କରାଯାଇଛି ଓ ମହିଳାଙ୍କ ବିରୋଧରେ ହିଂସା ମାମଲାଗୁଡ଼ିକର ସ୍ୱତନ୍ତ୍ର ଅନୁସନ୍ଧାନ ସହିତ କଠୋର ଉତ୍ତରଦାୟିତ୍ୱ ସମ୍ବଳିତ ପଦକ୍ଷେପମାନ ପ୍ରସ୍ତୁତ କରାଯାଇଛି । ମହିଳାମାନଙ୍କ ବିରୋଧରେ ହିଂସା ମାମଲାଗୁଡ଼ିକର ତଦନ୍ତ ନିମନ୍ତେ ୭ଟି ଜିଲ୍ଲାରେ ୭ଟି ଅନୁସନ୍ଧାନ କେନ୍ଦ୍ର ପ୍ରତିଷ୍ଠା କରିବା ପାଇଁ ବିଭିନ୍ନ ପାହ୍ୟାର ପଦବୀ ପୂରଣ ନିମନ୍ତେ ମଞ୍ଜୁରୀ ଦିଆଯାଇଛି ।

୩୬. ସଂଗଠିତ ଅପରାଧ, ଟେଣ୍ଡର ଓ ପରିବହନ ମାଫିଆଙ୍କ ଉପରେ ଆମେ କାର୍ଯ୍ୟାନୁଷ୍ଠାନ ଜୋରଦାର କରିଛୁ । ଇଂଜିନିୟରିଂ କାର୍ଯ୍ୟାଳୟଗୁଡିକରେ ସିସିଟିଭି କ୍ୟାମେରା ସ୍ଥାପନ, ଯନ୍ତ୍ରୀଙ୍କ କାର୍ଯ୍ୟାଳୟ ଓ ଇ–ଟେଣ୍ଡର ପ୍ରକ୍ରିୟାରେ ପୋଲିସ ସହିତ ଘନିଷ୍ଠ ସମନ୍ୱୟ ରକ୍ଷା କରିବା ପରି ଅନେକ ସକ୍ରିୟ ପଦକ୍ଷେପ ଗ୍ରହଣ କରାଯାଇଛି । ଖଣିଜ ପଦାର୍ଥ ପରିବହନ ହେଉଛି ରାଜ୍ୟରେ ଏକ ଗୁରୁତ୍ୱପୂର୍ଣ୍ଣ ଅର୍ଥନୈତିକ କାର୍ଯ୍ୟକଳାପ । ଏପରି କାର୍ଯ୍ୟକଳାପକୁ ଅବ୍ୟାହତ ରଖିବା ଉଦ୍ଦେଶ୍ୟରେ ଆମେ ଧର୍ମଘଟକୁ ନିଷିଦ୍ଧ କରିବା ପାଇଁ 'ଏସମା' ଲାଗୁ କରିଛୁ ।

୩୭. ମୋ ସରକାର ଭାରତୀୟ ପ୍ରତ୍ନତତ୍ତ୍ୱ ସର୍ବେକ୍ଷଣ ସଂସ୍ଥା ଏବଂ ସ୍ଥାପତ୍ୟ ଜ୍ଞାନସଂପନ୍ନ ସଂସ୍ଥାମାନଙ୍କର ସହାୟତାରେ ପୁରୀ ଜଗନ୍ନାଥ ମନ୍ଦିର ନିର୍ମାଣର ସ୍ଥାୟୀତ୍ୱ ସୁନିଶ୍ଚିତ କିରବା ପାଇଁ ସର୍ବଦା ପ୍ରୟାସ କରିଆସିଛି । ମୋ ସରକାର ସେବାୟତମାନଙ୍କର କଲ୍ୟାଣାର୍ଥେ ସ୍ୱାସ୍ଥ୍ୟ, ଗୃହନିର୍ମାଣ ଓ ସେମାନଙ୍କର ସନ୍ତାନ ସନ୍ତତିଙ୍କର ଶିକ୍ଷା କ୍ଷେତ୍ରରେ ବିଭିନ୍ନ ଯୋଜନା କାର୍ଯ୍ୟକାରୀ କରିଛି ।

୩୮. ମାମଲାଗୁଡିକର ତ୍ୱରିତ ଫଇସଲା ନିମନ୍ତେ ମୋ ସରକାର ବିକଳ୍ପ ବିବାଦ ସମାଧାନ ପଦ୍ଧତି ଉପରେ ସର୍ବାଧିକ ଗୁରୁତ୍ୱ ଆରୋପ କରିଛି, ଯାହାକି ମାମଲାକାରୀଙ୍କ ଦ୍ୱାରା ଗ୍ରହଣୀୟ ହେବା ସହିତ ନିୟମିତ କଚେରୀଗୁଡିକର ଚାପ ବିଶେଷ ଭାବରେ ହ୍ରାସ କରିପାରିଛି । ମୋ ସରକାର ମହିଳାମାନଙ୍କ ପ୍ରତି ହେଉଥିବା ଅତ୍ୟାଚାର ସଂପର୍କିତ ମାମଲାଗୁଡିକର ତୁରନ୍ତ ବିଚାର ନିମନ୍ତେ ୧୦ଟି ସ୍ୱତନ୍ତ୍ର ଟ୍ରାକ୍ କୋର୍ଟ ସହିତ ୨୯ଟି ସବ୍‌ଅର୍ଡିନେଟ୍ କୋର୍ଟ ସ୍ଥାପନ ପାଇଁ ପ୍ରସ୍ତାବ ରଖିଛି ।

୩୯. ମୋ ସରକାର ପ୍ରଖ୍ୟାତ ଆଇନଜ୍ଞ ମଧୁବାବୁଙ୍କ ନାମରେ ପ୍ରତି ଗ୍ରାମପଞ୍ଚାୟତରେ 'ମଧୁବାବୁ ଆଇନ ସହାୟତା କେନ୍ଦ୍ର' ପ୍ରତିଷ୍ଠା କରିବାକୁ ଯାଉଛି, ଯାହାଫଳରେ ବଞ୍ଚିତ ଲୋକମାନେ ଯଥାଯଥ ଆଇନ ପରାମର୍ଶ ପାଇବା ସହିତ ସେମାନଙ୍କର ଆଇନଗତ ସମସ୍ୟାର ସମାଧାନ ଗୋଟିଏ ସ୍ଥାନରୁ ପାଇପାରିବେ ।

୪୦. ମୋ ସରକାର ପ୍ରଚଳିତ ରାଜ୍ୟ ଆଇନଗୁଡିକର ସମୀକ୍ଷା କରିବା ସହିତ ଏହି ଆଇନଗୁଡିକରେ ଆବଶ୍ୟକ ସଂଶୋଧନ ତଥା ବର୍ତ୍ତମାନ ଅପ୍ରାସଙ୍ଗିକ ହୋଇପଡିଥିବା କେତୋଟି ଆଇନର ଉଚ୍ଛେଦ ପାଇଁ ପରାମର୍ଶ ଦେବାକୁ ରାଜ୍ୟ ଆଇନ କମିଶନ ଗଠନ କରୁଛି ।

୪୧. ଆଇନଜୀବୀମାନଙ୍କ କଲ୍ୟାଣ ନିମନ୍ତେ ମୋ ସରକାର ରାଜ୍ୟର ଆଇନଜୀବୀ କଲ୍ୟାଣ ପାଣ୍ଠିକୁ ବାର୍ଷିକ ଅନୁଦାନ ୧ କୋଟି ଟଙ୍କାରୁ ୩ କୋଟି ଟଙ୍କାକୁ ବୃଦ୍ଧି କରିବା ପାଇଁ ଘୋଷଣା କରିଛନ୍ତି ।

୪୨. ଲୋକମାନଙ୍କୁ ବିଶେଷ କରି ଅର୍ଥନୈତିକ ଦୁର୍ବଳ ବର୍ଗଙ୍କୁ ସୁଲଭ ଗୃହ ଯୋଗାଣ ମୋ ସରକାରଙ୍କ ପ୍ରମୁଖ ପ୍ରାଥମିକତା । ମୋ ସରକାର ରାଜ୍ୟର ଅର୍ଥନୈତିକ ଦୁର୍ବଳ ବର୍ଗଙ୍କୁ ମୌଳିକ ସୁବିଧା ସହ ସୁଲଭ ଗୃହ ଯୋଗାଇଦେବା ଲକ୍ଷ୍ୟରେ ଏକ ସମର୍ପିତ ମିଶନ ନିର୍ଦ୍ଦେଶାଳୟ ସହ ଓଡ଼ିଶା ସହରାଞ୍ଚଳ ଗୃହ ମିଶନ 'ଆବାସ'ର ଶୁଭାରମ୍ଭ କରିଛି । ମିଶନ ନିର୍ଦ୍ଦେଶାଳୟ କାର୍ଯ୍ୟ କରିବା ଆରମ୍ଭ କରିଛି ଏବଂ ଆଗାମୀ ଆର୍ଥିକ ବର୍ଷରେ ସୁଲଭ ଗୃହ ନିର୍ମାଣ/ବସ୍ତି ଉନ୍ନୟନ ଯୋଜନାରେ ୧,୫୦,୦୦୦ ବାସଗୃହ ନିର୍ମାଣ ପାଇଁ ଆମେ ଲକ୍ଷ୍ୟ ଧାର୍ଯ୍ୟ କରିଛୁ । ଏହି ପ୍ରୟାସକୁ ଫଳପ୍ରଦ ଭାବରେ କାର୍ଯ୍ୟକାରୀ କରାଇବା ପାଇଁ ମୋ ସରକାର 'ସମସ୍ତଙ୍କ ପାଇଁ ଗୃହ' ନୀତିକୁ ଅନୁମୋଦନ କରିଛି ଓ ଏହି ପ୍ରକଳ୍ପଗୁଡିକୁ ପାଣ୍ଠି ଦେବା ପାଇଁ ରାଜ୍ୟ ଗୃହ ନିର୍ମାଣ ପାଣ୍ଠି ଓ ସିଡିପି ଭିତ୍ତିଭୂମି ବିକାଶ ପାଣ୍ଠି ସୃଷ୍ଟି କରିଛି ।

୪୩. ଏହି ପବିତ୍ର ଗୃହକୁ ମୋର ଗତ ଅଭିଭାଷଣରେ ପ୍ରଦତ୍ତ ପ୍ରତିଶ୍ରୁତି ପୂରଣ ନିମନ୍ତେ ମୋ ସରକାର କେନ୍ଦ୍ରୀୟ ଅନୁଦାନପ୍ରାପ୍ତ ମିଶନରେ ଅନ୍ତର୍ଭୁକ୍ତ ନଥିବା ୭୭ ପୌରସଂସ୍ଥାରେ ଓଡ଼ିଶା ସହରାଞ୍ଚଳ ଜୀବିକା ନିର୍ବାହ ମିଶନ ଗଠନ କରି ୧୦ ହଜାର ଯୁବକଯୁବତୀଙ୍କ ଆତ୍ମନିଯୁକ୍ତି ପାଇଁ ଦକ୍ଷତା ବିକାଶର ଲକ୍ଷ୍ୟ ରଖିଛି ।

୪୪. ସହରାଞ୍ଚଳରେ ବାସ କରୁଥିବା ଲୋକମାନଙ୍କୁ ନିରାପଦ ପାନୀୟ ଜଳ ଓ ଉତ୍ତମ ପରିମଳ ସୁବିଧା ଯୋଗାଣକୁ ମୋ ସରକାର ଅଗ୍ରାଧିକାର ଦେଇଛି । ମୋ ସରକାର ୨୪ ପୌରାଞ୍ଚଳର ୯୨ଟି ଜରୁରୀ ସ୍ଥାନ ଚିହ୍ନଟ କରିଛି ଯେଉଁଠି ଖରାଦିନେ ନିରାପଦ ପାନୀୟ ଜଳର ଉତ୍କଟ ଅଭାବ ରହିଛି ଏବଂ ଏହି ସମସ୍ୟାର ସ୍ୱଳ୍ପ ମିଆଦି ତଥା ଦୀର୍ଘ ମିଆଦି ସମାଧାନ ପାଇଁ କାର୍ଯ୍ୟ ଯୋଜନା ପ୍ରଣୟନ କରିଛି । ୬୬ ପୌରାଞ୍ଚଳରେ ସଂକ୍ରମଣ ଓ କ୍ଷରଣପ୍ରବଣ ପୁରୁଣା ପାଇପଲାଇନ୍‌ଗୁଡ଼ିକୁ ବଦଳାଇବା ପ୍ରକ୍ରିୟା ଜାରି ରହିଛି । ଘରୋଇ ସରକାରୀ ଭାଗିଦାରୀରେ ସଫଳତାର ସହ ନଗର ବସ୍ ସେବା ଚଳାଇବା ପରେ ମୋ ସରକାର କୋରାପୁଟ୍–ଜୟପୁର–ସୁନାବେଡ଼ା ଏବଂ ବାଲେଶ୍ୱର–ଭଦ୍ରକ, କଟକ–ଚୌଦ୍ୱାର–ବାଙ୍କୀ ସଂଯୋଗରେ ଏହି ସେବା ଖୁବ୍ ଶୀଘ୍ର ଆରମ୍ଭ କରିବ । ଏହା ସହ ମୋ ସରକାର ସହର ଯୋଜନାରେ ଢାଞ୍ଚାଗତ ପରିବର୍ତ୍ତନ ପ୍ରକ୍ରିୟା ପ୍ରଚଳନ କରୁଛି ଯେଉଁଥିରେ ସହର ଯୋଜନା ଓ ଉନ୍ନୟନ ପ୍ରକ୍ରିୟାରେ ଜମି ମାଲିକମାନଙ୍କୁ ମୂଳ ଅଂଶୀଦାର କରାଯାଉଛି । ଏହା ଆମ ରାଜ୍ୟ ପାଇଁ ଏକ ଗର୍ବର ବିଷୟ ଯେ, ଆମ ରାଜଧାନୀ ଭୁବନେଶ୍ୱର ସାରା ଦେଶରେ ସ୍ମାର୍ଟ ସିଟି ପ୍ରତିଯୋଗିତାରେ ପ୍ରଥମ ସ୍ଥାନ ଅଧିକାର କରିଛି ।

ଭୁବନେଶ୍ୱରକୁ ସ୍ମାର୍ଟ ସିଟି ଭାବରେ ଗଢ଼ିବା ପାଇଁ ଜର୍ମାନ ସରକାର ରାଜ୍ୟର ସହଭାଗୀ ହେବାକୁ ସମ୍ମତି ପ୍ରକାଶ କରିଛି ।

୪୫. ମୋ ସରକାର ବ୍ଲକ୍‌ସ୍ତରରେ ଗ୍ରାମୀଣ ଛାତ୍ରଛାତ୍ରୀମାନଙ୍କୁ ଗୁଣାତ୍ମକ ଇଂରାଜୀ ମାଧ୍ୟମ ଶିକ୍ଷାର ସୁଯୋଗ ଦେବା ପାଇଁ ରାଜ୍ୟର ସମସ୍ତ ବ୍ଲକ୍‌ରେ ୩୧୪ଟି ଆଦର୍ଶ ବିଦ୍ୟାଳୟ ସ୍ଥାପନ କରିଛି । ପ୍ରତି ଜିଲ୍ଲାର ଗୋଟିଏ ବିଦ୍ୟାଳୟରେ ଧନ୍ଦାମୂଳକ ଶିକ୍ଷା ପାଇଲଟ୍ କାର୍ଯ୍ୟକ୍ରମ ଭାବରେ ଆରମ୍ଭ ହେବ । ମୋ ସରକାର ଅଧାରୁ ପାଠ ଛାଡୁଥିବା ପିଲା ଓ ପରିବାରର ଜୀବିକା ନିର୍ବାହରେ ସହାୟତା ଦେବାକୁ ବିଦ୍ୟାଳୟ ଛାଡିଥିବା ପିଲାମାନଙ୍କୁ ଉତ୍ସାହିତ କରିବା ପାଇଁ ରାଜ୍ୟ ମୁକ୍ତ ବିଦ୍ୟାଳୟ ପ୍ରତିଷ୍ଠାନ ସହିତ ପିଲାମାନଙ୍କ ମୌଳିକ ଶିକ୍ଷା ଶେଷ କରିବା ପାଇଁ ୭ଟି ଜିଲ୍ଲାରେ ଅଧ୍ୟୟନ କେନ୍ଦ୍ର ପ୍ରତିଷ୍ଠା ଆରମ୍ଭ କରିଛି । ସ୍କୁଲ ଛାତ୍ରଛାତ୍ରୀମାନଙ୍କୁ ସୁସ୍ଥ ବାତାବରଣରେ ସାଧାରଣ ମଧ୍ୟାହ୍ନ ଭୋଜନ ଯୋଗାଇଦେବା ଉଦ୍ଦେଶ୍ୟରେ ମୋ ସରକାର ମଧ୍ୟାହ୍ନ ଭୋଜନ କାର୍ଯ୍ୟକ୍ରମ ପରିଚାଳନା ନିମନ୍ତେ କେନ୍ଦ୍ରୀଭୂତ ଖାଦ୍ୟରନ୍ଧନ ନୀତି ପ୍ରବର୍ତ୍ତନ କରିଛି ।

୪୬. ଚଳିତ ବର୍ଷ ମୋ ସରକାର ୪,୮୮,୬୩୨ ଛାତ୍ରଛାତ୍ରୀଙ୍କୁ ସାଇକେଲ, ୨,୮୧,୫୯,୪୨୪ ଛାତ୍ରଛାତ୍ରୀଙ୍କୁ ପାଠ୍ୟ ପୁସ୍ତକ, ୪୯,୨୯,୯୩୫ ଛାତ୍ରଛାତ୍ରୀଙ୍କୁ ବିଦ୍ୟାଳୟ ୟୁନିଫର୍ମ ପ୍ରଦାନ କରିବା ସହ ପ୍ରାଥମିକ ଓ ଉଚ୍ଚପ୍ରାଥମିକ ଛାତ୍ରଛାତ୍ରୀଙ୍କୁ ବୃତ୍ତି ଆକାରରେ ୧୨.୧୭ କୋଟି ଟଙ୍କା, ମାଧ୍ୟମିକସ୍ତରରେ ଛାତ୍ରଛାତ୍ରୀଙ୍କୁ ୭.୩୯ କୋଟି ଟଙ୍କା ବଣ୍ଟନ କରିଛି ଏବଂ ପଠାଣି ସାମନ୍ତ ଗଣିତ ପ୍ରତିଭା ବୃତ୍ତି ବାବଦକୁ ୨.୫୦ କୋଟି ଟଙ୍କା ପ୍ରଦାନ କରିଛି ।

୪୭. ଓଡ଼ିଶା ଆମ ଦେଶର ଜ୍ଞାନ କେନ୍ଦ୍ର ଭାବରେ ପ୍ରକଟିତ ହେବାର ସାମର୍ଥ୍ୟ ରଖିଛି । ମୋ ସରକାର ତିନିଗୋଟି ନୂତନ ବିଶ୍ୱବିଦ୍ୟାଳୟ ସ୍ଥାପନ କରିଛି, ଦ୍ୱାଦଶ ଓ ତ୍ରୟୋଦଶ ଯୋଜନାରେ ରାଜ୍ୟର ପଛୁଆ ଅଞ୍ଚଳରେ ୮ଟି ନୂଆ ଆଦର୍ଶ ମହାବିଦ୍ୟାଳୟ ପ୍ରତିଷ୍ଠା ନିମନ୍ତେ ରାଷ୍ଟ୍ରୀୟ ଉଚ୍ଚତର ଶିକ୍ଷା ଅଭିଯାନକୁ ୪୦% ଅଂଶ ଯୋଗାଇଦେବାକୁ ସମ୍ମତି ପ୍ରଦାନ କରିଛି ଏବଂ ଛାତ୍ରଛାତ୍ରୀମାନଙ୍କର ବ୍ୟବହାର ଉପଯୋଗୀ ଦକ୍ଷତା ବୃଦ୍ଧି ନିମନ୍ତେ ୯୮ଟି ଭାଷା ତଥା ଯୋଗାଯୋଗ ଗବେଷଣାଗାର ସୃଷ୍ଟି କରିଛି ।

୪୮. 'ବିଜୁ ଯୁବ ସଶକ୍ତିକରଣ ଯୋଜନା'ରେ +୨ ଉତ୍ତୀର୍ଣ୍ଣ ୧୫ ହଜାର ମେଧାବୀ ଛାତ୍ରଛାତ୍ରୀମାନଙ୍କୁ ପ୍ରତି ବର୍ଷ ମାଗଣାରେ ଲାପ୍‌ଟପ୍ ଯୋଗାଣ କାର୍ଯ୍ୟକ୍ରମ ଚାଲିଛି ଓ ତା' ସହିତ ରାଜ୍ୟର ମହାବିଦ୍ୟାଳୟ ଛାତ୍ରୀମାନଙ୍କୁ ଆତ୍ମରକ୍ଷା କୌଶଳ ପ୍ରଶିକ୍ଷଣ କାର୍ଯ୍ୟକ୍ରମ ହାତକୁ ନିଆଯାଇଛି । ଆହୁରି ମଧ୍ୟ ଅଧିକ ସ୍ୱଚ୍ଛତା ଆଣିବା ଲକ୍ଷ୍ୟରେ ଆମେ ପରୀକ୍ଷା ପଦ୍ଧତିର ପୁନର୍ବିନ୍ୟାସ କରୁଛୁ ଏବଂ ପରିବର୍ତ୍ତିତ ସମୟ ସହ ତାଳ ଦେଇ ପାଠ୍ୟକ୍ରମ ସଂଶୋଧନ କରୁଛୁ । ଚଳିତ ଆର୍ଥିକ ବର୍ଷରେ ଜାନୁଆରୀ ମାସ ସୁଦ୍ଧା ମୋ ସରକାର ବିଭିନ୍ନ ସ୍ତରରେ ଅଧ୍ୟୟନରତ ପ୍ରାୟ ୨୦ ହଜାର ଛାତ୍ରଛାତ୍ରୀଙ୍କୁ ୨୨କୋଟି ଟଙ୍କାର ବୃତ୍ତି ବିତରଣ କରିଛି ।

୪୯. ତୃଣମୂଳସ୍ତରରେ ବିଜ୍ଞାନକୁ ଲୋକପ୍ରିୟ କରାଇବା ନିମନ୍ତେ ମୋ ସରକାର ଖୁବ୍ ନିକଟରେ ବରଗଡ ଜିଲ୍ଲାରେ ଏକ ଉପ-ଆଞ୍ଚଳିକ ବିଜ୍ଞାନ କେନ୍ଦ୍ର ପ୍ରତିଷ୍ଠା କରିଛି ଏବଂ ରାଜ୍ୟର ଅନ୍ୟ ଅଞ୍ଚଳରେ ଏହିପରି କେନ୍ଦ୍ର ପ୍ରତିଷ୍ଠା ପାଇଁ ଆମର ଯୋଜନା ରହିଛି । ବିକଳ୍ପ ଶକ୍ତି ଉତ୍ସର ବ୍ୟବହାରକୁ ବ୍ୟାପକ ପ୍ରୋତ୍ସାହନ ଦିଆଯାଉଛି ଯେଉଁଥିରେ ମୋ ସରକାର ୪୩୪ ବାୟୋଗ୍ୟାସ୍ ପ୍ଲାଣ୍ଟ ସ୍ଥାପନ ସହ ୨୩୮୬ ବିଦ୍ୟାଳୟକୁ ୪୬୭୩ ଚୁଲା ଯୋଗାଇ ଦେଇଛି । ବଲାଙ୍ଗୀର ଜିଲ୍ଲାରେ ୨୫ ମେଗାୱାଟ୍ ଗ୍ରୀଡ୍ ସଂଯୁକ୍ତ ସୌର ପ୍ରକଳ୍ପ କାର୍ଯ୍ୟକ୍ଷମ କରିବା ସାଙ୍ଗକୁ ମୋ ସରକାର କେନ୍ଦ୍ର ସରକାରଙ୍କ ସହାୟତାରେ କ୍ଷୁଦ୍ର ଜଳସେଚନ ଓ ପାନୀୟ ଜଳ ଯୋଗାଣ ଯୋଜନାକୁ ସୌର ଶକ୍ତି ଯୋଗାଇଦେବ । ମୁଁ ଅତି ଆନନ୍ଦର ସହ ସୂଚାଇ ଦେବାକୁ ଚାହେଁ ଯେ ମୋ ସରକାର ଖୁବ୍ ଶୀଘ୍ର ଦ୍ୱିତୀୟ ପ୍ଲାନେଟୋରିୟମ୍ ବୁର୍ଲାଠାରେ ପ୍ରତିଷ୍ଠା କରୁଛି । ଉତ୍ତମ ରୂପେ ସଂଗଠିତ କରିବା ଓ ସୃଷ୍ଟି ହେଉଥିବା ବିଶାଳ ତଥ୍ୟାବଳୀକୁ ବିଭିନ୍ନ ସରକାରୀ କାର୍ଯ୍ୟକ୍ରମରେ ବ୍ୟବହାର ନିମନ୍ତେ ମୋ ସରକାର 'ଓଡ଼ିଶା ରାଜ୍ୟ ତଥ୍ୟ ନୀତି-୨୦୧୫' ପ୍ରଣୟନ କରିଛି ।

୫୦. ଶାସନର ସବୁସ୍ତରରେ ସୂଚନା ପ୍ରଯୁକ୍ତିର ଉପଯୋଗଜନିତ ସୁବିଧା ନାଗରିକମାନଙ୍କୁ ପ୍ରାପ୍ତ ହେବା ସଂପର୍କରେ ମୋ ସରକାର ବହୁ ଆଗରୁ ହୃଦୟଙ୍ଗମ କରିଛି ଏବଂ ମୋ ସରକାର ଓଡ଼ିଶାକୁ ସଂପୂର୍ଣ୍ଣ ଇ-ଶାସିତ ରାଜ୍ୟରେ ପରିଣତ କରିବାକୁ ବିଶେଷ ଉଦ୍ୟମ କରିଆସୁଛି । ଆଗାମୀ ଦିନରେ ଆମ ପ୍ରୟାସର ଉଦ୍ଦେଶ୍ୟ ସାଧନର ଉପାୟ ଭାବରେ ଏହି କ୍ଷେତ୍ର ଦ୍ୱାରା ପୁଂଜି ଆକର୍ଷଣ, ବିଶ୍ୱସ୍ତରୀୟ ଅନୁଷ୍ଠାନମାନଙ୍କର ସୃଷ୍ଟି, ଓଡ଼ିଶାକୁ ଡିଜିଟାଲ୍‌ସଶକ୍ତ ରାଜ୍ୟ କରିବା ନିମନ୍ତେ ସହାୟତା ଲକ୍ଷ୍ୟରେ ପ୍ରତିଭାପୁଂଜ ସୃଷ୍ଟି ଓ ଜ୍ଞାନଭିତ୍ତିକ ଅର୍ଥନୀତି ମୋ ସରକାର ପାଇଁ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ।

୫୧. ମୋ ସରକାର ରାଜ୍ୟରେ ଟେଲିକମ୍, ଇଲେକ୍ଟ୍ରୋନିକ୍ସ, ସୂଚନା ପ୍ରଯୁକ୍ତି ଓ ସୂଚନା ପ୍ରଯୁକ୍ତି ସମର୍ଥିତ ସେବା କ୍ଷେତ୍ରଗୁଡିକର ବିକାଶ ଏବଂ ଆସନ୍ତା ୨୦ ବର୍ଷରେ ଓଡ଼ିଶାର ସାମଗ୍ରିକ ଉନ୍ନତି ନିମନ୍ତେ ଭିଜନ୍ ଡକ୍ୟୁମେଣ୍ଟ 'ଭିଜନ ୨୦୩୬' ପାଇଁ କାର୍ଯ୍ୟ କରିବାକୁ ଟେଲିକମ୍ ମହାବିଦ୍ୱାନ ସାମ୍ ପିଟ୍ରୋଡାଙ୍କୁ ବୈଷୟିକ ପରାମର୍ଶଦାତା ଭାବରେ ଗ୍ରହଣ କରିଛି ।

୫୨. ଓଡ଼ିଶାରେ ଉପଲବ୍ଧ ବିଭିନ୍ନ ପ୍ରକାରର ଉଚ୍ଚମାନର ଖଣିଜ ସଂପଦ ଖଣିଭିତ୍ତିକ ଶିଳ୍ପ କ୍ଷେତ୍ରକୁ ଅଭୂତପୂର୍ବ ସ୍ତରର ପୁଞ୍ଜି ନିବେଶ ଆକର୍ଷିତ କରିଛି । ଏହି ପୁଞ୍ଜି ନିବେଶକୁ ଅର୍ଥନୀତିର ବିକାଶ ପାଇଁ କାର୍ଯ୍ୟକାରୀ ଶିଳ୍ପରେ ପରିଣତ କରିବା ଓ ନିଯୁକ୍ତି ସୁଯୋଗ ସୃଷ୍ଟି କରିବା ମୋ ସରକାର ପାଇଁ ବଡ ଆହ୍ୱାନ ହୋଇଛି । ଏହି ଭବ୍ୟ ଗୃହକୁ ମୁଁ ଆନନ୍ଦର ସହ ଜଣାଉଛି ଯେ ମୋ ସରକାରଙ୍କ ଖଣି ଓ ଇସ୍ପାତ ବିଭାଗ ଅନେକ ନୀତି, ମାର୍ଗଦର୍ଶିକା ଓ ଆଦେଶାବଳୀ ଜାରି କରି ଖଣି କ୍ଷେତ୍ରର କାର୍ଯ୍ୟକୁ ସୁସଂଗଠିତ କରିବାକୁ ସକ୍ଷମ ହୋଇଛି । ଆହୁରି ମଧ୍ୟ ଓଡ଼ିଶାରେ ଗଢି ଉଠୁଥିବା ଇସ୍ପାତ ଶିଳ୍ପର ଚାହିଦା ପୂରଣ ନିମନ୍ତେ ମୋ ସରକାର ଖଣି ଓ ଇସ୍ପାତ ବିଭାଗରେ ଏକ ଉତ୍ସର୍ଗୀକୃତ ନିର୍ଦ୍ଦେଶାଳୟ ପ୍ରତିଷ୍ଠା ପାଇଁ ନିଷ୍ପତ୍ତି ନେଇଛି । ମୁଁ ନିଶ୍ଚିତ ଯେ ପ୍ରସ୍ତାବିତ ନିର୍ଦ୍ଦେଶାଳୟ ଶିଳ୍ପ ପାଇଁ ସୁଗମ ହେବ ଓ ତା'ର ଅଭିବୃଦ୍ଧି ପାଇଁ ପ୍ରତିବନ୍ଧକମୁକ୍ତ ପଥ ପ୍ରସ୍ତୁତ କରିବ ।

୫୩. ମୋ ସରକାର ଓଡ଼ିଶା ଜିଲ୍ଲା 'ଖଣିଜଦ୍ରବ୍ୟ ପ୍ରତିଷ୍ଠାନ ନିୟମାବଳୀ-୨୦୧୫' ପ୍ରଣୟନ କରିବା ସହ ରାଜ୍ୟର ୩୦ଟି ଜିଲ୍ଲାରେ ଜିଲ୍ଲା ଖଣିଜ ପ୍ରତିଷ୍ଠାନମାନ ଗଠନ କରିଛି ଯେଉଁଥିରେ ଶିଳ୍ପଠାରୁ ବାଧ୍ୟତାମୂଳକ ଅର୍ଥଦାନରେ ଏକ ସମର୍ପିତ ପାଣ୍ଠି ସୃଷ୍ଟି କରାଯିବ ଏବଂ ଏହା ଖଣି ପ୍ରଭାବିତ ଅଞ୍ଚଳର ବିକାଶରେ ଉପଯୋଗ କରାଯିବ । ମୋ ସରକାର ଖଣିଜ ଦ୍ରବ୍ୟର ସମୁଚିତ ଆକଳନ ଏବଂ ଏହି ପ୍ରାକୃତିକ ସଂପଦର ସର୍ବୋତ୍ତମ ଉପଯୋଗ ନିମନ୍ତେ ଓଡ଼ିଶା ଖଣିଜ ଦ୍ରବ୍ୟ ଅନ୍ୱେଷଣ ନୀତି ପ୍ରକାଶିତ କରିଛି ।

୫୪. ୨୦୧୫-୧୬ ଆର୍ଥିକ ବର୍ଷରେ ମୋ ସରକାରର ଭୂତତ୍ତ୍ୱ ନିର୍ଦ୍ଦେଶାଳୟ, ଝାରସୁଗୁଡା, ଅନୁଗୋଳ, ସୁନ୍ଦରଗଡ, କେନ୍ଦୁଝର, ମୟୂରଭଞ୍ଜ, ଢେଙ୍କାନାଳ, କଳାହାଣ୍ଡି, ରାୟଗଡ, ପୁରୀ ଓ ବୌଦ୍ଧ ଜିଲ୍ଲାରେ ବିଭିନ୍ନ ଖଣିଜ ଦ୍ରବ୍ୟ ଯଥା କୋଇଲା, ଲୁହାପଥର, ମାଙ୍ଗାନିଜ୍, ରତ୍ନପଥର, ଗ୍ରାଫାଇଟ୍, ଭାରୀ ଖଣିଜଦ୍ରବ୍ୟ ଏବଂ ବିଭିନ୍ନ ଆକୃତିର ପଥର ପାଇଁ ୧୧ଟି ଅନ୍ୱେଷଣ

କାର୍ଯ୍ୟକ୍ରମ ହାତକୁ ନେଇଛି । ରାୟଗଡ ଜିଲ୍ଲାର ପଂଚୁବଣି ଆଖପାଖ ୨୫ ବର୍ଗ କିଲୋମିଟର ଅଞ୍ଚଳରେ ଗ୍ରାଫାଇଟ୍ ପାଇଁ ଅନ୍ୱେଷଣ ଜାରି ରହିଛି ।

୫୫. ଆମେ ଆମ ରାଜ୍ୟରେ ବ୍ୟବସାୟ ସହଜସାଧ୍ୟ ପରିବେଶରେ ଉନ୍ନତି ଆଣିବାକୁ ତଥା ଅଗ୍ରଣୀ ଶିଳ୍ପରାଜ୍ୟ ଭାବରେ ପ୍ରତିଷ୍ଠିତ ହେବାକୁ ଦୃଢ ସଂକଳ୍ପବଦ୍ଧ ।

ଶିଳ୍ପ ଓ ବାଣିଜ୍ୟ ଗୋଷ୍ଠୀଙ୍କ ଦ୍ୱାରା ପ୍ରକାଶିତ ଆଶା ଆକାଂକ୍ଷାକୁ ବିଚାରକୁ ନେଇ ମୋ ସରକାର ନିକଟରେ ନୂଆ ଶିଳ୍ପ ନୀତି ସଂକଳ୍ପ-୨୦୧୫ ପ୍ରଣୟନ କରିଛନ୍ତି । ଯେଉଁ କ୍ଷେତ୍ରରେ ଓଡ଼ିଶା ତୁଳନାତ୍ମକ ଭାବରେ ସୁବିଧାଜନକ ଅନୁପମ ସ୍ଥିତିରେ ଅଛି ତାହାକୁ ଅଗ୍ରାଧିକାର ଦେବା ସହିତ ନୂତନ ନୀତିରେ ଓଡ଼ିଶାକୁ ଉଚ୍ଚ ଅଭିବୃଦ୍ଧି ସ୍ତରକୁ ନେବାର ଲକ୍ଷ୍ୟ ପୋଷଣ କରାଯାଇଛି । ଗୁଣାତ୍ମକ ଭିତ୍ତିଭୂମିର ଉପଲବ୍ଧି, ଦ୍ରୁତ ଜମି ଆବଣ୍ଟନ ନିମନ୍ତେ ଭୂମି ବ୍ୟାଙ୍କ୍ ପ୍ରତିଷ୍ଠା ସହିତ ଏହି ନୂତନ ନୀତି ଯଥାର୍ଥ କ୍ଷମତା ଓ ଦାୟିତ୍ୱ ରହିଥିବା ଉପଯୁକ୍ତ ତଥା କ୍ଷମତାପନ୍ନ ଅନୁଷ୍ଠାନ ପ୍ରତିଷ୍ଠା କରିବା ସମେତ ସମସ୍ତ ସମ୍ଭାବ୍ୟ ପ୍ରତିବନ୍ଧକ ଦୂର କରିବ ।

୫୬. ସୂଚନା-ଯୋଗାଯୋଗ-ପ୍ରଯୁକ୍ତି, ଖାଦ୍ୟ ପ୍ରକ୍ରିୟାକରଣ, ଅଣୁ, କ୍ଷୁଦ୍ର ଓ ମଧ୍ୟମ ଉଦ୍ୟୋଗ ଓ ପର୍ଯ୍ୟଟନ କ୍ଷେତ୍ରରେ ସ୍ୱତନ୍ତ୍ର ନୀତି ପ୍ରଣୟନ, ଇଲେକ୍ଟ୍ରୋନିକ୍ସ ଉତ୍ପାଦନର ବିକାଶ ଉପରେ ସ୍ୱତନ୍ତ୍ର ଗୁରୁତ୍ୱ ପ୍ରଦାନ ସାଙ୍ଗକୁ ବ୍ୟାପକ ପୁଞ୍ଜି ନିବେଶ ହୋଇଥିବା ତିନିଗୋଟି ଅଞ୍ଚଳ କଳିଙ୍ଗନଗର, ପାରାଦୀପ ଓ ଧାମରାର ବିକାଶ ହେତୁ ମୋ ରାଜ୍ୟ ଏବେ ପୁଞ୍ଜିନିବେଶକାରୀମାନଙ୍କର ସର୍ବାଧିକ ପସନ୍ଦର ଲକ୍ଷ୍ୟସ୍ଥଳ ଭାବରେ ବିବେଚିତ ହୋଇଛି । ମୋ ରାଜ୍ୟ ଅଗ୍ରାଧିକାର ଭିତ୍ତିରେ ପୁଞ୍ଜି ନିବେଶକୁ ପ୍ରୋତ୍ସାହିତ କରିବା ଲକ୍ଷ୍ୟରେ ଅନେକ ସଂଖ୍ୟାରେ କ୍ଷେତ୍ର ନିର୍ଦ୍ଦିଷ୍ଟ ପାର୍କମାନଙ୍କର ବିକାଶ କରୁଛି ।

୫୭. ଆମେ ଟିଆଇଇ ସିଲିକନ୍ ଭ୍ୟାଲି ସହିତ ଏକ ଗୁରୁତ୍ୱପୂର୍ଣ୍ଣ ସହଭାଗିତା କରିଛୁ ଏବଂ ଷ୍ଟାର୍ଟ ଅପ୍ ଅନୁକୂଳ ପରିବେଶକୁ ତ୍ୱରାନ୍ୱିତ କରିବା ଲକ୍ଷ୍ୟରେ ରାଜ୍ୟ ପାଇଁ ଏକ ସ୍ୱତନ୍ତ୍ର ଷ୍ଟାର୍ଟ ଅପ୍ ନୀତି ଆଣିବାକୁ ଯାଉଛୁ । ଏହା ସହିତ ଆମ ରାଜ୍ୟରେ ନବଉଦ୍ୟୋଗୀ, ଗତିଶୀଳ ଉଦ୍ୟୋଗୀ ଏବଂ ଷ୍ଟାର୍ଟ ଅପ୍ ଉଦ୍ୟୋଗୀମାନଙ୍କ ନିମନ୍ତେ ୦.୫ ନିୟୁତ ବର୍ଗଫୁଟର ତତ୍କାଳ ଉପଲବ୍ଧ ଭିତ୍ତିଭୂମିର ସୁବିଧା କରାଯାଇଛି ।

୫୮. ଭାରତର ବୃହତ ଇସ୍ପାତ୍ କାରଖାନା ଟାଟାଷ୍ଟିଲ କଳିଙ୍ଗ ନଗରରେ କାର୍ଯ୍ୟକ୍ଷମ ହେବା ଫଳରେ ମୋ ରାଜ୍ୟ ପ୍ରତି ପୁଞ୍ଜିନିବେଶକାରୀଙ୍କ ବିଶ୍ୱାସ ଦୃଢୀଭୂତ ହୋଇଛି ଏବଂ ଏହା ସହିତ ଆମର ପୁଞ୍ଜିନିବେଶ ଅନୁକୂଳ ନୀତି ଓ ବ୍ୟବସାୟିକ ସହଜସାଧ୍ୟତା ଢାଞ୍ଚା ମୋ ରାଜ୍ୟକୁ ଏକ ପ୍ରତିଦ୍ୱନ୍ଦ୍ୱିତାମୂଳକ ଏବଂ ଆକର୍ଷଣୀୟ 'ପୂର୍ବ ଭାରତର ଉତ୍ପାଦନ ହବ୍' ଭାବରେ ପ୍ରତିଷ୍ଠିତ କରିଛି ।

୫୯. ମୁଁ ଆନନ୍ଦର ସହିତ ଏହି ଭବ୍ୟ ଗୃହର ସଦସ୍ୟମାନଙ୍କ ଦୃଷ୍ଟି ଆକର୍ଷଣ କରିବାକୁ ଚାହୁଁଛି ଯେ ମୁମ୍ବାଇରେ ଆୟୋଜିତ 'ମେକ୍ ଇନ୍ ଇଣ୍ଡିଆ' ପୁଞ୍ଜିନିବେଶକାରୀ ସମ୍ମିଳନୀରେ ମୋ ରାଜ୍ୟ ୭୦ ହଜାର କୋଟି ଟଙ୍କାରୁ ଉର୍ଦ୍ଧ୍ୱ ପୁଞ୍ଜି ଆକର୍ଷଣ କରିପାରିଛି ଯାହାର ବୃହତ୍ ଅଂଶ ଅଣ-ଖଣିଜ କ୍ଷେତ୍ରରେ ରହିଛି ।

୬୦. ଅଣୁ, କ୍ଷୁଦ୍ର ଓ ମଧ୍ୟମ ଉଦ୍ୟୋଗ କ୍ଷେତ୍ର ବିପୁଳ ଭାବରେ ମୂଲ୍ୟଯୁକ୍ତ କରିବା ସହିତ ବ୍ୟାପକ ସ୍ଥାନୀୟ ନିଯୁକ୍ତି ସୃଷ୍ଟି କରିଥାଏ । ମୋ ସରକାର ଏହି କ୍ଷେତ୍ରକୁ ପ୍ରୋତ୍ସାହିତ କରିବାକୁ ଅନେକ ଉପଯୁକ୍ତ ପଦକ୍ଷେପ ନେଇଛି । ଅଣୁ, କ୍ଷୁଦ୍ର ଓ ମଧ୍ୟମ ଉଦ୍ୟୋଗ କ୍ଷେତ୍ରର ଅଭିବୃଦ୍ଧି ପାଇଁ ଅନୁକୂଳ ପରିବେଶ ସୃଷ୍ଟି ଓ ତଦାରଖ ନିମନ୍ତେ ଏକ ନୂତନ ବିଭାଗ ସୃଷ୍ଟି ମୋ ସରକାରର ଅନ୍ୟତମ ସାହସିକ ପଦକ୍ଷେପ ।

୬୧. ଏକ ସମର୍ପିତ ଅଣୁ, କ୍ଷୁଦ୍ର ଓ ମଧ୍ୟମ ଉଦ୍ୟୋଗ ବିକାଶ ନୀତି ୨୦୦୯ ପ୍ରଣୟନ କରିବାରେ ଦେଶରେ ଆମେ ଏକ ଅଗ୍ରଣୀ ରାଜ୍ୟ ଯେଉଁଥିରେ ପ୍ରମୁଖ ବିଷୟ ଯଥା ଭିତ୍ତିଭୂମି, ଋଣ, ପ୍ରଯୁକ୍ତି ବିଦ୍ୟା ଓ ବିପଣନକୁ ଅଗ୍ରାଧିକାର ଦିଆଯାଇଛି ।

ମୋ ସରକାର ମଧ୍ୟ ଖାଦ୍ୟ ପ୍ରକ୍ରିୟାକରଣକୁ ବିଶେଷ ଭାବରେ ପ୍ରୋତ୍ସାହିତ କରିବା ଓ ରପ୍ତାନୀ ଅଭିବୃଦ୍ଧି ପାଇଁ 'ଓଡ଼ିଶା ଖାଦ୍ୟ ପ୍ରକ୍ରିୟାକରଣ ନୀତି ୨୦୧୩' ଓ 'ଓଡ଼ିଶା ରପ୍ତାନୀ ନୀତି ୨୦୧୪' ପ୍ରଣୟନ କରିଛି ।

୬୨. ବର୍ତ୍ତମାନ ସୁଦ୍ଧା ୭ହଜାର ୯୦୦ କୋଟି ଟଙ୍କା ବିନିଯୋଗରେ ୧ ଲକ୍ଷ ୬୦ ହଜାର ଅଣୁ, କ୍ଷୁଦ୍ର ଓ ମଧ୍ୟମ ଉଦ୍ୟୋଗ ୟୁନିଟ୍ ପ୍ରତିଷ୍ଠା ହୋଇଛି, ଯାହା ମୋ ରାଜ୍ୟର ୮.୫ ଲକ୍ଷରୁ ଉର୍ଦ୍ଧ୍ୱ ଯୁବକଯୁବତୀମାନଙ୍କୁ ନିଯୁକ୍ତି ସୁବିଧା ଯୋଗାଇ ଦେବାରେ ପ୍ରମୁଖ ଭୂମିକା ଗ୍ରହଣ କରିଛି । ମୋ ସରକାର ୧ଲକ୍ଷ ୧ହଜାର ୮୧୫ ଯୁବକଯୁବତୀଙ୍କ ନିମନ୍ତେ ନିଯୁକ୍ତି ସୁଯୋଗ ସୃଷ୍ଟି ସହ ୩୨ହଜାର ୯୩୮ ୟୁନିଟ୍ ପ୍ରତିଷ୍ଠା ପାଇଁ ଆନୁଷଙ୍ଗିକ ସୁବିଧା ସୁଯୋଗ ଯୋଗାଇ ଦେଇଛନ୍ତି ।

୬୩. ମୋ ସରକାର ଆସନ୍ତା ୫ ବର୍ଷରେ ୪ ଲକ୍ଷରୁ ଉର୍ଦ୍ଧ୍ୱ ନିଯୁକ୍ତି ସାମର୍ଥ୍ୟ ଥିବା ୧ଲକ୍ଷ ୫୦ ହଜାର ଅଣୁ, କ୍ଷୁଦ୍ର ଓ ମଧ୍ୟମ ଉଦ୍ୟୋଗ ୟୁନିଟ୍ ସ୍ଥାପନ ପାଇଁ ଉଚ୍ଚାଭିଳାଷୀ ଲକ୍ଷ୍ୟ ଧାର୍ଯ୍ୟ କରିଛି । ଏହି କ୍ଷେତ୍ରର ଉନ୍ନତି ଓ ଅଭିବୃଦ୍ଧି ପାଇଁ ଏକ ଅନୁକୂଳ ପରିବେଶ ସୃଷ୍ଟି କରାଇବା ନିମନ୍ତେ ଆବଶ୍ୟକ ଏକ ସୁସଂହତ ପ୍ରକ୍ରିୟା ପ୍ରତିଷ୍ଠା ଲକ୍ଷ୍ୟରେ ମୋ ସରକାର ରପ୍ତାନୀ ବିକାଶ ଓ ବିପଣନ ନିର୍ଦ୍ଦେଶାଳୟ, ଓଡ଼ିଶା କ୍ଷୁଦ୍ର ଶିଳ୍ପ ନିଗମ ଓ ଓଡ଼ିଶା ରାଜ୍ୟ ଅର୍ଥ ନିଗମର ସଶକ୍ତିକରଣ କରୁଛି ।

୬୪. ଜନସଂଖ୍ୟାଜନିତ ସୁବିଧାର ବାସ୍ତବ ଉପଯୋଗ କରିବା ନିମନ୍ତେ ଆମ ଯୁବକଯୁବତୀମାନେ ଅନୁପ୍ରେରିତ ହୋଇ ବିକାଶ ଧାରାରେ ସ୍ୱକୀୟ ଅବଦାନ ଦେବା ପାଇଁ ନିଜକୁ ପ୍ରସ୍ତୁତ କରିବା ଆବଶ୍ୟକ । ମୋ ସରକାର ଯୁବକଯୁବତୀମାନଙ୍କୁ ନିୟୋଜନକ୍ଷମ କରିବା ପାଇଁ ତାଲିମ ଓ ଦକ୍ଷତା ବିକାଶକୁ ଅଗ୍ରାଧିକାର ପ୍ରଦାନ କରିଛି । ମୋ ସରକାର ଦକ୍ଷତା ଅଭାବ ପରିପୂରଣ ନିମନ୍ତେ ଅନେକଗୁଡିଏ ପଦକ୍ଷେପ ନେଇଛି ତଥା ଭବିଷ୍ୟତ ପାଇଁ ମଧ୍ୟ ଏକ ମହତ୍ତ୍ୱାକାଂକ୍ଷୀ ଯୋଜନା ପ୍ରସ୍ତୁତ କରିଛି । ୭ଟି ଗୁରୁତ୍ୱପୂର୍ଣ୍ଣ ସ୍ଥାନରେ ତାଲିମଦାତାଙ୍କ ପାଇଁ ତାଲିମ କେନ୍ଦ୍ର, ୧୩ଟି ନୂଆ ଆଇଟିଆଇ, ୭୨ଟି ଦକ୍ଷତା ବିକାଶ କେନ୍ଦ୍ର ପ୍ରତିଷ୍ଠା ନିମନ୍ତେ ମୋ ସରକାର ଯୋଜନା କରିବା ସହିତ ବିଭିନ୍ନ ଶିକ୍ଷାନୁଷ୍ଠାନରେ ଶିକ୍ଷାନବୀଶ ତାଲିମ ସଂଖ୍ୟା ବୃଦ୍ଧି କରାଇଛି । ମୁଖ୍ୟମନ୍ତ୍ରୀ ନିଯୁକ୍ତି ସୃଷ୍ଟି ଯୋଜନାରେ ମୋ ସରକାର ପ୍ରତି ଗ୍ରାମପଞ୍ଚାୟତରୁ ୧୫୦ ଜଣ ଯୁବକଯୁବତୀଙ୍କ ଦକ୍ଷତା ବିକାଶ କରି ସେମାନଙ୍କ ପାଇଁ ଆତ୍ମନିଯୁକ୍ତି ନିଶ୍ଚିତ କରାଇବା ଲକ୍ଷ୍ୟ ରଖିଛି । ମୋଟାମୋଟି ଭାବରେ ମୋ ସରକାର ୬,୨୩୪ ଗ୍ରାମପଞ୍ଚାୟତର ୯.୩ ଲକ୍ଷ ଓ ସହରାଞ୍ଚଳର ୧.୭ ଲକ୍ଷ ଯୁବକଯୁବତୀଙ୍କୁ ଆଗାମୀ ୪ ବର୍ଷରେ ତାଲିମ ଦେବାର ଲକ୍ଷ୍ୟ ରଖିଛି ।

୬୫. ଆମ ଦେଶ ମୁକ୍ତ ବଜାର ବ୍ୟବସ୍ଥାକୁ କ୍ରମାଗତ ଭାବରେ ଗ୍ରହଣ କରି ଆଗକୁ ବଢି ଚାଲିଥିବା ବେଳେ ଆମକୁ ଆନୁଷ୍ଠାନିକ ସୁରକ୍ଷା ଓ ପୂର୍ବକ୍ରିୟାଶୀଳ ବ୍ୟବସ୍ଥା ଅନୁସରଣ କରିବା ନିହାତି ଆବଶ୍ୟକ । ରାଜ୍ୟ ମାଲିକାନାଭୁକ୍ତ ଉଦ୍ୟୋଗଗୁଡ଼ିକୁ ଏଥି ନିମନ୍ତେ ଉଲ୍ଲେଖନୀୟ ଭୂମିକା ନିର୍ବାହ କରିବା ଆବଶ୍ୟକ । ମୋ ସରକାର ନିରନ୍ତର ଏହି ଗୁରୁତ୍ୱପୂର୍ଣ୍ଣ ଉଦ୍ୟୋଗଗୁଡ଼ିକୁ ଶକ୍ତିଶାଳୀ ଓ ସହନୀୟ କରିବା ନିମନ୍ତେ ଏକାଧିକ କାର୍ଯ୍ୟଧାରା ଅଭିବୃଦ୍ଧିକାରୀ ପଦକ୍ଷେପ ଗ୍ରହଣ କରିଛି, ଯାହା ଦ୍ୱାରା ଏହି ସରକାରୀ ଉଦ୍ୟୋଗଗୁଡିକ ଆଗକୁ ଆସୁଥିବା ବ୍ୟବସାୟିକ ଧାରାରେ ସାମିଲ ହେବା ସହିତ ପରିବର୍ତ୍ତିତ ପରିସ୍ଥିତିରେ ନିଜକୁ ଉପଯୋଗୀ ସାବ୍ୟସ୍ତ କରାଇବେ ।

୬୬. ମୁଁ ଆନନ୍ଦର ସହିତ ଘୋଷଣା କରିବାକୁ ଚାହେଁ ଯେ ବିଗତ ୫ ବର୍ଷ ମଧ୍ୟରେ ମୋ ସରକାରଙ୍କ ଶକ୍ତି ବିଭାଗ 'ବିଜୁ ଗ୍ରାମ ଜ୍ୟୋତି ଯୋଜନା', 'ରାଜୀବ ଗାନ୍ଧୀ ଗ୍ରାମୀଣ ବିଦ୍ୟୁତିକରଣ ଯୋଜନା' ଓ 'ବିଜୁ ସହରାଞ୍ଚଳ ବିଦ୍ୟୁତିକରଣ ଯୋଜନା' ଅଧୀନରେ ରାଜ୍ୟର ୫୪ ଲକ୍ଷରୁ ଅଧିକ ଉପଭୋକ୍ତାଙ୍କୁ ବର୍ତ୍ତମାନ ୨୪ ଘଣ୍ଟିଆ ବିଦ୍ୟୁତ ଯୋଗାଣ କରିଆସୁଛି ଏବଂ ଇତି ମଧ୍ୟରେ ଆହୁରି ୨୫ ଲକ୍ଷ ବିପିଏଲ୍ ଗ୍ରାହକଙ୍କୁ ଏଥିରେ ଅନ୍ତର୍ଭୁକ୍ତ କରିଛି ଏବଂ ୨୦୧୭ ମାର୍ଚ୍ଚ ୩୧ ସୁଦ୍ଧା ୪୨ ଲକ୍ଷ ଗ୍ରାହକଙ୍କୁ ଅନ୍ତର୍ଭୁକ୍ତ କରି ରାଜ୍ୟର ସବୁ ପରିବାରକୁ ବିଦ୍ୟୁତ ଶକ୍ତି ଯୋଗାଣ ଲକ୍ଷ୍ୟ ରଖିଛି ।

୬୭. ମୋ ରାଜ୍ୟର ବିଦ୍ୟୁତ ବଣ୍ଟନ ଭିତ୍ତିଭୂମିକୁ ସୁଦୃଢ଼ କରିବା ଲକ୍ଷ୍ୟରେ ଓଡ଼ିଶା ବିଦ୍ୟୁତ ବିତରଣ ବ୍ୟବସ୍ଥା ସୁଦୃଢ଼ୀକରଣ ପ୍ରକଳ୍ପ ଅଧୀନରେ ୪୨୦୦ କୋଟି ଟଙ୍କା ବିନିଯୋଗରେ ଅଧିକ ୫୦୦ଟି ୩୩/୧୧ କେ.ଭି ସବ୍‌ଷ୍ଟେସନ୍‌ର ନିର୍ମାଣ କାର୍ଯ୍ୟ

ହାତକୁ ନିଆଯାଇଛି । ୨୦୧୬ ଜୁନ୍ ସୁଦ୍ଧା ଏଥି ମଧ୍ୟରୁ ୧୦୦ ସବ୍‌ଷ୍ଟେସନ୍‌କୁ କାର୍ଯ୍ୟକ୍ଷମ କରାଯାଉଛି ଏବଂ ପ୍ରାୟ ୨୫୦ ସବ୍‌ଷ୍ଟେସନ୍ ବିଭିନ୍ନ ପର୍ଯ୍ୟାୟରେ ନିର୍ମାଣାଧୀନ ଅବସ୍ଥାରେ ରହିଛି । ୨୦୧୮ ମାର୍ଚ୍ଚ ସୁଦ୍ଧା ସମସ୍ତ ୫୦୦ଟି ସବ୍‌ଷ୍ଟେସନ୍‌କୁ କାର୍ଯ୍ୟକ୍ଷମ କରାଇବା ପାଇଁ ଉଦ୍ୟମ ଅବ୍ୟାହତ ରହିଛି ।

୬୮. ଇତି ମଧ୍ୟରେ ମୋ ରାଜ୍ୟର ବିଦ୍ୟୁତ ସରବରାହ ବ୍ୟବସ୍ଥାକୁ ଆଧୁନିକ ବୈଷୟିକ ଜ୍ଞାନକୌଶଳ ସାହାଯ୍ୟରେ ସୁଦୃଢ କରାଯାଇପାରିଛି । ରାଜ୍ୟରେ ପ୍ରତିଷ୍ଠା ହେବାକୁ ଯାଉଥିବା ଉତ୍ପାଦନ କେନ୍ଦ୍ରଗୁଡିକରୁ ଅଧିକ ୧୨,୬୪୯ ଏମ୍‌ଭିଏ କ୍ଷମତା ଉତ୍ପାଦନ ଏବଂ ଶକ୍ତି ସରବରାହ ନିମନ୍ତେ ରାଜ୍ୟ ମଧ୍ୟରେ ୫୩୩୭ ସର୍କିଟ କିଲୋମିଟର ଦୈର୍ଘ୍ୟ ବିଦ୍ୟୁତ ଲାଇନ୍ ଯୋଗ କରିବା ନିମନ୍ତେ ବିଦ୍ୟୁତ ସରବରାହ ସେବା କ୍ଷେତ୍ରରେ ଯୋଜନା କରାଯାଇଛି ।

୬୯. ଓପିଜିସି, ଓପିଟିସିଏଲ୍, ୟୁଏମ୍‌ପିପି ଓ ଆଇପିପି ଆଦି ତାପଜ କେନ୍ଦ୍ରଗୁଡିକରୁ ୨୦୨୧–୨୨ ସୁଦ୍ଧା ୧୦୩୧୦ ମେଗାୱାଟ୍ କ୍ଷମତା ସଂଯୁକ୍ତ ହେବାକୁ ଯାଉଛି । ସେହିପରି ଆମର ବୁର୍ଲା, ବାଲିମେଳା, ଚିପିଲିମା ଓ ମାଛକୁଣ୍ଡଠାରେ ରହିଥିବା ଜଳବିଦ୍ୟୁତ କେନ୍ଦ୍ରଗୁଡିକର ସଂପ୍ରସାରଣ ଓ ପୁନର୍ବିନ୍ୟାସ ପାଇଁ ଆସନ୍ତା ବର୍ଷ ସୁଦ୍ଧା ୧୦୮୮ କୋଟି ଟଙ୍କା ବିନିଯୋଗ କରାଯିବାର ଯୋଜନା ରହିଛି । ମୋ ସରକାର ୨୦୨୨ ମସିହା ସୁଦ୍ଧା ୩.୦୭୮ ଗିଗାୱାଟ୍ କ୍ଷମତାସଂପନ୍ନ ଅକ୍ଷୟ ଶକ୍ତି ଆମ ଶକ୍ତି ସମ୍ଭାରରେ ଯୋଗ କରିବା ପାଇଁ ଯୋଜନା କରିଛି । ସମୁଦାୟ ଶକ୍ତିରେ ସବୁଜ ଶକ୍ତିର ଅଂଶ ବୃଦ୍ଧି ନିମନ୍ତେ ମୋ ସରକାର ୨୦୨୨ ସୁଦ୍ଧା ୨୩୭୮ ମେଗାୱାଟ୍ ସୌରଶକ୍ତି ଉତ୍ପାଦନର ଲକ୍ଷ୍ୟ ଧାର୍ଯ୍ୟ କରିଛି ।

୭୦. ଜଳପଥରେ ଯାତାୟାତ ଉଭୟ ମିତବ୍ୟୟୀ ଓ ପରିବେଶ ଅନୁକୂଳ ହୋଇଥିବାରୁ ମୋ ସରକାର ଆନ୍ତଃରାଜ୍ୟ ଜଳପଥ ବିକାଶ ନିମନ୍ତେ ଯୋଜନା ପ୍ରସ୍ତୁତି ସହିତ ଅଧିକ ବନ୍ଦର ନିର୍ମାଣ ପାଇଁ କାର୍ଯ୍ୟ କରୁଛି । ମୁଁ ଆନନ୍ଦର ସହ ଗୃହର ସଦସ୍ୟମାନଙ୍କୁ ଜଣାଇବାକୁ ଚାହେଁ ଯେ ମୋ ସରକାର ନିକଟରେ ପାରାଦୀପ ଓ ଧାମରା ବନ୍ଦରରୁ କଳିଙ୍ଗନଗର ଉତ୍ପାଦନ ଅଞ୍ଚଳକୁ ନିରନ୍ତର ଜଳପଥ ଯୋଗାଯୋଗ ନିମନ୍ତେ ନିକଟରେ କାର୍ଯ୍ୟ ଆରମ୍ଭ କରିଛି ଏବଂ ନିକଟରେ ଫାଇଲିନ୍ ମହାବାତ୍ୟାରେ ବ୍ୟାପକ ଭାବରେ କ୍ଷତିଗ୍ରସ୍ତ ଗୋପାଳପୁର ବନ୍ଦରକୁ ପୁନଃକାର୍ଯ୍ୟକ୍ଷମ କରାଯାଇଛି ।

୭୧. ଉତ୍ତମ ସଡକ ଆଚରଣ ଅନୁସରଣ ଓ ମାରାତ୍ମକ ଦୁର୍ଘଟଣା ଏଡେଇବା ସଂପର୍କରେ ସଚେତନ କରିବା ତଥା ଆସନ୍ତା ୩ ବର୍ଷ ମଧ୍ୟରେ ପ୍ରାୟ ୨୦ ପ୍ରତିଶତ ବଡ ଦୁର୍ଘଟଣା ହ୍ରାସ କରିବା ଲକ୍ଷ୍ୟରେ ମୋ ସରକାର 'ସଡକ ନିରାପତ୍ତା ନୀତି ୨୦୧୫' ପ୍ରଣୟନ କରିଛି । ଏଥି ସହିତ ପରିବହନ ବ୍ୟବସ୍ଥାରେ ଇ–ଗଭର୍ଣ୍ଣାନ୍ସ ପଦ୍ଧତି ମାଧ୍ୟମରେ ପ୍ରତିଦିନ ସରକାରୀ ପରିବହନ ସୁବିଧା ନେଉଥିବା ଅଗଣିତ ଯାତ୍ରୀଙ୍କୁ ବ୍ୟବହାର ଉପଯୋଗୀ ସହଯୋଗିତା ଯୋଗାଇ ଦେବା ନିମନ୍ତେ ପରିବହନ ବିଭାଗ ନିରନ୍ତର ପ୍ରୟାସ ଜାରି ରଖିଛି ।

୭୨. ମୁଁ ଖୁସିର ସହ ଘୋଷଣା କରୁଛି ଯେ ରାଜ୍ୟର ଦୁର୍ଗମ ଓ ଅପହଞ୍ଚ ଗ୍ରାମପଞ୍ଚାୟତଗୁଡିକୁ ବସ୍ ସେବା ଯୋଗାଇଦେବା ନିମନ୍ତେ ମୋ ସରକାର ଆରମ୍ଭ କରିଥିବା 'ବିଜୁ ଗାଁ ଗାଡି ଯୋଜନା' ଅତ୍ୟନ୍ତ ଫଳପ୍ରଦ ହୋଇଛି ଓ କାର୍ଯ୍ୟକ୍ରମର ତିନୋଟି ଭିନ୍ନ ଭିନ୍ନ ପର୍ଯ୍ୟାୟରେ ଯାତାୟାତ କରୁଥିବା ୪୮୪ଟି 'ବିଜୁ ଗାଁ ଗାଡି ଯୋଜନା' ବସ୍ ସହିତ ଯାତାୟାତ କରୁଥିବା ସରକାରୀ ଯାନକୁ ମିଶାଇ ମୋଟ ବସ ସେବା ନଥିବା ୩୪୯ଟି ଗ୍ରାମପଞ୍ଚାୟତକୁ ଯାତାୟାତ ସୁବିଧା ଯୋଗାଇ ଦେବାରେ ଆମେ ସମର୍ଥ ହୋଇପାରିଛୁ ।

୭୩. ମୋ ସରକାର ରାଜ୍ୟରେ ରେଳପଥ ବିସ୍ତାରକୁ ପ୍ରସାରିତ କରିବା ତଥା ପୂର୍ବରୁ ରେଳପଥ ନଥିବା ୭ଟି ଜିଲ୍ଲାକୁ ରେଳ ସଂଯୋଗୀକରଣ ଯୋଗାଇଦେବା ନିମନ୍ତେ ଖୋର୍ଦ୍ଧା–ବଲାଙ୍ଗୀର ରେଳ ସଂଯୋଗ ପ୍ରକଳ୍ପ ସକାଶେ ବିନା ପ୍ରିମିୟମ୍‌ରେ ଆବଶ୍ୟକୀୟ ଜମି ସହିତ ସମୁଦାୟ ନିର୍ମାଣ ବ୍ୟୟର ୫୦ ପ୍ରତିଶତ ଅର୍ଥ ପ୍ରଦାନ କରିଛି, ଯାହା ଫଳରେ ରେଳ ସଂଯୋଗୀକରଣ ନୟାଗଡ ଜିଲ୍ଲା ପର୍ଯ୍ୟନ୍ତ ସଂପ୍ରସାରିତ ହୋଇପାରିଛି ଓ ଅବଶିଷ୍ଟ କାର୍ଯ୍ୟ ଦ୍ରୁତଗତିରେ ଚାଲିଛି । ରାଜ୍ୟର ଆଦିବାସୀ ଅଧ୍ୟୁଷିତ

ଅପହଞ୍ଚ ଜିଲ୍ଲାଗୁଡ଼ିକୁ ରେଳ ସଂଯୋଗୀକରଣ ନିମନ୍ତେ ଜୟପୁର–ମାଲକାନଗିରି ଓ ଜୟପୁର–ନବରଙ୍ଗପୁର ରେଳ ପ୍ରକଳ୍ପଗୁଡ଼ିକ ଶୀଘ୍ର ଶେଷ କରିବା ନିମନ୍ତେ ମଧ୍ୟ ମୋ ସରକାର ସମପରିମାଣର ରିହାତି ପ୍ରଦାନ କରୁଛି । ମୁଁ ଆନନ୍ଦର ସହିତ ଏହି ପବିତ୍ର ଗୃହକୁ ଅବଗତ କରାଇବାକୁ ଚାହେଁ ଯେ ଏଭଳି ସହାୟତା ପ୍ରଦାନ କରିବାରେ ଆମେ ହିଁ ସମଗ୍ର ଦେଶରେ ଏକମାତ୍ର ରାଜ୍ୟ ।

୭୪. ସୀମିତ ଭୂସଂପଦର ଦକ୍ଷ ପରିଚାଳନା ଏକ ବଡ ଆହ୍ୱାନ । ଘରଡିହ ନଥିବା ପରିବାରକୁ ଘରଡିହ ଆବଣ୍ଟନ ଓ ଭୂମିହୀନ କୃଷକମାନଙ୍କୁ କୃଷିଯୋଗ୍ୟ ପତିତ ଜମି ବଣ୍ଟନ ମୋ ସରକାରଙ୍କର ଏକ ମୌଳିକ ଆଭିମୁଖ୍ୟ । ମୁଁ ଖୁସିର ସହ ଆପଣମାନଙ୍କୁ ଜଣାଇବାକୁ ଚାହୁଁଛି ଯେ ୨୦୧୫ ଡିସେମ୍ବର ମାସ ଶେଷ ସୁଦ୍ଧା ୧,୦୩,୮୨୫ ଏହି ଭଳି ପରିବାରକୁ ଚିହ୍ନଟ କରାଯାଇ ସେମାନଙ୍କ ମଧ୍ୟରୁ ୨୪,୯୧୩ ପରିବାରଙ୍କୁ ଘରଡିହ ଯୋଗାଇ ଦିଆଯାଇଛି । ଜମି ହଡପକାରୀଙ୍କୁ କଠୋର ଦଣ୍ଡବିଧାନ ତଥା ଭୂତଳ ପାଇପ ଲାଇନ୍ ପାଇଁ ସୁବିଧା ଉଦ୍ଦେଶ୍ୟରେ ମୋ ସରକାର 'ଜମି ହଡପ(ନିଷେଧ) ଅଧିନିୟମ ୨୦୧୫' ଏବଂ 'ଓଡ଼ିଶା ପାଇପ ଲାଇନ୍(ଭୂମିରେ ବ୍ୟବହାରକାରୀଙ୍କ ଅଧିକାର ଅଧିଗ୍ରହଣ) ଅଧିନିୟମ ୨୦୧୫' ଏହିପରି ଦୁଇଟି ନୀତି ପ୍ରଣୟନ କରୁଛି ।

୭୫. ରାଜ୍ୟ ରାଜକୋଷକୁ ଅବକାରୀରୁ ସଂଗୃହୀତ ରାଜସ୍ୱର ଉଲ୍ଲେଖନୀୟ ଅବଦାନ ରହିଛି । ଏହି କ୍ଷେତ୍ରକୁ ବ୍ୟବସ୍ଥିତ କରିବା ପାଇଁ ମୋ ସରକାର କେନ୍ଦ୍ର ସରକାରଙ୍କ ଦ୍ୱାରା ପ୍ରସାରିତ ନମୁନା ଅବକାରୀ ନୀତି ଆଧାରରେ ଓଡ଼ିଶା ଅବକାରୀ ଅଧିନିୟମ ପ୍ରଣୟନ କରିଛି । ନୂଆ ଅଧିନିୟମ ରାଜ୍ୟରେ ଅବକାରୀ ପ୍ରଶାସନକୁ ବ୍ୟବସ୍ଥିତ କରିବା ସହିତ ଆଇନ ଖିଲାପକାରୀଙ୍କ ପାଇଁ କଠୋର ଦଣ୍ଡବିଧାନ ବ୍ୟବସ୍ଥା କରିଛି । ବହୁ ସ୍ତରରେ ସମନ୍ୱୟ ସହିତ କରାଯାଉଥିବା ପ୍ରବର୍ତ୍ତନ ଦ୍ୱାରା ରାଜସ୍ୱ କ୍ଷୟକୁ ଆଖିଦୃଶିଆ ଭାବେ ରୋକାଯିବା ସହିତ ଏହି କ୍ଷେତ୍ରରେ ଅବୈଧ କାରବାରକୁ ବହୁ ପରିମାଣରେ ହ୍ରାସ କରାଯାଇ ପାରିଛି ।

୭୬. ମୁଁ ଆନନ୍ଦର ସହ ଏହା ପ୍ରକାଶ କରିବାକୁ ଚାହୁଁଛି ଯେ ସାଧାରଣ ପ୍ରଶାସନ ବିଭାଗ ମୁଖ୍ୟମନ୍ତ୍ରୀ ରିଲିଫ୍ ପାଣ୍ଠିରୁ ଆଶୁ ସହାୟତା ପ୍ରଦାନ, ହରିଶ୍ଚନ୍ଦ୍ର ସହାୟତା ଯୋଜନାରେ ସହାୟତା ଏବଂ ଓଡ଼ିଶା ଲୋକ ସେବା ଅଧିକାର ଅଧିନିୟମ ୨୦୧୨ରେ ଉପଲବ୍ଧ ସେବା ତାଲିକାରେ ୨୩୫ଟି ଅତିରିକ୍ତ ସେବା ଯୋଗ କରାଇ ଉଲ୍ଲେଖନୀୟ କାର୍ଯ୍ୟ କରିଛି । ଏହା ଫଳରେ ଓଡ଼ିଶାରେ ଅଧିକାର ସମ୍ବଳିତ ପ୍ରଶାସନିକ ବ୍ୟବସ୍ଥାକୁ ମଜବୁତ୍ କରିବାରେ ଆମେ ଏକ ପାହାଚ ଆଗକୁ ଯାଇଛୁ ।

୭୭. ସହଜ ସୂଚନା ପ୍ରାପ୍ତି କ୍ରମଶଃ ଆମ ସାମାଜିକ ଭିତ୍ତିଭୂମିରେ ବୈପ୍ଳବିକ ପରିବର୍ତ୍ତନ ଆଣୁଛି ଯେଉଁଥି ପାଇଁ ନିୟମିତ ଜ୍ଞାନର ଅଧୁନାତନ ସହିତ ନୂତନ କୌଶଳ ଆହରଣ ଆବଶ୍ୟକ ସରକାରୀ ପଦାଧିକାରୀମାନଙ୍କ ମଧ୍ୟରେ ଲୋକସେବା ପ୍ରଦାନରେ ଅଭିନବ ଉପାୟର ବିକାଶକୁ ପ୍ରୋତ୍ସାହିତ କରିବା ଲକ୍ଷ୍ୟରେ 'ପ୍ରଶାସନ ଓ ଲୋକସେବା ପ୍ରଦାନରେ ଉଦ୍ଭବ ଓ ଉତ୍କର୍ଷ ନିମନ୍ତେ ମୁଖ୍ୟମନ୍ତ୍ରୀଙ୍କ ପୁରସ୍କାର' ପ୍ରବର୍ତ୍ତନ କରିଛି । ଆହୁରି ମଧ୍ୟ ମୋ ସରକାର ବିଭିନ୍ନ ବର୍ଗର ସରକାରୀ ଅଧିକାରୀଙ୍କ ନିମନ୍ତେ ମଧ୍ୟବର୍ତ୍ତୀକାଳୀନ ପ୍ରଶିକ୍ଷଣର ବ୍ୟବସ୍ଥା କରିଛି ।

୭୮. ମୋ ସରକାର ରାଜ୍ୟର ଯୁବକଯୁବତୀମାନଙ୍କୁ ପ୍ରତ୍ୟକ୍ଷ ନିଯୁକ୍ତି ସୁଯୋଗ ଯୋଗାଇ ଦେବା ନିମନ୍ତେ ଦେଇଥିବା ପ୍ରତିଶ୍ରୁତିର ଅଂଶ ସ୍ୱରୂପ ଇତିମଧ୍ୟରେ ୩୨ ହଜାର ଯୁବକଯୁବତୀଙ୍କୁ ନିଯୁକ୍ତି ପ୍ରଦାନ ସହିତ ଅନୁକମ୍ପାମୂଳକ ନିଯୁକ୍ତି ନିମନ୍ତେ ବିଚାରାଧୀନ ଥିବା ପ୍ରାୟ ୬ ହଜାର ଆବେଦନର ଚୂଡାନ୍ତ ସମାଧାନ ବିଗତ ଏକ ବର୍ଷ ମଧ୍ୟରେ କରିସାରିଥିବା କଥା ମୁଁ ଏହି ପବିତ୍ର ଗୃହରେ ଆନନ୍ଦର ସହ ଘୋଷଣା କରୁଛି ।

୭୯. ଅର୍ଥନୈତିକ ଅଭିବୃଦ୍ଧିର ବିଭିନ୍ନ ଅଂଶ ମଧ୍ୟରେ ଏକ ସମୁଚିତ ସନ୍ତୁଳନ ରକ୍ଷା କରିବା ସହିତ ଦାରିଦ୍ର୍ୟ ହ୍ରାସ କରିବା ଏକ ପ୍ରମୁଖ ଆହ୍ୱାନ । ମୋ ସରକାର ସଫଳତାର ସହିତ ଜଙ୍ଗଲ ପରିସୀମା ବୃଦ୍ଧି କରିପାରିଛି ଏବଂ ଇଣ୍ଡିଆ ଷ୍ଟେଟ୍ ଅଫ୍ ଫରେଷ୍ଟ ରିପୋର୍ଟ ୨୦୧୫ ଅନୁଯାୟୀ ଆମ ରାଜ୍ୟର ଏକ ତୃତୀୟାଂଶରୁ ଅଧିକ ଭୌଗୋଳିକ ଅଞ୍ଚଳ ଜଙ୍ଗଲ ଦ୍ୱାରା ଆଚ୍ଛାଦିତ ଯାହା ରାଜ୍ୟର ଦ୍ରୁତ ଶିଳ୍ପାୟନ ପାଇଁ ରହିଥିବା ଆବଶ୍ୟକତା ପରିପ୍ରେକ୍ଷୀରେ କିଛି କମ୍ ସଫଳତା ନୁହେଁ । ମୋ ସରକାରଙ୍କ ଦ୍ୱାରା

କାର୍ଯ୍ୟକାରୀ କରାଯାଉଥିବା 'ଆମ ଜଙ୍ଗଲ ଯୋଜନା' ପରି ପ୍ରୟାସ ମାଧ୍ୟମରେ ଜଙ୍ଗଲରେ ବସବାସ କରୁଥିବା ଲୋକମାନଙ୍କୁ ସେମାନଙ୍କ ଜୀବିକା ନିର୍ବାହରେ ସହାୟତା ଏବଂ ଜଙ୍ଗଲ ସୁରକ୍ଷା ଏବଂ ପରିସୀମା ପରିବର୍ଦ୍ଧନରେ ସେମାନଙ୍କର ସକ୍ରିୟ ଭାଗୀଦାରି ପାଇଁ ଏହା ସମ୍ଭବ ହୋଇପାରିଛି । ମୋ ସରକାର ଅନେକ ଅଭିନବ ଉପକ୍ରମ ମାଧ୍ୟମରେ ମଣିଷ-ପଶୁ ମଧ୍ୟରେ ସଂଘର୍ଷକୁ ପ୍ରତିରୋଧ କରିବାକୁ ଉଦ୍ୟମ କରୁଛି ।

୮୦. ମୋ ସରକାର ଜନଜାତିମାନଙ୍କର ପବିତ୍ର ପୂଜାପୀଠଗୁଡ଼ିକର ସୁରକ୍ଷା ଏବଂ ଅନ୍ୟାନ୍ୟ ପାରମ୍ପରିକ ପୂଜାସ୍ଥଳୀଗୁଡ଼ିକର ମରାମତି, ପୁନରୁଦ୍ଧାର ତଥା ରକ୍ଷଣାବେକ୍ଷଣ ନିମନ୍ତେ ସ୍ୱତନ୍ତ୍ର ଅନୁଦାନର ବ୍ୟବସ୍ଥା କରିଛି । ଚଳିତ ବର୍ଷ ମୋ ସରକାର କେନ୍ଦୁପତ୍ର ବିଡ଼ା ପିଛା ଦର ୬୦ ପଇସାରୁ ୭୦ ପଇସାକୁ ବୃଦ୍ଧି କରିଛି ଏବଂ କେନ୍ଦୁପତ୍ର ତୋଳାଳୀମାନଙ୍କୁ ୬୨ କୋଟି ଟଙ୍କାର ଲାଭାଂଶ ପ୍ରଦାନ ସହିତ ୫ କୋଟି ଟଙ୍କା କେନ୍ଦୁପତ୍ର ବନ୍ଧାଳୀମାନଙ୍କୁ କେନ୍ଦୁପତ୍ର ବ୍ୟବସାୟ ଉଦ୍‌ବୃତ୍ତ ପାଣ୍ଠିରୁ ପ୍ରୋତ୍ସାହନ ଭତ୍ତା ଆକାରରେ ପ୍ରଦାନ କରିଛି ।

୮୧. ମୋ ସରକାର ଅନୁସୂଚିତ ଜନଜାତି, ଅନୁସୂଚିତ ଜାତି, ସଂଖ୍ୟାଲଘୁ ଓ ପଛୁଆ ବର୍ଗଙ୍କ ସାମଗ୍ରିକ ବିକାଶ ନିମନ୍ତେ ଅନେକ ଆଗୁଆ ପଦକ୍ଷେପ ଗ୍ରହଣ କରିଛି ।

ମୋ ସରକାର ଛାତ୍ରଛାତ୍ରୀଙ୍କ ରହିବା ସୁବିଧା ପାଇଁ ୨୮୫୦ଟି ଛାତ୍ରାବାସକୁ ମଞ୍ଜୁର କରିଛି ଯାହା ମଧ୍ୟରୁ ୨୦୨୦ଟି ଛାତ୍ରାବାସର ନିର୍ମାଣ କାର୍ଯ୍ୟ ସଂପୂର୍ଣ୍ଣ ହୋଇଛି । ଆସନ୍ତା ଶିକ୍ଷା ବର୍ଷରୁ ଏହି ଛାତ୍ରାବାସଗୁଡ଼ିକ କାର୍ଯ୍ୟକ୍ଷମ ହେବ ।

୮୨. ଅନୁସୂଚିତ ଜନଜାତି ଓ ଜାତିର ଛାତ୍ରଛାତ୍ରୀଙ୍କୁ ଗୁଣାତ୍ମକ ଶିକ୍ଷା ପ୍ରଦାନ ଲକ୍ଷ୍ୟରେ ମୋ ସରକାର ୨୦୧୫-୧୬ରେ ଏକ ନୂଆ ଯୋଜନା 'ଅନ୍ୱେଷା'ର ଶୁଭାରମ୍ଭ କରିଛି ଯେଉଁଥିରେ ୨୭୦୦ରୁ ଊର୍ଦ୍ଧ୍ୱ ଛାତ୍ରଛାତ୍ରୀ ଉପକୃତ ହୋଇଛନ୍ତି । ଏହି ଯୋଜନାରେ ରାଜ୍ୟର ସହରାଞ୍ଚଳରେ ଥିବା ଘରୋଇ ଶିକ୍ଷାନୁଷ୍ଠାନଗୁଡ଼ିକରେ ଅନୁସୂଚିତ ଜାତି ଓ ଜନଜାତିର ଛାତ୍ରଛାତ୍ରୀମାନଙ୍କୁ ଗୁଣାତ୍ମକ ନିଃଶୁଳ୍କ ଶିକ୍ଷା ପ୍ରଦାନ କରାଯାଉଛି । ଅତିକମ୍‌ରେ ୫ ହଜାର ଛାତ୍ରଛାତ୍ରୀ ୨୦୧୬-୧୭ରେ ଏହି ବିଦ୍ୟାଳୟଗୁଡ଼ିକରେ ନାମ ଲେଖାଇବେ । ମୋ ସରକାର ପ୍ରତ୍ୟେକ ଛାତ୍ର ପାଇଁ ସର୍ବାଧିକ ୨୫ ହଜାର ଟଙ୍କା ପର୍ଯ୍ୟନ୍ତ ସହାୟତା ଦେବା ସହ ବିଦ୍ୟାଳୟର ବାର୍ଷିକ ଦେୟ ପୂରାପୂରି ଭାବରେ ବହନ କରିବେ । ଛାତ୍ରଛାତ୍ରୀମାନଙ୍କୁ ମଧ୍ୟ ମାଗଣା ବହି, ୟୁନିଫର୍ମ ଓ ସହରାଞ୍ଚଳ ଛାତ୍ରାବାସର ସୁବିଧା ଯୋଗାଇ ଦିଆଯିବ ।

୮୩. ଜଙ୍ଗଲ ଅଧିକାର ଆଇନ କାର୍ଯ୍ୟକାରୀ କରିବାରେ ମୋ ରାଜ୍ୟ ଅଗ୍ରଣୀ । ଆମ ରାଜ୍ୟ ଅଦ୍ୟାବଧି ୩.୫୦ ଲକ୍ଷ ଜନଜାତିଙ୍କୁ ବ୍ୟକ୍ତିଗତ ଅଧିକାର ଓ ୫ ହଜାର ଗୋଷ୍ଠୀଗତ ଅଧିକାର ପ୍ରଦାନ କରିଛି । ସରକାର ବର୍ତ୍ତମାନ ଗୋଷ୍ଠୀଗତ ଜଙ୍ଗଲ ଅଧିକାର ଦାବି ଓ ବ୍ୟକ୍ତିଗତ ଜଙ୍ଗଲ ଅଧିକାର ଆବେଦନର ଫଇସଲା ଉପରେ ଗୁରୁତ୍ୱ ଆରୋପ କରୁଛି ।

୮୪. ମୋ ସରକାର ଆପଦଗ୍ରସ୍ତ ଆଦିମ ଜନଜାତି ପରିବାରଗୁଡ଼ିକର କଲ୍ୟାଣ ନିମନ୍ତେ ପେନ୍‌ସନ୍, ବାସଗୃହ ଓ ଅନ୍ୟାନ୍ୟ ସାମାଜିକ ନିରାପତ୍ତା ଯୋଜନାରେ ଏହି ପରିବାରଗୁଡ଼ିକୁ ଶତପ୍ରତିଶତ ଅନ୍ତର୍ଭୁକ୍ତ କରିବାକୁ ସଂକଳ୍ପବଦ୍ଧ । ରାଜ୍ୟର ୧୩ଟି ଆଦିମ ଜନଜାତିଙ୍କ ସାମାଜିକ ଓ ଅର୍ଥନୈତିକ ଅବସ୍ଥାରେ ଉନ୍ନତି ପାଇଁ ମୋ ସରକାର ଆଇଏଫ୍‌ଏଡିର ଆର୍ଥିକ ସହାୟତାରେ ଓଡ଼ିଶା ଆଦିମ ଜନଜାତି ସଶକ୍ତିକରଣ ଓ ଜୀବିକା ନିର୍ବାହ କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରିବ ।

୮୫. ଆମ ରାଜ୍ୟରେ ସଂଖ୍ୟାଲଘୁ ଜନସଂଖ୍ୟା ଯଥେଷ୍ଟ ଅଛି ଏବଂ ସେମାନଙ୍କର ସାମାଜିକ, ଅର୍ଥନୈତିକ କଲ୍ୟାଣ ଓ ଜୀବିକା ନିର୍ବାହ ବିକାଶ ପାଇଁ ମୋ ସରକାର ପ୍ରତିଶ୍ରୁତିବଦ୍ଧ । ସଂଖ୍ୟାଲଘୁ ସଂପ୍ରଦାୟର ଛାତ୍ରଛାତ୍ରୀଙ୍କ ଉଚ୍ଚ ଶିକ୍ଷା ନିମନ୍ତେ ମୋ ସରକାର ସଂଖ୍ୟାଲଘୁ ଶିକ୍ଷାନୁଷ୍ଠାନଗୁଡ଼ିକରେ ବୃତ୍ତି, ଛାତ୍ରାବାସ ଓ ଭିତ୍ତିଭୂମିର ବ୍ୟବସ୍ଥା ପାଇଁ ଯୋଜନା କରିଛି ।

୮୬. ମୋ ରାଜ୍ୟରେ ଜାତୀୟ ଖାଦ୍ୟ ନିରାପତ୍ତା ଆଇନ ୨୦୧୩ ସଫଳତାର ସହିତ କାର୍ଯ୍ୟକାରୀ ହେଉଛି । ମୁଁ ଅତ୍ୟନ୍ତ ସନ୍ତୋଷର ସହିତ ଏହି ଗୃହକୁ ଜଣାଇବାକୁ ଚାହେଁ ଯେ ରାଜ୍ୟର ସମସ୍ତ ଜିଲ୍ଲାରେ ୭୯.୫୯ ଲକ୍ଷ ପରିବାରକୁ ରିହାତି

ଦରରେ ଖାଦ୍ୟଶସ୍ୟ ଯୋଗାଇ ଦିଆଯାଉଛି । ଖାଦ୍ୟ ସୁରକ୍ଷା ଆଇନ ତଥ୍ୟ ଅଧୁନାତନ ନିମନ୍ତେ ୩୧୪ ବ୍ଲକ୍ ଓ ୬୦ଟି ପୌରସଂସ୍ଥା ସଦର ମହକୁମାରେ ''ରେସନ୍ କାର୍ଡ ପରିଚାଳନା ପଦ୍ଧତି'' ସହାୟତାରେ ଏକ ବଳିଷ୍ଠ ବ୍ୟବସ୍ଥା କାର୍ଯ୍ୟକାରୀ କରାଯାଇଛି । ମୋ ସରକାର ଧାନ ସଂଗ୍ରହଣକୁ ସୁବ୍ୟବସ୍ଥିତ କରିବା ଏବଂ କୃଷକମାନଙ୍କ ଆକାଉଣ୍ଟକୁ ସିଧାସଳଖ ପ୍ରାପ୍ୟ ହସ୍ତାନ୍ତର ପାଇଁ ପ୍ରଯୁକ୍ତି ବିଦ୍ୟାର ସାମର୍ଥ୍ୟ ଉପଯୋଗ କରିଛି । ମୋ ସରକାର ନିକଟ ଭବିଷ୍ୟତରେ ଧାନ ସଂଗ୍ରହ ବ୍ୟବସ୍ଥାକୁ ସ୍ୱଚ୍ଛ କରିବାକୁ ସଂପୂର୍ଣ୍ଣ ରୂପେ ସଙ୍କଳ୍ପବଦ୍ଧ ।

୮୭. ହସ୍ତତନ୍ତ, ବୟନ ଓ ହସ୍ତଶିଳ୍ପରେ ସମୃଦ୍ଧ ବିବିଧତା ପାଇଁ ଓଡ଼ିଶା ପ୍ରସିଦ୍ଧ । ଆଜିର ଡିଜିଟାଲ ଯୁଗରେ ମଧ୍ୟ ରାଜ୍ୟରେ ବେଶ୍ କିଛି ଲୋକ ଯୁଗଯୁଗର ଏହି ଶିଳ୍ପକଳା ଜାରି ରଖିଛନ୍ତି । ଏହା ମଧ୍ୟରେ ଜୀବିକା ନିର୍ବାହ ସେମାନଙ୍କ ପାଇଁ ଯେତିକି ଗୁରୁତ୍ୱପୂର୍ଣ୍ଣ, ରାଜ୍ୟକୁ ଅନନ୍ୟ ପରିଚିତି ଦେଇଥିବା ଏହି ପରମ୍ପରାକୁ ବଜାୟ ରଖିବା ତତୋଽଧିକ ଗୁରୁତ୍ୱପୂର୍ଣ୍ଣ । ସେମାନଙ୍କର ଏହି ଅନ୍ତର୍ନିହିତ ଆଗ୍ରହକୁ ଦୃଷ୍ଟିରେ ରଖି ମୋ ସରକାର ଅନେକଗୁଡିଏ ସହାୟତା ଯୋଗାଇ ଦେଉଛି ଯାହା ମଧ୍ୟରେ ଆର୍ଥିକ ରିହାତି ସହାୟତା, ପ୍ରଯୁକ୍ତି ବିଦ୍ୟା ପ୍ରୟୋଗ ପାଇଁ ପ୍ରୋତ୍ସାହନ, ଦକ୍ଷତା ବିକାଶ ଏବଂ କାରିଗର ଓ ତାଙ୍କ ପରିବାରକୁ ସମସ୍ତ ପ୍ରକାର ନିରାପତ୍ତା ପ୍ରଦାନ ଅନ୍ତର୍ଭୁକ୍ତ । ମୟୂରଭଞ୍ଜ ଓ କୋରାପୁଟ ଜିଲ୍ଲାର ଦୁର୍ବଳ ଆଦିବାସୀ ଗୋଷ୍ଠୀଙ୍କୁ ସେମାନଙ୍କର ପାରମ୍ପରିକ ଉତ୍ପାଦ ନିମନ୍ତେ ବଜାର ସହାୟତା ଯୋଗାଇ ଦେଇ ସେମାନଙ୍କ ଉପାର୍ଜନ ବୃଦ୍ଧି ଲକ୍ଷ୍ୟରେ ମୋ ସରକାର ଏକ ପୋଷଣୀୟ ବ୍ୟବସାୟିକ ମଡେଲ୍ ସୃଷ୍ଟି କରିବା ନିମନ୍ତେ ଜାପାନ ସୋସିଆଲ ଫଣ୍ଡ ଓ ବିଶ୍ୱ ବ୍ୟାଙ୍କ ପୃଷ୍ଠପୋଷକତାପ୍ରାପ୍ତ ଏସିଆନ୍ ହେରିଟେଜ୍ ଫାଉଣ୍ଡେସନ୍ ସହ ନିକଟରେ ବୁଝାମଣାପତ୍ର ସ୍ୱାକ୍ଷର କରିଛି ।

୮୮. ଓଡ଼ିଶାର ଲୋକମାନଙ୍କୁ ସୁଲଭ ସ୍ୱାସ୍ଥ୍ୟ ସେବା ପହଞ୍ଚାଇବା ମୋ ସରକାରଙ୍କ କାର୍ଯ୍ୟକ୍ରମର ପ୍ରମୁଖ ଅଂଶ ରହିଆସିଛି । ସ୍ୱାସ୍ଥ୍ୟ ସେବା ବ୍ୟବସ୍ଥାରେ ଅଭାବ ପୂରଣ ନିମନ୍ତେ ମୋ ସରକାର ଖୁବ୍ ଶୀଘ୍ର ରାଜ୍ୟ ସ୍ୱାସ୍ଥ୍ୟ ଆଶ୍ୱାସନା ସଂସ୍ଥା ପ୍ରତିଷ୍ଠା କରୁଛି । ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ କ୍ଷେତ୍ରରେ ମୋ ସରକାରଙ୍କର ଅନ୍ୟାନ୍ୟ ପ୍ରମୁଖ କାର୍ଯ୍ୟକ୍ରମ ମଧ୍ୟରେ ୫ଟି ନୂଆ ସରକାରୀ ମେଡିକାଲ କଲେଜ ପ୍ରତିଷ୍ଠା, କ୍ୟାପିଟାଲ ହସ୍ପିଟାଲରେ ସ୍ନାତକୋତ୍ତର ପ୍ରତିଷ୍ଠାନ ଖୋଲାଯିବା, ପ୍ରତି ହଜାରେ ଜନସଂଖ୍ୟାରେ ଜଣେ ଡାକ୍ତର ଅନୁପାତରେ ଏମ୍‌ବିବିଏସ୍‌ରେ ସ୍ଥାନ ସଂଖ୍ୟା ବୃଦ୍ଧି, ଡାକ୍ତରମାନଙ୍କୁ ଗ୍ରାମାଞ୍ଚଳ ତଥା ଦୁର୍ଗମ ଅଞ୍ଚଳରେ ସେବା କରିବା ପାଇଁ ପ୍ରୋତ୍ସାହିତ କରିବା ଲକ୍ଷ୍ୟରେ ସ୍ଥାନଭିତ୍ତିକ ପ୍ରୋତ୍ସାହନ ବ୍ୟବସ୍ଥା ପ୍ରଚଳନ ଅନ୍ତର୍ଭୁକ୍ତ । ମୋ ସରକାର ନିକଟରେ କେନ୍ଦୁଝରଠାରେ ଏକ ନୂଆ ସରକାରୀ ମେଡିକାଲ କଲେଜ୍ ଓ ହାସପାତାଳ ପ୍ରତିଷ୍ଠା କରିବା ପାଇଁ ଘୋଷଣା କରିଛି ଏବଂ ଅନେକ ପ୍ରଭାବୀ କାର୍ଯ୍ୟକ୍ରମ ମାଧ୍ୟମରେ ବିଭିନ୍ନ ମାନବ ସୂଚକାଙ୍କରେ ଆଖିଦୃଶିଆ ଉନ୍ନତି ହାସଲ କରିବା ନିମନ୍ତେ ଅଙ୍ଗୀକାରବଦ୍ଧ ।

ମୋ ସରକାର ଓଡ଼ିଶା ରାଜ୍ୟ ଔଷଧ ନିଗମ ଜରିଆରେ କାର୍ଯ୍ୟକାରୀ ହେଉଥିବା 'ନିରାମୟ' ଯୋଜନା ଅଧୀନରେ ବିଭିନ୍ନ ସରକାରୀ ଡାକ୍ତରଖାନାଗୁଡିକରେ ଜଟିଳ ରୋଗର ଚିକିତ୍ସା ନିମନ୍ତେ ରୋଗୀମାନଙ୍କୁ ୯୦ ପ୍ରକାରର ଔଷଧ ସମେତ ସମୁଦାୟ ୪୨୧ ପ୍ରକାର ଔଷଧ ବିନା ମୂଲ୍ୟରେ ପ୍ରଦାନ କରୁଛି ।

୮୯. ସଠିକ୍ ବାର୍ତ୍ତା ପ୍ରସାରଣ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ କାରଣ ଆମ ଅବଧାରଣା ଏବଂ ଆଭିମୁଖ୍ୟକୁ ପ୍ରଭାବିତ କରିବାରେ ଏହାର ଅନନ୍ୟ ଶକ୍ତି ରହିଛି । ଯେହେତୁ ସାଧାରଣ ଲୋକଙ୍କ ସମୃଦ୍ଧି ଓ କଲ୍ୟାଣ ଯେକୌଣସି ସରକାରର ପ୍ରମୁଖ ଦାୟିତ୍ୱ, ସେଥିପାଇଁ ପରିପୂରକ ତଥା ଫଳପ୍ରଦ ଭାବ ଆଦାନପ୍ରଦାନ ବ୍ୟବସ୍ଥା ଅନୁସୃଜନ ସହ ତାକୁ ବଜାୟ ରଖିବା ସରକାରଙ୍କ ପାଇଁ ଅପରିହାର୍ଯ୍ୟ । ମୁଁ ଆନନ୍ଦର ସହ ଉଲ୍ଲେଖ କରିବାକୁ ଚାହେଁ ଯେ ସୂଚନା ଓ ଲୋକସଂପର୍କ ବିଭାଗ ଉତ୍କର୍ଷ ପେଶାଦାରୀ ମନୋଭାବ ସହିତ ଏହାର ପରିପାଳନ କରିପାରିଛି, ଯାହାଫଳରେ ଭାରତ ସରକାରଙ୍କ ଦ୍ୱାରା ସଂସ୍ଥାପିତ 'ଶ୍ରେଷ୍ଠ ସରକାରୀ ପୋର୍ଟାଲ' ବର୍ଗରେ ଏହା ସମ୍ମାନଜନକ ଜାତୀୟ ପୁରସ୍କାର ହାସଲ କରିପାରିଛି ।

୯୦. ଶ୍ରମଜୀବୀମାନଙ୍କର ସ୍ୱାର୍ଥରକ୍ଷା ନିମନ୍ତେ ଗତବର୍ଷ ଜୁଲାଇ ମାସରେ ମୋ ସରକାର ୮୮ଟି ସୂଚିତ କାର୍ଯ୍ୟରେ ନିୟୋଜିତ ଶ୍ରମଜୀବୀମାନଙ୍କ ସର୍ବନିମ୍ନ ମଜୁରି ବୃଦ୍ଧି କରିଛି ଓ ୧୫ଟି ସୂଚିତ କାର୍ଯ୍ୟରେ ନିୟୋଜିତ ଶ୍ରମଜୀବୀମାନଙ୍କର କାର୍ଯ୍ୟ ପିଛା ମଜୁରି ହାର ସଂଶୋଧନ କରିଛି ।

୯୧. ଶିଶୁ ଶ୍ରମିକ ସମସ୍ୟାର ଯଥାର୍ଥ ମୁକାବିଲା ତଥା ଏହି ପ୍ରଥାକୁ ବନ୍ଦ କରିବା ଉଦ୍ଦେଶ୍ୟରେ ମୋ ସରକାର ଶିକ୍ଷା ଅଧିକାର ଆଇନ ୨୦୦୯ ଅଧୀନରେ ସେମାନଙ୍କ ନିମନ୍ତେ ସାର୍ବଜନୀନ ଶିକ୍ଷାପ୍ରାପ୍ତି ସହିତ ଏହି ପ୍ରଥାର ବିଲୋପ, ଶିଶୁ ଶ୍ରମିକ ଉଦ୍ଧାର ଏବଂ ରାଜ୍ୟରେ ସେମାନଙ୍କ ଥଇଥାନ ନିମନ୍ତେ ଏକ ସମନ୍ୱିତ ଦୃଷ୍ଟିଭଙ୍ଗୀ ସମ୍ବଳିତ ରାଜ୍ୟ କାର୍ଯ୍ୟଯୋଜନା ପ୍ରସ୍ତୁତ କରିଛି ।

୯୨. ଅନ୍ୟ ରାଜ୍ୟଗୁଡ଼ିକୁ ଯାଉଥିବା ଶ୍ରମିକମାନଙ୍କ ସୁରକ୍ଷା ଓ କଲ୍ୟାଣ ନିମନ୍ତେ ପ୍ରସ୍ତୁତ ରାଜ୍ୟ କାର୍ଯ୍ୟ ଯୋଜନାର ଅଂଶ ବିଶେଷ ଭାବରେ ଆମ ରାଜ୍ୟର ବଲାଙ୍ଗୀର, ବରଗଡ, କଳାହାଣ୍ଡି ଓ ନୂଆପଡା ଭଳି ଚାରୋଟି ଜିଲ୍ଲାରେ ପାଇଲଟ୍ ପ୍ରକଳ୍ପ ଭାବରେ ଗ୍ରହଣ କରାଯାଇ ଗ୍ରାମପଞ୍ଚାୟତ ସ୍ତରରୁ ଦେଶାନ୍ତରୀ ଶ୍ରମିକଙ୍କ ସ୍ୱେଚ୍ଛାକୃତ ପଞ୍ଜୀକରଣ ନିମନ୍ତେ ପଦକ୍ଷେପ ଗ୍ରହଣ କରାଯାଇଛି ଯାହାକି ଅନ୍ୟ ରାଜ୍ୟକୁ ଯାଉଥିବା ଶ୍ରମିକମାନଙ୍କୁ ଠାବ କରିବାରେ ସହାୟକ ହେବ ।

୯୩. ଓଡ଼ିଶା କୋଠାବାଡି ଓ ଅନ୍ୟାନ୍ୟ ନିର୍ମାଣ ଶ୍ରମିକ କଲ୍ୟାଣ ବୋର୍ଡ ପକ୍ଷରୁ ଶ୍ରମିକମାନଙ୍କୁ କାର୍ଯ୍ୟ ଉପକରଣ, ସୁରକ୍ଷା ସରଞ୍ଜାମ ଏବଂ ସାଇକେଲ କିଣିବା ନିମନ୍ତେ ଆର୍ଥିକ ସହାୟତା, ଶିକ୍ଷା ଲାଭ କରିବା ନିମନ୍ତେ ସହାୟତା, ବିବାହ ସହାୟତା, ପ୍ରସୂତିକାଳୀନ ସହାୟତା, ଦକ୍ଷତା ବୃଦ୍ଧି ସହାୟତା, ଦୁର୍ଘଟଣା ତଥା ବିଶେଷ ଅସୁସ୍ଥତାଜନିତ ସହାୟତା, ମୃତ୍ୟୁଜନିତ ସହାୟତା, ଅନ୍ତ୍ୟେଷ୍ଟିକ୍ରିୟା ନିମନ୍ତେ ସହାୟତା ଭଳି ବିଭିନ୍ନ ସୁବିଧାସୁଯୋଗଗୁଡ଼ିକୁ ରାଜ୍ୟର ପଞ୍ଜୀକୃତ ନିର୍ମାଣ ଶ୍ରମିକ ଓ ସେମାନଙ୍କ ପରିବାରଙ୍କୁ ପ୍ରଦାନ କରାଯାଉଛି । ଏହି ବୋର୍ଡ ଅଧୀନରେ ହିତାଧିକାରୀ ହିସାବରେ ଏଯାବତ୍ ୧୩,୦୭,୪୨୪ ଜଣ କୋଠାବାଡି ଓ ଅନ୍ୟାନ୍ୟ ନିର୍ମାଣ ଶ୍ରମିକ ପଞ୍ଜୀକୃତ ହୋଇଛନ୍ତି । ଚଳିତ ବର୍ଷ ବୋର୍ଡର ପାଣ୍ଠିରେ ୯୨୦.୬୫ କୋଟି ଟଙ୍କା ସେସ୍ ବାବଦରେ ଜମା କରାଯାଇଛି ଓ ସେଥିରୁ ୨.୭୪ ଲକ୍ଷ ହିତାଧିକାରୀଙ୍କୁ ବିଭିନ୍ନ ସହାୟତା ଆକାରରେ ୯୬.୧୮ କୋଟି ଟଙ୍କା ପ୍ରଦାନ କରାଯାଇଛି ।

୯୪. ମୋ ସରକାର ଗ୍ରାମାଞ୍ଚଳରେ ୩ ବର୍ଷ ପୂର୍ବରୁ ପଞ୍ଜୀକୃତ ନିର୍ମାଣ ଶ୍ରମିକ ପରିବାରକୁ 'ନିର୍ମାଣ ଶ୍ରମିକ ପକ୍କାଘର ଯୋଜନା' ମାଧ୍ୟମରେ ଗୃହ ନିର୍ମାଣ ପାଇଁ ୧ ଲକ୍ଷ ଟଙ୍କା ସହାୟତାଯୁକ୍ତ ୫୦ ହଜାର ବାସଗୃହ ଯୋଗାଇ ଦେଉଛି । ସେହିପରି ସହରାଞ୍ଚଳରେ ଆସି କାର୍ଯ୍ୟ କରୁଥିବା ଶ୍ରମିକମାନେ ଭଡାରେ ରହିବା ନିମନ୍ତେ ମୋ ସରକାର ଗୃହ ନିର୍ମାଣ ଓ ନଗର ଉନ୍ନୟନ ବିଭାଗ ସହାୟତାରେ ବାସଗୃହ କମ୍ପ୍ଲେକ୍ସ ନିର୍ମାଣ କରିବାର ପ୍ରସ୍ତାବ ରଖିଛି । ପୁନଶ୍ଚ ଖୁବ୍ ଶୀଘ୍ର ମୋ ସରକାର ନିର୍ମାଣ ଶ୍ରମିକ ପେନ୍‌ସନ୍ ଯୋଜନା ଆରମ୍ଭ କରିବାକୁ ଯାଉଛି ।

୯୫. ରାଷ୍ଟ୍ରୀୟ ସ୍ୱାସ୍ଥ୍ୟବୀମା ଯୋଜନାରେ ରାଜ୍ୟର ୩୦ଟି ଜିଲ୍ଲାରେ ୪୪.୦୮ ଲକ୍ଷ ହିତାଧିକାରୀ ପରିବାରକୁ ତାଲିକାଭୁକ୍ତ କରାଯାଇଛି । ଆଜି ସୁଦ୍ଧା ୪,୫୦,୪୯୫ ଜଣ ସ୍ମାର୍ଟ କାର୍ଡଧାରୀ ୧.୫୪ କୋଟି ଟଙ୍କାର ବୀମା ସୁବିଧା ପାଇପାରିଛନ୍ତି । କର୍ମଚାରୀ ରାଜ୍ୟ ବୀମା ଯୋଜନା ଅଧୀନରେ ରାଜ୍ୟରେ ଥିବା ୫ଟି କର୍ମଚାରୀ ରାଜ୍ୟ ବୀମା ଡାକ୍ତରଖାନା ଓ ୩୮ଟି କର୍ମଚାରୀ ରାଜ୍ୟ ବୀମା ସ୍ୱାସ୍ଥ୍ୟ ଉପକେନ୍ଦ୍ର ସହାୟତାରେ ୩,୭୮,୨୭୦ ଜଣ ବୀମାଭୁକ୍ତ ବ୍ୟକ୍ତି ଓ ସେମାନଙ୍କ ପରିବାରର ସଦସ୍ୟମାନଙ୍କୁ ସଂପୂର୍ଣ୍ଣ ଚିକିତ୍ସା ସୁବିଧା ପ୍ରଦାନ କରାଯାଇଛି । ଏହି ବର୍ଷ ଫେବୃଆରୀ ଶେଷ ସୁଦ୍ଧା କର୍ମଚାରୀ ରାଜ୍ୟବୀମା ଯୋଜନାରେ ୩,୭୮,୨୭୦ ଜଣଙ୍କୁ ବୀମାଭୁକ୍ତ କରାଯାଇଛି ।

୯୬. ଅବସରପ୍ରାପ୍ତ ସରକାରୀ କର୍ମଚାରୀମାନଙ୍କୁ ଠିକ୍ ସମୟରେ ପେନସନ୍ ପ୍ରଦାନ ନିମନ୍ତେ ମୋ ସରକାର ବିଭିନ୍ନ ବର୍ଗର ସରକାରୀ କର୍ମଚାରୀଙ୍କ ପାଇଁ ନିର୍ଦ୍ଦିଷ୍ଟ ସମୟ ସୂଚୀ ନିର୍ଦ୍ଧାରଣ କରିଛି ଏବଂ ପ୍ରାକ୍ ଯାଞ୍ଚ ବୈଠକ କରିବା ସହିତ ରାଜ୍ୟର ସବୁ ଜିଲ୍ଲାରେ ପେନ୍‌ସନ୍‌ଭୋଗୀଙ୍କ ବିଚାରାଧୀନ ପେନସନ୍ ସମସ୍ୟାର ସମାଧାନ ନିମନ୍ତେ ପେନ୍‌ସନ୍ ଅଦାଲତ ଆୟୋଜନ କରୁଛି ।

ମୋ ସରକାର ସାଧାରଣ ଲୋକଙ୍କ ଅଭିଯୋଗର ତ୍ୱରିତ ଫଳପ୍ରଦ ସମାଧାନ କରିବା ପାଇଁ ସଦାସର୍ବଦା ସକ୍ରିୟ ଅଛି । ମୋ ସରକାର ଜିଲ୍ଲାଗୁଡିକର ଅଭିଯୋଗ ମ୍ୟାପ୍ ପ୍ରସ୍ତୁତ କରିଛି ଯାହା ସରକାରଙ୍କ ବିଭିନ୍ନ ବିଭାଗଗୁଡିକୁ ଅଭିଯୋଗର କାରଣ ସଠିକ୍ ଭାବରେ ଚିହ୍ନଟ କରିବା ସହିତ ପ୍ରତିକାର ପଦ୍ଧତି ନିର୍ଣ୍ଣୟ କରିବା ନିମନ୍ତେ ସାମର୍ଥ୍ୟ ଯୋଗାଇଛି । ସଚିବାଳୟ ସମେତ ସବୁ ଜିଲ୍ଲାପାଳଙ୍କ କାର୍ଯ୍ୟାଳୟରେ ଅଭିଯୋଗ ବାକ୍ସ ସ୍ଥାପିତ ହୋଇଛି ଓ ଲୋକମାନେ ସିଧାସଳଖ ସମସ୍ୟା ଜଣାଇବା ପାଇଁ ଏକ ଟୋଲ୍ ଫ୍ରି ନମ୍ବରର ପ୍ରଚଳନ କରାଯାଇଛି । ଜିଲ୍ଲାର ଜିଲ୍ଲାପାଳ ଓ ଆରକ୍ଷୀ ଅଧୀକ୍ଷକମାନେ ବ୍ଲକ୍ ଓ ଗ୍ରାମପଞ୍ଚାୟତ କାର୍ଯ୍ୟାଳୟ ସମେତ ଜିଲ୍ଲାର ବିଭିନ୍ନ ସ୍ଥାନରେ ମିଳିତ ଅଭିଯୋଗ ଶୁଣାଣି କରିବା ସହିତ ସାଧାରଣ ଲୋକମାନଙ୍କ ସହ ଭାବ ବିନିମୟ କରି ଫଳପ୍ରଦ ଭାବରେ ଅଭିଯୋଗର ସମାଧାନ କରୁଛନ୍ତି ।

୯୭. ଏକ ଚଳଚଞ୍ଚଳ ପର୍ଯ୍ୟଟନ କ୍ଷେତ୍ର ପର୍ଯ୍ୟାପ୍ତ ଆୟ ସୃଷ୍ଟିକାରୀ ହେବା ସହିତ ଐତିହ୍ୟ ଓ ସାଂସ୍କୃତିକ ପରମ୍ପରାକୁ ସଂଖ୍ୟାଧିକ ଜନସାଧାରଣଙ୍କ ନିକଟରେ ଉପସ୍ଥାପନ କରିବାର ଏକ ବଳିଷ୍ଠ ମାଧ୍ୟମ ଅଟେ । ମୋ ସରକାର ଏହି କ୍ଷେତ୍ରର ଲୁକ୍କାୟିତ ସାମର୍ଥ୍ୟ ସଂପର୍କରେ ପୂର୍ଣ୍ଣ ଅବଗତ ଏବଂ ଏହାର ଅଭିବୃଦ୍ଧିରେ ଯୋଗଦାନ କରିବା ପାଇଁ ସାମର୍ଥ୍ୟ ରଖୁଥିବା ବ୍ୟକ୍ତି ଓ ଗୋଷ୍ଠୀ ସହ ଅର୍ଥପୂର୍ଣ୍ଣ ଭାବରେ ଭାବ ବିନିମୟ କରୁଛି । ପର୍ଯ୍ୟଟନ କ୍ଷେତ୍ରର ସାମଗ୍ରିକ ବିକାଶ ନିମନ୍ତେ ଏକ ଉତ୍ସର୍ଗୀକୃତ ନୀତି ପ୍ରଣୟନ କରିବା ସହିତ ମୋ ସରକାର ସକ୍ରିୟ ଭାବରେ ରାଜ୍ୟର ବ୍ରାଣ୍ଡିଂ କରିବାକୁ ପେଶାଦାର ସଂସ୍ଥା ଓ ମାଧ୍ୟମ ଜରିଆରେ ରାଜ୍ୟର ପ୍ରମୁଖ ପର୍ଯ୍ୟଟନ ସମ୍ବଳକୁ ଜାତୀୟ ଓ ଅନ୍ତର୍ଜାତୀୟ ସ୍ତରର ବିଭିନ୍ନ ମଞ୍ଚରେ ଉପସ୍ଥାପନ କରୁଛି ।

୯୮. ରାଜ୍ୟ ମଧ୍ୟରେ ଓ ରାଜ୍ୟ ବାହାରେ ରହିଥିବା ତୀର୍ଥସ୍ଥଳୀ ଏବଂ ପର୍ଯ୍ୟଟନ କ୍ଷେତ୍ରଗୁଡ଼ିକୁ ଭ୍ରମଣରେ ଯାଉଥିବା ସବୁ ଧର୍ମର ବରିଷ୍ଠ ନାଗରିକମାନଙ୍କୁ ପ୍ରୋତ୍ସାହିତ କରିବା ଲକ୍ଷ୍ୟରେ ମୋ ସରକାର ଭାରତୀୟ ରେଳ ପରିଚର୍ଯ୍ୟା ଓ ପର୍ଯ୍ୟଟନ ନିଗମ(ଆଇ.ଆର୍.ସି.ଟି.ସି.) ସହିତ ସମନ୍ୱୟ ରକ୍ଷାପୂର୍ବକ 'ବରିଷ୍ଠ ନାଗରିକ ତୀର୍ଥଯାତ୍ରା ଯୋଜନା' ନାମରେ ଏକ ନୂତନ ଉଦ୍ୟମ ଆରମ୍ଭ କରିଛି । ଏହି ଯୋଜନାଟିର ତଦାରଖ ନିମନ୍ତେ ଓଡ଼ିଶା ପର୍ଯ୍ୟଟନ ଉନ୍ନୟନ ନିଗମରେ ଏକ ସ୍ୱତନ୍ତ୍ର ପ୍ରକୋଷ୍ଠ ଗଠନ କରାଯାଇଛି ।

୯୯. ସାଂସ୍କୃତିକ ସଂପଦ ମାଧ୍ୟମରେ ଯେକୌଣସି ସମାଜ ସୁପରିଚିତି ଅର୍ଜନ କରିଥାଏ । ମୋ ରାଜ୍ୟ ଓଡ଼ିଶାକୁ ତା'ର ସମୃଦ୍ଧ ସାଂସ୍କୃତିକ ପରମ୍ପରା, ଐତିହ୍ୟ, ଐତିହାସିକ କୀର୍ତ୍ତିରାଜି, ପ୍ରତ୍ନତାତ୍ତ୍ୱିକ ସ୍ଥାନ, ଜନଜାତି ତଥା ପାରମ୍ପରିକ କଳା ଓ ଚାରୁକଳା, ହସ୍ତତନ୍ତ ଓ ହସ୍ତଶିଳ୍ପ ଏକ ଅନନ୍ୟ ପରିଚିତି ପ୍ରଦାନ କରିଛି । ଏଭଳି ଅନନ୍ୟ ସାଂସ୍କୃତିକ ଐତିହ୍ୟର ସଂରକ୍ଷଣ ଓ ପ୍ରସାର ନିମନ୍ତେ ମୋ ସରକାର ଆମ ଇତିହାସର ସୁରକ୍ଷା ପାଇଁ କାର୍ଯ୍ୟରତ ବିଭିନ୍ନ ଅନୁଷ୍ଠାନଗୁଡ଼ିକୁ ଆର୍ଥିକ ଓ ଅଣ-ଆର୍ଥିକ ସହାୟତା ମାଧ୍ୟମରେ ସଶକ୍ତ ଓ ଦୃଢ଼ କରିବା ପାଇଁ ନିରନ୍ତର ଉଦ୍ୟମ କରୁଛି । ଆମ ସାଂସ୍କୃତିକ ଐତିହ୍ୟକୁ ସୁରକ୍ଷିତ କରିବା ନିମନ୍ତେ ଆମର ନିରନ୍ତର ପ୍ରତିବଦ୍ଧତା ଆମ ପାଇଁ ନୂତନ ଦୃଷ୍ଟିଭଙ୍ଗୀ ଉନ୍ମୁକ୍ତ କରିଛି ଏବଂ ଆମର ଶିଳ୍ପୀ-କଳାକାରମାନଙ୍କ କଲ୍ୟାଣ ନିମନ୍ତେ ମୋ ସରକାର ସେମାନଙ୍କ ପାଇଁ ବିଭିନ୍ନ ଯୋଜନା ଓ କାର୍ଯ୍ୟକ୍ରମମାନ ପ୍ରଣୟନ କରି ସେମାନଙ୍କ କଲ୍ୟାଣ ଦିଗରେ ନିଜର ପ୍ରତିବଦ୍ଧତା ପ୍ରକଟିତ କରିଛି ।

୧୦୦. ମୁଁ ଆପଣମାନଙ୍କୁ ସମସ୍ତଙ୍କୁ ଏକଥା ଗର୍ବର ସହ କହିବାକୁ ଚାହେଁ ଯେ ଆମର ସ୍ୱାତନ୍ତ୍ର୍ୟକୁ ସ୍ୱୀକୃତି ପ୍ରଦାନପୂର୍ବକ ଜବାହରଲାଲ ନେହେରୁ ବିଶ୍ୱବିଦ୍ୟାଳୟ ଭାରତୀୟ ଭାଷାକେନ୍ଦ୍ରରେ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି ଅଧ୍ୟୟନ ଉପରେ 'ଆଦିକବି ଶାରଳା ଦାସ ଓଡ଼ିଆ ଅଧ୍ୟୟନ ଚେୟାର' ନାମରେ ଏକ ଚେୟାର ପ୍ରତିଷ୍ଠା କରିବାକୁ ସମ୍ମତ ହୋଇଛି । ଏକ ୱେବ୍‌ଭିତ୍ତିକ ଓଡ଼ିଆ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ସମେତ ମୋ ସରକାର ଓଡ଼ିଆ ଭାଷା ଓ ସାହିତ୍ୟର ପ୍ରସାର ନିମନ୍ତେ ଅନେକ ପଦକ୍ଷେପ ଗ୍ରହଣ କରିଛି ।

୧୦୧. ଶିଶୁମାନଙ୍କୁ ବଢିବା ସମୟରେ ପୁଷ୍ଟି ସହାୟତା ଯୋଗାଇଦେବା, ପ୍ରାକ୍ ଗର୍ଭ ଓ ଗର୍ଭଧାରଣ ପରବର୍ତ୍ତୀ ସମୟରେ ମହିଳାମାନଙ୍କ ସ୍ୱାସ୍ଥ୍ୟର ସୁରକ୍ଷା ତଥା କର୍ମନିବୃତ୍ତି କାଳରେ ପ୍ରୋତ୍ସାହନ ଯୋଗାଇ ଦେବା ଲକ୍ଷ୍ୟରେ ରାଜ୍ୟର ନିଜସ୍ୱ ଅଭିନବ

ଯୋଜନା 'ମମତା'ରେ ସର୍ତ୍ତମୂଳକ ଅର୍ଥ ହସ୍ତାନ୍ତର ବ୍ୟବସ୍ଥା ସହିତ ଅର୍ଥନୈତିକ ସଶକ୍ତିକରଣ ନିମନ୍ତେ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀଙ୍କୁ ପ୍ରୋତ୍ସାହନ ଯୋଗାଇ ଦେବା ଭଳି ପଦକ୍ଷେପ ମୋ ସରକାରଙ୍କର ମା' ଓ ଶିଶୁଙ୍କ ସାମର୍ଥ୍ୟ ବୃଦ୍ଧି ନିମନ୍ତେ ଗ୍ରହଣ କରାଯାଇଥିବା କେତୋଟି ଗୁରୁତ୍ୱପୂର୍ଣ୍ଣ ଉପକ୍ରମ ।

୧୦୨. ରାଜ୍ୟର ଶିଶୁମାନଙ୍କ ସ୍ୱାର୍ଥର ସୁରକ୍ଷା ନିମନ୍ତେ ମୋ ସରକାର ଓଡ଼ିଶା ରାଜ୍ୟ ଶିଶୁ ଅଧିକାର ସୁରକ୍ଷା କମିଶନ ଓ ଓଡ଼ିଶା ରାଜ୍ୟ ଶିଶୁ ସୁରକ୍ଷା ସମିତିକୁ କାର୍ଯ୍ୟକ୍ଷମ କରିଛି । ସମାନ ସୁଯୋଗକୁ ପ୍ରୋତ୍ସାହିତ କରାଉଥିବା ଅନୁକୂଳ ପରିବେଶ ସୃଷ୍ଟି, ବୈଷମ୍ୟ ଦୂରୀକରଣ, ସାମଗ୍ରିକ ଉନ୍ନତି, ଦକ୍ଷତା ବୃଦ୍ଧି ତଥା ସଶକ୍ତିକରଣ ପାଇଁ ମୋ ସରକାର ମହିଳା ଓ ବାଳିକାମାନଙ୍କ ନିମନ୍ତେ ଏକ ସମର୍ପିତ ନୀତି ପ୍ରଣୟନ କରିଛନ୍ତି ।

୧୦୩. ପ୍ରତିବଦ୍ଧତା ସହ ବିଭିନ୍ନ ସାମାଜିକ ସୁରକ୍ଷା କାର୍ଯ୍ୟକ୍ରମଗୁଡ଼ିକ ନିମନ୍ତେ ଲକ୍ଷ୍ୟ ଧାର୍ଯ୍ୟ କରିବା, ମାର୍ଗ ପ୍ରଦର୍ଶନ କରିବା ଓ ପ୍ରଶାସନିକ ପରିଚାଳନା କରିବା ପାଇଁ ମୋ ସରକାର 'ସାମାଜିକ ସୁରକ୍ଷା ଓ ଭିନ୍ନକ୍ଷମ ସଶକ୍ତିକରଣ' ନାମରେ ଏକ ସ୍ୱତନ୍ତ୍ର ପ୍ରଶାସନିକ ବିଭାଗ ସୃଷ୍ଟି କରିଛି । ମୁଁ ଆନନ୍ଦର ସହ ଏକଥା ଘୋଷଣା କରୁଛି ଯେ ମୋ ସରକାର ବର୍ତ୍ତମାନ ବୃଦ୍ଧବୃଦ୍ଧା, ବିଧବା, ଭିନ୍ନକ୍ଷମ, ଏଡସ୍ ପୀଡିତ ବର୍ଗରେ ୪୦.୨୩ଲକ୍ଷ ହିତାଧିକାରୀଙ୍କୁ ପେନ୍‌ସନ୍ ପ୍ରଦାନ କରୁଛି । ଚଳିତ ବର୍ଷ ମୋ ସରକାର ୩୦ ବର୍ଷରୁ ଊର୍ଦ୍ଧ୍ୱ ଅବିବାହିତା ମହିଳାମାନଙ୍କୁ ମଧ୍ୟ ଏହି ଯୋଜନାରେ ଅନ୍ତର୍ଭୁକ୍ତ କରିଛି ।

୧୦୪. ମୋ ସରକାର ଚଳିତ ବର୍ଷରେ ୩୯,୩୫୭ ଭିନ୍ନକ୍ଷମ ଛାତ୍ରଛାତ୍ରୀଙ୍କୁ ବୃତ୍ତି ପ୍ରଦାନ କରିଛି । ଜଟଣୀଠାରେ ଏକ ସ୍ୱତନ୍ତ୍ର ଆଇଟିଆଇ ପ୍ରତିଷ୍ଠା କରାଯାଇଛି ଯେଉଁଥିରେ ଆସନ୍ତା ଶିକ୍ଷା ବର୍ଷରୁ ଭିନ୍ନକ୍ଷମ ଛାତ୍ରଛାତ୍ରୀମାନେ ନାମ ଲେଖାଇବେ । ସରକାରୀ ଓ ବେସରକାରୀ ନିଯୁକ୍ତିରେ ଭିନ୍ନକ୍ଷମମାନଙ୍କ ପାଇଁ ୩% ସ୍ଥାନ ସଂରକ୍ଷଣକୁ ଏହି ଉଦ୍ଦେଶ୍ୟରେ ଗଠିତ ସ୍ୱତନ୍ତ୍ର ସେଲ୍ ମାଧ୍ୟମରେ କଡାକଡି ଭାବରେ ତଦାରଖ କରାଯାଉଛି । ମାନସିକ ଭିନ୍ନକ୍ଷମ ବ୍ୟକ୍ତିଙ୍କ ଚିକିତ୍ସା ଓ ଥଇଥାନ ନିମନ୍ତେ କାର୍ଯ୍ୟରତ ଅନୁଷ୍ଠାନ ଏବଂ ସଂସ୍ଥାଗୁଡ଼ିକୁ ମୋ ସରକାର ଚିହ୍ନଟ କରିଛି ଓ ଏ ପ୍ରକାର ଉପଶମକ କାର୍ଯ୍ୟ ପାଇଁ ଆର୍ଥିକ ସହାୟତା ଯୋଗାଇ ଦେଉଛି । ବିଭାଗ ରାଜ୍ୟ ନିଯୁକ୍ତି ମିଶନ ପାଣ୍ଠି ସହାୟତାରେ ଭିନ୍ନକ୍ଷମଙ୍କ ପାଇଁ ଧନ୍ଦାମୂଳକ ପୁନର୍ବାସ କେନ୍ଦ୍ର ସହଯୋଗରେ ବିଭିନ୍ନ ଦକ୍ଷତା ବିକାଶ ପ୍ରଶିକ୍ଷଣ କାର୍ଯ୍ୟକାରୀ କରୁଛି । ଚଳିତ ବର୍ଷ ମୋ ସରକାର ୧୬୫୧ ଜଣ ଭିନ୍ନକ୍ଷମଙ୍କୁ ଜୀବିକା ନିର୍ବାହ କାର୍ଯ୍ୟ ପାଇଁ ମୁଖ୍ୟମନ୍ତ୍ରୀ ରିଲିଫ ପାଣ୍ଠି ସହାୟତା ସହ ଡିଆର୍‌ଆଇ ଋଣ ଯୋଗାଇ ଦେଇଛି ।

୧୦୫. ଅନ୍‌ଲାଇନ୍‌ରେ ଭିନ୍ନକ୍ଷମ ପ୍ରମାଣପତ୍ର ପାଇବା ପାଇଁ ଆବେଦନ ଦାଖଲ ଓ ପ୍ରମାଣପତ୍ର ପ୍ରଦାନ ବ୍ୟବସ୍ଥା କରାଯାଇଛି ଏବଂ ମୋ ସରକାର ଇତିମଧ୍ୟରେ ୭.୬୧ ଲକ୍ଷ ଭିନ୍ନକ୍ଷମ ସାର୍ଟିଫିକେଟ୍ ପ୍ରଦାନ କରିସାରିଛି । ଏହି ମାସ ଶେଷ ସୁଦ୍ଧା ମୋ ସରକାର ଦୃଷ୍ଟିଶକ୍ତି ଦୁର୍ବଳ ଛାତ୍ରଛାତ୍ରୀମାନଙ୍କୁ ୧୦୭ଟି ଲାପ୍‌ଟପ୍ ବିତରଣ କରିବାକୁ ଲକ୍ଷ୍ୟ ରଖିଛି ।

୧୦୬. ରାଜ୍ୟ ତଥା ରାଜ୍ୟବାସୀଙ୍କ ସଶକ୍ତିକରଣ ପାଇଁ ଆନ୍ତଃରାଜ୍ୟ ଓ ଅନ୍ତଃରାଜ୍ୟ ସଂଯୋଗୀକରଣ ବିଶେଷ ଗୁରୁତ୍ୱପୂର୍ଣ୍ଣ । ମୋ ସରକାର ଯାତ୍ରୀ ଏବଂ ସାମଗ୍ରୀର ଅବାଧ ଚଳାଚଳ ପାଇଁ ଅନେକ ପ୍ରକଳ୍ପ କାର୍ଯ୍ୟକାରୀ କରିଛନ୍ତି । ମୋ ସରକାର ସହରର ଗୁରୁତ୍ୱପୂର୍ଣ୍ଣ ସ୍ଥାନଗୁଡ଼ିକରେ ଭିଡ ହ୍ରାସ ପାଇଁ ସହର ଭିତର ରାସ୍ତା ଯୋଗାଯୋଗ ଉନ୍ନତିକରଣ ପାଇଁ ରେଲ୍ ଓଭରବ୍ରିଜ୍, ଅଣ୍ଡରପାସ୍ ଆଦି ନିର୍ମାଣ ପାଇଁ ମଧ୍ୟ ପ୍ରୟାସ କରିଛନ୍ତି । ଦକ୍ଷିଣାଞ୍ଚଳ ଜିଲ୍ଲାଗୁଡ଼ିକରୁ ପଣ୍ୟଦ୍ରବ୍ୟ ପରିବହନ ନିମନ୍ତେ ଗୁରୁତ୍ୱପୂର୍ଣ୍ଣ ବିଜୟୱାଡ–ରାଞ୍ଚି କରିଡରର କାର୍ଯ୍ୟ ଧାର୍ଯ୍ୟ ସୂଚୀ ମୁତାବକ ଚାଲିଛି ଏବଂ ଆମ ରାଜ୍ୟ ଦେଇ ଯାଇଥିବା ଅଂଶର କାର୍ଯ୍ୟ ୨୦୧୯ ସୁଦ୍ଧା ସଂପୂର୍ଣ୍ଣ କରିବାକୁ ଲକ୍ଷ୍ୟ ରଖାଯାଇଛି । ବାମପନ୍ଥୀ ଉଗ୍ରବାଦୀଙ୍କ ଧମକ ସତ୍ତ୍ୱେ, ମୋ ସରକାର ବାମପନ୍ଥୀ ଉଗ୍ରବାଦ ଯୋଜନା ଅନ୍ତର୍ଗତ ଭାରତ ସରକାରଙ୍କ ଦ୍ୱାରା ମଂଜୁରପ୍ରାପ୍ତ ୯୪୮.୫୬ କୋଟି ଟଙ୍କା ବିନିଯୋଗରେ ୬୧୪.୮୨ କିଲୋମିଟର ରାସ୍ତାର ଉନ୍ନତିକରଣ ପାଇଁ କାର୍ଯ୍ୟକାରୀ ହେଉଥିବା ୧୪ଟି ପ୍ରକଳ୍ପରେ ଉଲ୍ଲେଖନୀୟ ଅଗ୍ରଗତି ହାସଲ କରିପାରିଛି । ୨୦୧୭ ଆଦ୍ୟଭାଗରେ ୧୫୪ଟି ବିଚ୍ଛିନ୍ନାଞ୍ଚଳ ଗ୍ରାମବାସୀମାନଙ୍କ ଦୀର୍ଘ ଦିନର ସ୍ୱପ୍ନ ରାଜ୍ୟ ପାଣ୍ଠିରୁ ନିର୍ମିତ ଗୁରୁପ୍ରିୟା ସେତୁ କାର୍ଯ୍ୟକ୍ଷମ ହେବା ସହିତ ସାକାର ହୋଇପାରିବ ।

◆◆◆

୧୦୭. ପଶ୍ଚିମ ଓଡ଼ିଶା ଦେଇ ଜଗଦଲପୁର ଓ ରାଉରକେଲାକୁ ସଂଯୋଗ କରୁଥିବା ୩୬୦୦ କୋଟି ଟଙ୍କା ବିନିଯୋଗରେ ନିର୍ମାଣାଧୀନ ୪ ଲେନ୍ ବିଶିଷ୍ଟ ୬୫୦.୬୪ କିଲୋମିଟର ବିଜୁ ଏକ୍ସପ୍ରେସ୍ ୱେର ନିର୍ମାଣ କାର୍ଯ୍ୟ ସଠିକ୍ ଭାବରେ ଆରମ୍ଭ ହୋଇଛି ଓ ଅଗ୍ରଗତି ସନ୍ତୋଷଜନକ ରହିଛି । ଏହା ବ୍ୟତୀତ ରାଜ୍ୟ ରାଜପଥ ଉନ୍ନୟନ ପ୍ରକଳ୍ପରେ ୪୨୮ କିଲୋମିଟରର ରାଜ୍ୟ ରାଜପଥକୁ ୨ ଲେନ୍ ରାସ୍ତାରେ ପରିଣତ କରାଯାଇଛି ।

୧୦୮. ଆମ ଲୋକମାନଙ୍କର ବିଶେଷ କରି ଗ୍ରାମୀଣ ଗରିବ ଓ ବଞ୍ଚିତ ଶ୍ରେଣୀର ଜୀବନଧାରଣ ମାନରେ ଉନ୍ନତି ଆଣିବା ପାଇଁ ପାନୀୟ ଜଳ ଯୋଗାଣ, ରାସ୍ତା ସଂଯୋଗୀକରଣ ଏବଂ ନିଷ୍କାସନ ବ୍ୟବସ୍ଥା ଭଳି ମୌଳିକ ସେବା ଯୋଗାଣକୁ ମୋ ସରକାର ଅଗ୍ରାଧିକାର ଦେଇଆସିଛି । ମୋ ସରକାରଙ୍କ ଗ୍ରାମ୍ୟ ଉନ୍ନୟନ ବିଭାଗକୁ ଅଗ୍ରାଧିକାର ଭିତ୍ତିରେ ଏ ଦିଗରେ ଆବଶ୍ୟକୀୟ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ନିମନ୍ତେ ଦାୟିତ୍ୱ ନ୍ୟସ୍ତ କରାଯାଇଛି ।

୧୦୯. ମୁଁ ଆନନ୍ଦର ସହିତ ଏହି ପବିତ୍ର ଗୃହକୁ ଜଣାଉଅଛି ଯେ ମୋ ସରକାର ଓଡ଼ିଶାର ଗ୍ରାମାଞ୍ଚଳରେ ୪,୧୫,୫୪୨ ନଳକୂପ, ୧୨,୮୯୫ ପରିମଳ କୂପ ସ୍ଥାପନ ସହ ୧୦,୧୬୦ ପାଇପ ଯୋଗେ ପାନୀୟ ଜଳଯୋଗାଣ ପ୍ରକଳ୍ପ କାର୍ଯ୍ୟକାରୀ କରିଛି । ଏହା ବ୍ୟତୀତ ଏହି ବର୍ଷ ୧୭,୧୨୨ ସ୍ପଟ୍ ଜଳ ଉତ୍ସ, ୧୧୩ ପାଇପ ଯୋଗେ ପାନୀୟ ଜଳ ଯୋଗାଣ ପ୍ରକଳ୍ପ ଓ ୧୩୮୬ ସୌରଶକ୍ତି ଚାଳିତ ପ୍ରକଳ୍ପ ସଂପୂର୍ଣ୍ଣ ହୋଇଛି । ମୋ ସରକାର ୮ଟି ଜିଲ୍ଲାରେ ଖଣି କାର୍ଯ୍ୟ ଦ୍ୱାରା ପ୍ରଭାବିତ ୪୨୭ଟି ଗ୍ରାମରେ ପାନୀୟ ଜଳଯୋଗାଣ ବ୍ୟବସ୍ଥାର ଉନ୍ନତିକରଣ ପାଇଁ ୩୭୦ କୋଟି ଟଙ୍କା ଏବଂ ଏହି ସବୁ ଗ୍ରାମଗୁଡିକର ୧ ଲକ୍ଷରୁ ଊର୍ଦ୍ଧ୍ୱ ପରିବାରରେ ପରିମଳ ସୁବିଧାର ଉନ୍ନତି ପାଇଁ ୧୨୩ କୋଟି ଟଙ୍କା ବିନିଯୋଗ କରିବାକୁ ଯୋଜନା କରିଛି ଏବଂ ଏହା ବିଜୁ ପକ୍କାଘର ଯୋଜନାରେ ପକ୍କାଘର ଯୋଗାଣ ସହିତ ଖଣି ପ୍ରଭାବିତ ଅଞ୍ଚଳରେ ବସବାସ କରୁଥିବା ପ୍ରାୟ ୫୦ ହଜାର ପରିବାରଙ୍କ ଜୀବନଶୈଳୀରେ ଆଖିଦୃଶିଆ ପରିବର୍ତ୍ତନ ଆଣିପାରିବ । ଗ୍ରାମାଞ୍ଚଳ ଲୋକମାନଙ୍କୁ ଜୀବାଣୁ ବାହକ ରୋଗରୁ ସୁରକ୍ଷା ଦେବା ତଥା ସେମାନଙ୍କ ମଧ୍ୟରେ ସ୍ୱାସ୍ଥ୍ୟକର ପରିମଳ ଅଭ୍ୟାସ ଅନୁସୃତ କରାଇବା ଲକ୍ଷ୍ୟରେ ମୋ ସରକାର ୭ ଲକ୍ଷ ପାଇଖାନା ନିର୍ମାଣ କରିଛି ।

୧୧୦. ଅନ୍ୟ କୌଣସି ରାସ୍ତା ସଂଯୋଗୀକରଣ କାର୍ଯ୍ୟକ୍ରମରେ ଅନ୍ତର୍ଭୁକ୍ତ ହୋଇନଥିବା ୧୦୦ ପର୍ଯ୍ୟନ୍ତ ଜନସଂଖ୍ୟା ବିଶିଷ୍ଟ ବସତିକୁ ସବୁଦିନିଆ ରାସ୍ତା ସଂଯୋଗ ପାଇଁ ମୋ ସରକାର ନୂତନ ଭାବରେ 'ମୁଖ୍ୟମନ୍ତ୍ରୀ ସଡକ ଯୋଜନା' ଆରମ୍ଭ କରିଛନ୍ତି ଏବଂ ଚଳିତ ବର୍ଷ ପ୍ରତ୍ୟେକ ନିର୍ବାଚନ ମଣ୍ଡଳୀରେ ଯଥେଷ୍ଟ ପାଣ୍ଠି ବ୍ୟବସ୍ଥା ସହ ଏହିପରି ତିନିଗୋଟି ରାସ୍ତା ହାତକୁ ନିଆଯାଇଛି ।

୧୧୧. ନିଜେ ନିଜର ଅଭିବୃଦ୍ଧି, ବିକାଶ ଓ ମଙ୍ଗଳ ପାଇଁ ଯୋଜନା କରିବା ନିମନ୍ତେ ସମୂହ ସଶକ୍ତିକରଣ ମୋ ସରକାରଙ୍କର ପ୍ରମୁଖ ସଂଚାଳକ ନୀତି ଏବଂ ଏହାକୁ ସୁନିଶ୍ଚିତ କରିବାକୁ ମୋ ସରକାର ପଞ୍ଚାୟତିରାଜ ବିଭାଗ ମାଧ୍ୟମରେ ଅନୁରୂପ ପରିମାଣର ଯୋଜନା ସଂଯୋଜନା ତଥା କାର୍ଯ୍ୟକ୍ରମ ପରିଚାଳନା କରୁଛନ୍ତି । ଜାତୀୟ ଗ୍ରାମୀଣ ଜୀବିକା ନିର୍ବାହ ମିଶନ ଅଧୀନରେ ୪୦ହଜାର ୮୪୮ ସ୍ୱୟଂ ସହାୟକ ଗୋଷ୍ଠୀଙ୍କୁ ଆନୁଷ୍ଠାନିକ ଋଣ ଯୋଗାଣ କରାଯାଇଛି ଏବଂ ମହାତ୍ମାଗାନ୍ଧୀ ଜାତୀୟ ଗ୍ରାମୀଣ ନିଶ୍ଚିତ କର୍ମନିଯୁକ୍ତି ଯୋଜନାରେ ୫୭୩.୭୪ ଲକ୍ଷ ଶ୍ରମଦିବସ ସୃଷ୍ଟି କରାଯାଇଛି ।

୧୧୨. ଭାରତ ସରକାରଙ୍କ ପକ୍ଷରୁ କେନ୍ଦ୍ରୀୟ ପ୍ରାୟୋଜିତ ଯୋଜନା ପଛୁଆ ଅଞ୍ଚଳ ବିକାଶ ପାଣ୍ଠି ବନ୍ଦ ହେବା ପରେ ମୋ ସରକାର ଅର୍ଥ ଆବଣ୍ଟନକୁ ପ୍ରାୟ ଦୁଇଗୁଣ କରି ଗୋପବନ୍ଧୁ ଗ୍ରାମୀଣ ଯୋଜନାକୁ ରାଜ୍ୟର ସମସ୍ତ ୩୦ଗୋଟି ଜିଲ୍ଲାକୁ ସଂପ୍ରସାରିତ କରିଛି । ମୁଁ ଆନନ୍ଦର ସହ ଜଣାଉଛି ଯେ, ମୋ ସରକାର ଗ୍ରାମାଞ୍ଚଳରେ ୫୪୬.୬୧ କିଲୋମିଟର କଂକ୍ରିଟ୍ ରାସ୍ତା ନିର୍ମାଣ କରିସାରିଛି ।

୧୧୩. ମୋ ସରକାର ୨୦୧୪ ମସିହାରେ ଦୁଇ ବର୍ଷ ସମୟସୀମା ମଧ୍ୟରେ ଅନ୍ତତଃ ୧୦ ଲକ୍ଷ କଚ୍ଚାଘରକୁ ପକ୍କାଘରରେ ପରିଣତ କରିବାକୁ ଲକ୍ଷ୍ୟ ଧାର୍ଯ୍ୟ କରିଥିଲା ଏବଂ ଏହି ସମୟ ମଧ୍ୟରେ ବିଭିନ୍ନ ଗୃହ ନିର୍ମାଣ ଯୋଜନାର ଅଗ୍ରଗତି ପରିପ୍ରେକ୍ଷୀରେ ମୋ ସରକାର ଏହି ଲକ୍ଷ୍ୟ ହାସଲ କରିବାକୁ ସଂପୂର୍ଣ୍ଣ ସମର୍ଥ ବୋଲି ମୁଁ ଏହି ଗୃହକୁ ଭରସା ଦେଉଛି ।

୧୧୪. ମୋ ସରକାର ଅନୁଗୋଳ, ଢେଙ୍କାନାଳ, ଯାଜପୁର, ଝାରସୁଗୁଡା, କେନ୍ଦୁଝର, କୋରାପୁଟ, ମୟୂରଭଞ୍ଜ ଓ ସୁନ୍ଦରଗଡ ଜିଲ୍ଲାର ଖଣି କାର୍ଯ୍ୟ ଦ୍ୱାରା ପ୍ରଭାବିତ ଅଞ୍ଚଳର ସମସ୍ତ କଚ୍ଚାଘରକୁ ପକ୍କାଘରରେ ପରିଣତ କରିବାକୁ ନିଷ୍ପତ୍ତି ନେଇଛି, ଯେଉଁଠାରେ ପ୍ରାୟ ୫୦ ହଜାର ପ୍ରଭାବିତ ପରିବାରଙ୍କୁ ବିଜୁ ପକ୍କାଘର(ଖଣି) ଯୋଜନାରେ ପକ୍କାଘର ଯୋଗାଇ ଦିଆଯିବ । ମୋ ସରକାର ସମସ୍ତ ଯୋଗ୍ୟ ହିତାଧିକାରୀଙ୍କୁ ମାର୍ଚ୍ଚ ୫ ତାରିଖ ସୁଦ୍ଧା କାର୍ଯ୍ୟାଦେଶ ପ୍ରଦାନ ସହ ଅଗଷ୍ଟ ୧୫ ମଧ୍ୟରେ ଗୃହ ନିର୍ମାଣ ଶେଷ କରିବା ଲକ୍ଷ୍ୟ ହାସଲ କରିବା ପାଇଁ ଦୃଢ ସଂକଳ୍ପ ।

୧୧୫. କଚ୍ଚାଘରେ ବସବାସ କରୁଥିବା ନିର୍ମାଣ ଶ୍ରମିକମାନଙ୍କୁ ପକ୍କାଘର ଯୋଗାଇଦେବା ଲକ୍ଷ୍ୟରେ ମୋ ସରକାର ସେହିଭଳି 'ନିର୍ମାଣ ଶ୍ରମିକ ପକ୍କାଘର' ଯୋଜନାରେ ବୋର୍ଡରେ ୩ ବର୍ଷ ପୂର୍ବରୁ ପଞ୍ଜୀକୃତ ନିର୍ମାଣ ଶ୍ରମିକମାନଙ୍କୁ ଆଉ ୫୦ ହଜାର ଘର ବଣ୍ଟନ ପାଇଁ ନିଷ୍ପତ୍ତି ନେଇଛି । ବିଭିନ୍ନ ଯୋଜନାରେ ଏହି ଭଳି ଲକ୍ଷାଧିକ ଗୃହ ନିର୍ମାଣ କାର୍ଯ୍ୟ ତଦାରଖ ଏବଂ ଅଗ୍ରଗତି ଅନୁଧ୍ୟାନ କରିବା ପାଇଁ ମୋ ସରକାର ଏକ ଉତ୍ସର୍ଗୀକୃତ ତଥ୍ୟ ବିନିମୟୀ ରୁରାଲ ହାଉସିଂ ପୋର୍ଟାଲ ଆରମ୍ଭ କରିଛି ।

୧୧୬. ୨୦୧୫-୧୬ରୁ ମୋ ରାଜ୍ୟର ଗ୍ରାମପଞ୍ଚାୟତଗୁଡିକ ଚତୁର୍ଦ୍ଦଶ ଅର୍ଥ କମିଶନ ଓ ଚତୁର୍ଥ ରାଜ୍ୟ ଅର୍ଥ କମିଶନ ଅନୁଦାନରୁ ଯଥାକ୍ରମେ ୮୮୫୦.୩୪ କୋଟି ଏବଂ ୭୩୮୯.୩୦ କୋଟି ଟଙ୍କା ପାଞ୍ଚ ବର୍ଷ ପାଇଁ ପାଇବେ ଯାହାକି ଗ୍ରାମାଞ୍ଚଳରେ ମୌଳିକ ନାଗରିକ ସେବା ଯୋଗାଣ ଓ ସ୍ଥାୟୀ ସଂପତ୍ତିର ରକ୍ଷଣାବେକ୍ଷଣରେ ବିନିଯୋଗ ହେବ । ଏହି ପ୍ରକ୍ରିୟାରେ ପ୍ରତି ଗ୍ରାମପଞ୍ଚାୟତ ବାର୍ଷିକ ହାରାହାରି ୨୫ରୁ ୫୦ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ପାଇବେ ଯାହା ପ୍ରତି ବର୍ଷ ଯଥେଷ୍ଟ ପରିମାଣରେ ବୃଦ୍ଧି ପାଇବାର ସମ୍ଭାବନା ଅଛି । ଅର୍ଥ ଆୟୋଗ ଅନୁଦାନ ବିନିଯୋଗ କରାଯାଉଥିବା ପ୍ରକଳ୍ପଗୁଡିକର ଯୋଜନା ଓ କାର୍ଯ୍ୟାନ୍ୱୟନ ପାଇଁ ମୋ ସରକାର ଗ୍ରାମପଞ୍ଚାୟତ ବିକାଶ ଯୋଜନା 'ଆମ ଗାଁ, ଆମ ଯୋଜନା' ପ୍ରସ୍ତୁତ କରିଛି । ମୁଁ ଆଶାବାଦୀ ଯେ ଏବେ ମୋ ରାଜ୍ୟର ଗ୍ରାମପଞ୍ଚାୟତଗୁଡିକ ଫଳପ୍ରଦ ଭାବରେ ଗାଁର ମୌଳିକ ଆବଶ୍ୟକତା ପୂରଣ ନିମନ୍ତେ ଆର୍ଥିକ ଦୃଷ୍ଟିରୁ ସଶକ୍ତ ହେବେ ।

୧୧୭. କ୍ରୀଡା ପାଇଁ ପ୍ରୋତ୍ସାହନ ଓ ରାଜ୍ୟରେ ବିଶ୍ୱସ୍ତରୀୟ କ୍ରୀଡାବିତ୍ ସୃଷ୍ଟି ମୋ ସରକାରଙ୍କ ପାଇଁ ଏକ ଅଗ୍ରାଧିକାର କ୍ଷେତ୍ର । ପ୍ରତି ବ୍ଲକ୍ ଓ ସବୁ ପୌରାଞ୍ଚଳରେ ଛୋଟ ଖେଳ ପଡିଆ ନିର୍ମାଣ ପାଇଁ ମୋ ସରକାରଙ୍କ ପ୍ରୟାସର ଫଳସ୍ୱରୂପ ୧୫୯ଟି ବ୍ଲକ୍‌ରେ ମିନି ଷ୍ଟାଡିୟମ୍ ନିର୍ମାଣ କାର୍ଯ୍ୟ ଶେଷ କରିଛି ଏବଂ ଧାର୍ଯ୍ୟ ସମୟସୀମା ମଧ୍ୟରେ ଅବଶିଷ୍ଟ ନିର୍ମାଣ କାର୍ଯ୍ୟ ଶେଷ ହେବ । ଏହା ସହିତ ମୋ ସରକାର ମିନି ଷ୍ଟାଡିୟମ୍‌ର ଅନୁପୂରକ ଭାବରେ ବ୍ଲକ୍‌ସ୍ତରୀୟ କ୍ରୀଡା କମ୍ପ୍ଲେକ୍ସ ନିର୍ମାଣ କରୁଛି । ପ୍ରତ୍ୟାଶିତ ଭୂମିକା ଓ ଦାୟିତ୍ୱ ସଂପର୍କରେ ସେମାନଙ୍କୁ ଯୁବାବସ୍ଥାରେ ସଚେତନ କରିବା ଲକ୍ଷ୍ୟରେ ଏବଂ ଦାୟିତ୍ୱସଂପନ୍ନ ନାଗରିକ ହିସାବରେ ଗଢି ଉଠିବା ପରେ ସମାଜରେ ସେମାନଙ୍କଠାରୁ ସକ୍ରିୟ ନାଗରିକତ୍ୱ କାର୍ଯ୍ୟକ୍ରମମାନ ମାଧ୍ୟମରେ ସଂପୃକ୍ତ କରାଇବାକୁ ମୋ ସରକାର ନୂତନ କାର୍ଯ୍ୟକ୍ରମମାନ ଆରମ୍ଭ କରିଛି । ମୋ ସରକାର ମଧ୍ୟ ପର୍ବତାରୋହଣ ଭଳି ଦୁଃସାହସିକ କ୍ରୀଡା ପ୍ରତି ଯୁବକଯୁବତୀମାନଙ୍କୁ ଉତ୍ସାହିତ କରୁଛି ଏବଂ ମୁଁ ଖୁସିର ସହ ପ୍ରକାଶ କରୁଛି ଯେ ଇଣ୍ଡିଆନ୍ ମାଉଣ୍ଟେନିୟରିଂ ପୂର୍ବାଞ୍ଚଳ ଶାଖାର ସହଯୋଗିତାରେ ରାଜ୍ୟର ୧୫ ଜଣ ଯୁବକଯୁବତୀ ୨୦୧୬ ମୌସୁମୀ ପରେ ହିମାଳୟକୁ ପର୍ବତାରୋହଣ ଅଭିଯାନ 'ହିମଶିଖର'ରେ ସାମିଲ ହେବେ ।

ମୁଁ ଅତ୍ୟନ୍ତ ଆନନ୍ଦର ସହ ଏହି ପବିତ୍ର ଗୃହକୁ ଜଣାଉଛି ଯେ ଆମ ରାଜ୍ୟ ପ୍ରବାଦପୁରୁଷ, ସ୍ୱାଧୀନତା ସଂଗ୍ରାମୀ, ରାଷ୍ଟ୍ରନୀତିଜ୍ଞ, ମହାନ୍ ଜାତୀୟବାଦୀ ନେତା ତଥା ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ସ୍ୱର୍ଗତ ବିଜୁ ପଟ୍ଟନାୟକଙ୍କ ଜନ୍ମ ଶତବାର୍ଷିକୀ ପାଳନ କରୁଛି । ଏହି ଗୃହ ପୂର୍ବରୁ ରାଜ୍ୟରେ, ଜାତୀୟ ସ୍ତରରେ ତଥା ଅନ୍ତର୍ଜାତୀୟ ସ୍ତରରେ ବିଶେଷ କରି ସେହି ଦେଶଗୁଡିକରେ ଯେଉଁଠି ତାଙ୍କର ବୀରତ୍ୱ, ବିଶ୍ୱଦୃଷ୍ଟି, ଉଦାହରଣଯୋଗ୍ୟ ସାହସିକତା ତାଙ୍କୁ ଅମର କରିଛି ଏବଂ କିମ୍ବଦନ୍ତୀର ଆଖ୍ୟା ଦେଇଛି

ସେଠାରେ ବର୍ଷତମାମ ଏହି ମହୀୟାନ୍ ଭୂମିପୁତ୍ରଙ୍କ ଜନ୍ମ ଶତବାର୍ଷିକୀ ପାଳନ କରିବାକୁ ପୂର୍ବରୁ ନିଷ୍ପତ୍ତି ନେଇଥିଲା । ଆମ ରାଜ୍ୟ ମାର୍ଚ୍ଚ ୫ ତାରିଖରେ ବିଜୁବାବୁଙ୍କୁ ଯଥୋଚିତ ଶ୍ରଦ୍ଧାଞ୍ଜଳି ପ୍ରଦାନପୂର୍ବକ ଜନ୍ମ ଶତବାର୍ଷିକୀ ସମାରୋହର ଶୁଭାରମ୍ଭ କରିଛି । ରାଜ୍ୟର ଲୋକମାନଙ୍କୁ ସଶକ୍ତ କରୁଥିବା ବିପର୍ଯ୍ୟୟ ପ୍ରସ୍ତୁତି, ପାନୀୟ ଜଳରେ ସ୍ୱାବଲମ୍ବନଶୀଳତା ଓ ଅମଳ ପରବର୍ତ୍ତୀ କ୍ଷତି ହ୍ରାସ ସଂପର୍କିତ ଶହ ଶହ ଭିତ୍ତିଭୂମି ଉନ୍ନୟନ ପ୍ରକଳ୍ପ ତାଙ୍କ ସମ୍ମାନରେ ଲୋକାର୍ପିତ ହୋଇଛି । ଘରଡିହ ନଥିବା ଲୋକମାନଙ୍କୁ ଘରଡିହ ପଟ୍ଟା ବଣ୍ଟନ ମାଧ୍ୟମରେ ଭୂମି ଅଧିକାର ପ୍ରଦାନପୂର୍ବକ ସେମାନଙ୍କୁ ସଶକ୍ତ କରାଯାଇଛି । ଏହା ହିଁ ଥିଲା ବିଜୁବାବୁଙ୍କ ସ୍ୱପ୍ନର ସଶକ୍ତ ଓ ବିକଶିତ ଓଡ଼ିଶା । ସେ ବର୍ତ୍ତମାନ ଏକ ପ୍ରବହମାନ ଚିନ୍ତନ, ପ୍ରଗତି ଓ ସମୃଦ୍ଧିର ସ୍ୱପ୍ନକୁ ରୂପାୟିତ କରିବାର ଚିନ୍ତନ, ଓଡ଼ିଆ ଅସ୍ମିତା, ନିଃସ୍ୱାର୍ଥପର ସେବା ଏବଂ ସମସ୍ତ ପ୍ରତିବନ୍ଧକକୁ ପ୍ରତିହତ କରି ଆମ ଜନସାଧାରଣଙ୍କ ସଶକ୍ତିକରଣର ଏକ ପ୍ରତ୍ୟୟ । ମୁଁ ନିଶ୍ଚିତ ଯେ ଆଗାମୀ ଦିନମାନଙ୍କରେ ସମାରୋହ ଶେଷ ହେବା ପର୍ଯ୍ୟନ୍ତ ଆମ ଲୋକମାନଙ୍କୁ ବିଭିନ୍ନ ଭାବରେ ସଶକ୍ତ କରୁଥିବା ଅନେକ ଉନ୍ନୟନ କାର୍ଯ୍ୟ ଓ ପ୍ରୟାସ ଲୋକାର୍ପିତ ହେବ ଯାହାକି ଏହି ପ୍ରବହମାନ ଚିନ୍ତନ, ଉନ୍ନୟନ ଅଭୀପ୍ସା ଓ ସଶକ୍ତ ଓଡ଼ିଶା ଗଠନ ପ୍ରତି ଯଥାର୍ଥ ସମ୍ମାନ ହେବ ।

ଆମ ଯୁବକଯୁବତୀମାନଙ୍କୁ ନୂତନ ଭାବରେ ଆବିର୍ଭୂତ ସୁବିଧା ସୁଯୋଗଗୁଡିକର ଉପଯୋଗ କରିବା ପାଇଁ ମାର୍ଗଦର୍ଶନ କରାଇବା ଉଦ୍ଦେଶ୍ୟରେ ମୋ ସରକାର ଅନେକଗୁଡିଏ ପଦକ୍ଷେପ ନେଇଥିବା ବେଳେ ଆମେ ଆମ ପ୍ରୟାସର ସଫଳତା ତଥା ପୂର୍ତ୍ତି ନିମନ୍ତେ ଆମର ଲକ୍ଷ୍ୟଭେଦୀ ହସ୍ତକ୍ଷେପ ପଥରେ ଆପଣଙ୍କ ସୁଚିନ୍ତିତ ପ୍ରସ୍ତାବ ଜରିଆରେ ସହଯୋଗ କାମନା କରୁଛୁ । ଏଠାରେ ସ୍ଥାନୀୟ ସୁଯୋଗ ସୃଷ୍ଟି କରିବା ହିଁ ସବୁଠୁ ବଡ ଆହ୍ୱାନ । ଇଣ୍ଟରନେଟ୍‌ର ପ୍ରସାର, ସାମାଜିକ ଗଣମାଧ୍ୟମର ବ୍ୟବହାରରେ ବୃଦ୍ଧି ନିଶ୍ଚିତ ଭାବରେ ଲୋକମାନଙ୍କ ଆଶା ଓ ମନୋଭାବକୁ ପ୍ରଭାବିତ କରିଛି । ତେଣୁ ସେହି ଅନୁସାରେ ଆମେ ଆମର ବୃତ୍ତିଗତ ଉପାୟଗୁଡିକର ପୁନଃନିର୍ଦ୍ଧାରଣ କରିବା ଆବଶ୍ୟକ । ଏହି ପରିବର୍ତ୍ତିତ ସ୍ଥିତିରେ ସମାଧାନର ଅଭିନବ ପନ୍ଥା ନିର୍ଦ୍ଧାରଣ କରିବା ମୋ ସରକାରଙ୍କ ଦାୟିତ୍ୱ ହୋଇଥିବା ବେଳେ ମାନ୍ୟବର ସଦସ୍ୟମାନଙ୍କର ସାମୂହିକ ସହଯୋଗ ଓ ସମର୍ଥନ ଆମ ସମାଜକୁ ଆହୁରି ଉତ୍ତମ ରୂପେ ନିର୍ମାଣ କରିବା ତଥା ଇପ୍‌ସିତ ଲକ୍ଷ୍ୟ ହାସଲ କରାଇ ଆମ ରାଜ୍ୟର ଅର୍ଥପୂର୍ଣ୍ଣ ସଶକ୍ତିକରଣରେ ସହାୟକ ହେବ ।

ମୁଁ ବର୍ତ୍ତମାନ ଆଲୋଚନା ଜାରି ରଖିବା ନିମନ୍ତେ ଆପଣଙ୍କ ଉପରେ ଦାୟିତ୍ୱ ନ୍ୟସ୍ତ କରି ଏହି ଅଧିବେଶନର ସଫଳତା କାମନା କରୁଛି ।

**ଜୟ ହିନ୍ଦ୍ ।**



# ଉତ୍କଳ ପ୍ରସଙ୍ଗର
## ସ୍ୱତ୍ୱ ତଥା ଅନ୍ୟାନ୍ୟ ସୂଚନା ସମ୍ପର୍କିତ ବିବରଣୀ
### ଫର୍ମ ନଂ – ୪
### (ନିୟମାବଳୀ – ୮)

| | | | |
|---|---|---|---|
| ୧. | ପ୍ରକାଶନର ସ୍ଥାନ | ... | ଭୁବନେଶ୍ୱର |
| ୨. | ପ୍ରକାଶନର ସମୟ କାଳ | ... | ମାସିକ |
| ୩. | ମୁଦ୍ରଣକାରୀଙ୍କ ନାମ | ... | ଶ୍ରୀ ଗୋପବନ୍ଧୁ ଶତପଥୀ, ଆଇଏଏସ୍<br>ଓଡ଼ିଶା ସରକାରଙ୍କ ନିମନ୍ତେ ଓ ତରଫରୁ । |
| | ଜାତୀୟତା | ... | ଭାରତୀୟ |
| | ଠିକଣା | ... | ନିର୍ଦ୍ଦେଶକ, ଓଡ଼ିଶା ସରକାରୀ ମୁଦ୍ରଣାଳୟ, ମଧୁପାଟଣା, କଟକ – ୭୫୩୦୧୦ । |
| ୪. | ପ୍ରକାଶକଙ୍କ ନାମ | ... | ଶ୍ରୀ ସୁଶୀଲ୍ କୁମାର ଦାସ, ଓଏଏସ୍ (ଏସ୍ଏଜି)<br>ନିର୍ଦ୍ଦେଶକ<br>ସୂଚନା ଓ ଲୋକ ସଂପର୍କ ବିଭାଗ, ଭୁବନେଶ୍ୱର–୭୫୧୦୦୧ |
| ୫. | ସଂପାଦକଙ୍କ ନାମ | ... | ଡକ୍ଟର ଲେନିନ୍ ମହାନ୍ତି |
| | ଜାତୀୟତା | ... | ଭାରତୀୟ |
| | ଠିକଣା | ... | ସଂପାଦକ, ଉତ୍କଳ ପ୍ରସଙ୍ଗ<br>ସୂଚନା ଓ ଲୋକ ସଂପର୍କ ବିଭାଗ<br>ଓଡ଼ିଶା ସରକାର, ଭୁବନେଶ୍ୱର – ୭୫୧୦୦୧ |
| | ଯେଉଁ ବ୍ୟକ୍ତିବିଶେଷ ସମ୍ବାଦପତ୍ର ସ୍ୱତ୍ତ୍ୱାଧିକାରୀ ହୋଇଥିବେ ଓ ଅଂଶୀଦାର ହୋଇଥିବେ କିମ୍ବା ସମୁଦାୟ ମୂଳଧନର ଏକ ଶତାଂଶରୁ ଅଧିକ ମୂଳଧନ ବିନିଯୋଗ କରିଥିବେ ସେମାନଙ୍କ ନାମ ଓ ଠିକଣା | ... | ଓଡ଼ିଶା ସରକାର, ଭୁବନେଶ୍ୱର |

ମୁଁ ଶ୍ରୀ ସୁଶୀଲ୍ କୁମାର ଦାସ, ନିର୍ଦ୍ଦେଶକ, ସୂଚନା ଓ ଲୋକ ସଂପର୍କ ବିଭାଗ, ଭୁବନେଶ୍ୱର, ଏତଦ୍ୱାରା ଘୋଷଣା କରୁଅଛି ଯେ, ଉପର ଲିଖିତ ବିବରଣୀମାନ ମୋ ଜାଣିବାରେ ସତ୍ୟ ଅଟେ ।

ପ୍ରକାଶକଙ୍କ ସ୍ୱାକ୍ଷର
ନିର୍ଦ୍ଦେଶକ
ସୂଚନା ଓ ଲୋକ ସମ୍ପର୍କ ବିଭାଗ
ଭୁବନେଶ୍ୱର

# ସପ୍ରସଙ୍ଗ ଓଡ଼ିଶା



## କୃଷି ବିପଣନ କ୍ଷେତ୍ରରେ ଦକ୍ଷତା ବୃଦ୍ଧି ନିମନ୍ତେ ରାଷ୍ଟ୍ରୀୟ କୃଷି ବିପଣନ ସଂସ୍ଥା ସହିତ ରାଜିନାମା ସ୍ୱାକ୍ଷରିତ

ରାଷ୍ଟ୍ରୀୟ କୃଷି ବିପଣନ ସଂସ୍ଥା ସହିତ ରାଜିନାମା ସ୍ୱାକ୍ଷର ଓଡ଼ିଶାରେ କୃଷିଜାତ ଦ୍ରବ୍ୟର ବିକ୍ରିବଟା କ୍ଷେତ୍ରରେ ଏକ ନୂତନ ଅଧ୍ୟାୟ ସୃଷ୍ଟି କରିବ । ଏହାଦ୍ୱାରା କ୍ଷୁଦ୍ର ଓ ନାମମାତ୍ର ଚାଷୀ ସେମାନଙ୍କ ଉତ୍ପାଦିତ ଦ୍ରବ୍ୟର ଉଚିତ୍ ମୂଲ୍ୟ ପାଇ ପାରିବେ ବୋଲି ସମବାୟ, ଅବକାରୀ ମନ୍ତ୍ରୀ ଡା. ଦାମୋଦର ରାଉତ ମତବ୍ୟକ୍ତ କରିଛନ୍ତି । ସଚିବାଳୟଠାରେ ସମବାୟ ମନ୍ତ୍ରୀଙ୍କ ଉପସ୍ଥିତିରେ ଭାରତ ସରକାରଙ୍କ କୃଷି ଏବଂ କୃଷକ କଲ୍ୟାଣ ମନ୍ତ୍ରଣାଳୟ ଅଧୀନରେ ଥିବା ଚୌଧୁରୀ ଚରଣ ସିଂ ରାଷ୍ଟ୍ରୀୟ କୃଷି ବିପଣନ ସଂସ୍ଥା, ଜୟପୁର ସହିତ ରାଜ୍ୟ ସରକାରଙ୍କ ଓଡ଼ିଶା ରାଜ୍ୟ କୃଷି ବିପଣନ ପରିଷଦ ଏକ ବୁଝାମଣାପତ୍ର ସ୍ୱାକ୍ଷରିତ ହେବା ଅବସରରେ ମନ୍ତ୍ରୀ ଡା. ରାଉତ କହିଲେ ଯେ ଅଧିକାଂଶ ଚାଷୀ କ୍ଷୁଦ୍ର ଓ ନାମମାତ୍ର ଚାଷୀ ହୋଇଥିବାରୁ ସେମାନଙ୍କର ଉତ୍ପାଦିତ ଦ୍ରବ୍ୟର ଉଚିତ ପ୍ରାପ୍ୟ ନ ପାଇଲେ କୃଷି କାର୍ଯ୍ୟ ପ୍ରତି ଆଗ୍ରହ ହ୍ରାସ ପାଇବ । କୃଷି ଉତ୍ପାଦନ ତଥା ବିପଣନ କ୍ଷେତ୍ରରେ ଘଟୁଥିବା ନୂତନ ଘଟଣା ପ୍ରତି ସଚେତନ କରାଇବା ସହିତ କୃଷିକୁ ଲାଭଜନକ କରିବା ସହିତ କୃଷକମାନଙ୍କ ଅର୍ଥନୈତିକ ଉନ୍ନତି ରାଷ୍ଟ୍ରୀୟ କୃଷି ବିପଣନ ସଂସ୍ଥାର ସେବା, ସହଯୋଗ ଓ ପରାମର୍ଶ ନେବା ପାଇଁ ରାଜ୍ୟ ସରକାର ସ୍ଥିର କରି ଏହି ସଂସ୍ଥା ସହିତ ରାଜିନାମା ସ୍ୱାକ୍ଷର କରିଛନ୍ତି । ଏହି ରାଜିନାମା ଆଗାମୀ ୩ ବର୍ଷ ପର୍ଯ୍ୟନ୍ତ ବଳବତ୍ତର ରହିବ ଏବଂ ଏହାଦ୍ୱାରା ଓଡ଼ିଶାର କୃଷି କ୍ଷେତ୍ରରେ ଅଭୂତପୂର୍ବ ପରିବର୍ତ୍ତନ ଆସିବ ବୋଲି ମନ୍ତ୍ରୀ ଆଶା ପ୍ରକଟ କରିଥିଲେ ।

ରାଜିନାମା ପତ୍ରରେ ରାଷ୍ଟ୍ରୀୟ କୃଷି ବିପଣନ ସଂସ୍ଥାର ମହାନିର୍ଦ୍ଦେଶକ ଶ୍ରୀମତୀ ଇରିନା ଗର୍ଗ ସ୍ୱାକ୍ଷର କରିଥିବା ବେଳେ ଓଡ଼ିଶା ରାଜ୍ୟ କୃଷି ବିପଣନ ପରିଷଦ ପକ୍ଷରୁ ନିର୍ଦ୍ଦେଶକ, କୃଷି ବିପଣନ ତଥା ସଦସ୍ୟ ସଚିବ ଶ୍ରୀ ପ୍ରେମାନନ୍ଦ ଖୁଣ୍ଟିଆ ସ୍ୱାକ୍ଷର କରିଥିଲେ । ସ୍ୱାକ୍ଷରିତ ରାଜିନାମା ଅନୁଯାୟୀ ରାଜ୍ୟର ପ୍ରମୁଖ ବଜାରଗୁଡ଼ିକର ରାଷ୍ଟ୍ରୀୟ କୃଷି ବଜାର ସହ ସଂଯୋଗୀକରଣ ହୋଇପାରିବ । ରାଜ୍ୟରେ ଉତ୍ପାଦିତ ହେଉଥିବା ପ୍ରମୁଖ ଫସଲର ବିକ୍ରିବଟା ପାଇଁ ବିଶେଷ ଯୋଜନା ପ୍ରଣୟନ କରାଯିବ । କୃଷକ ଓ କୃଷି ବିପଣନ କ୍ଷେତ୍ରରେ କାର୍ଯ୍ୟରତ କର୍ମଚାରୀମାନଙ୍କ ଦକ୍ଷତା ବୃଦ୍ଧି ନିମନ୍ତେ କାର୍ଯ୍ୟକ୍ରମ କରାଯିବ । ଏଥିସହିତ କୃଷିଜାତ ଦ୍ରବ୍ୟର ଗୁଣ ଓ ମାନ ନିର୍ଦ୍ଧାରଣ କରାଯାଇ ଚାଷୀମାନେ ଯେପରି ଉଚିତ୍ ମୂଲ୍ୟ ପାଇ ପାରିବେ ସେଥିନିମନ୍ତେ ବ୍ୟବସ୍ଥା ଗ୍ରହଣ

କରାଯିବ । ଉତ୍ପାଦିତ ଦ୍ରବ୍ୟକୁ ସଠିକ୍ ଭାବରେ ସାଇତା ରଖାଯିବା ପାଇଁ ଗୋଦାମ ଗୃହର କର୍ମଚାରୀ ପ୍ରଶିକ୍ଷଣ ନେବା ସହିତ କୃଷି ବିପଣନ ନିର୍ଦ୍ଦେଶାଳୟ ଏବଂ କୃଷି ବିପଣନ ପରିଷଦରେ ମାନବ ସମ୍ବଳ ବିକାଶ ନିମନ୍ତେ ପଦକ୍ଷେପ ନିଆଯିବ । ରାଜ୍ୟର କୃଷି କ୍ଷେତ୍ରରେ ବ୍ୟାପକ ପରିବର୍ତ୍ତନ ହୋଇଥିବା ଏବଂ ବର୍ତ୍ତମାନର ପ୍ରତିଦ୍ୱନ୍ଦ୍ୱିତାମୂଳକ ପରିସ୍ଥିତିରେ ଚାଷୀମାନଙ୍କ ଦ୍ୱାରା ଅଧିକ ଉତ୍ପନ୍ନ କରାଯାଉଥିବା ବିଭିନ୍ନ କୃଷିଜାତ ଦ୍ରବ୍ୟର ସଠିକ୍ ବିକ୍ରିବଟା କ୍ଷେତ୍ରରେ ଉନ୍ନତି ଆଣିବା ଦିଗରେ ଏହି ରାଜିନାମା ସହାୟକ ହେବ ବୋଲି ରାଜିନାମା ସ୍ୱାକ୍ଷର ଅବସରରେ ଉପସ୍ଥିତ କୃଷି ଓ ସମବାୟ ବିଭାଗର ପ୍ରମୁଖ ସଚିବ ଶ୍ରୀ ମନୋଜ ଆହୁଜା ଆଶା ବ୍ୟକ୍ତ କରିଥିଲେ । ଏହି ଅବସରରେ ଚୌଧୁରୀ ଚରଣ ସିଂ ରାଷ୍ଟ୍ରୀୟ କୃଷି ବିପଣନ ସଂସ୍ଥା ଓ ଓଡ଼ିଶା ରାଜ୍ୟ କୃଷି ବିପଣନ ପରିଷଦର ବହୁ ବରିଷ୍ଠ ଅଧିକାରୀ ଉପସ୍ଥିତ ଥିଲେ ।

ତାପସ କୁମାର ସାହା, ସୂଚନା ଅଧିକାରୀ

## ୨୦୧୭ ପଞ୍ଚାୟତ ନିର୍ବାଚନ ପାଇଁ ପ୍ରାକ୍ ପ୍ରସ୍ତୁତି ବୈଠକ

୨୦୧୭ ମସିହା ତ୍ରିସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥାର ସାଧାରଣ ନିର୍ବାଚନ ପାଇଁ ପ୍ରାଥମିକ ପ୍ରସ୍ତୁତି ଆରମ୍ଭ ହୋଇଛି । ଏ ସଂକ୍ରାନ୍ତରେ ରାଜ୍ୟ ନିର୍ବାଚନ କମିଶନ ଶ୍ରୀ ଆର୍.ଏନ୍. ସେନାପତିଙ୍କ ଅଧ୍ୟକ୍ଷତାରେ ଜିଲ୍ଲା ପଞ୍ଚାୟତ ଅଧିକାରୀଙ୍କୁ ନେଇ ଏକ ସମୀକ୍ଷା ବୈଠକ ଅନୁଷ୍ଠିତ ହୋଇଯାଇଛି । ପଞ୍ଚାୟତିରାଜ ବିଭାଗର ଶାସନ ସଚିବ ଶ୍ରୀ ଦେଓରଞ୍ଜନ କୁମାର ସିଂ ଓ ନିର୍ଦ୍ଦେଶକ ଶ୍ରୀ ଦେବେନ୍ଦ୍ର ପ୍ରସାଦ ଦାସଙ୍କ ଉପସ୍ଥିତିରେ ଜିଲ୍ଲାସ୍ତରରେ ଆସନ୍ତା ପଞ୍ଚାୟତ ନିର୍ବାଚନ ପାଇଁ ପ୍ରସ୍ତୁତି ସଂପର୍କରେ ଆଲୋଚନା ହେବା ସହ ନୂତନ ଭାବେ ଗଠିତ ହେବାକୁ ଥିବା ପଞ୍ଚାୟତ ଓ ତା'ର ସୀମା ନିର୍ଦ୍ଧାରଣ ଓ ଆସନ ସଂରକ୍ଷଣ ବ୍ୟବସ୍ଥା ମଧ୍ୟ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ଶେଷ ହେବା ପାଇଁ ନିଷ୍ପତ୍ତି ନିଆଯାଇଛି । ଏହା ବ୍ୟତୀତ ବାଲଟ୍ ବାକ୍ସ ଓ ନିର୍ବାଚନ ସମ୍ବନ୍ଧୀୟ ଅନ୍ୟାନ୍ୟ ଉପକରଣଗୁଡିକର ବର୍ତ୍ତମାନର ସ୍ଥିତି, ଆବଶ୍ୟକୀୟ ଯାନବାହାନ, ନିର୍ବାଚନ କାର୍ଯ୍ୟ ପରିଚାଳନା ପାଇଁ ଆବଶ୍ୟକୀୟ କର୍ମଚାରୀ, ଭୋଟଦାନ କେନ୍ଦ୍ରଗୁଡିକର ସ୍ଥିତି, ନିର୍ଭୁଲ ଭୋଟର ତାଲିକା ପ୍ରସ୍ତୁତି, ଜିଲ୍ଲାସ୍ତରରେ ଥିବା ବିଭିନ୍ନ କର୍ମଚାରୀମାନଙ୍କର ଖାଲି ସ୍ଥାନ ପୂରଣ ସଂପର୍କରେ ଆଲୋଚନା ହୋଇଥିଲା । ତା'ଛଡା ପୂର୍ବ ୨୦୦୭ ଓ ୨୦୧୨ ନିର୍ବାଚନଗୁଡିକରେ ଅର୍ଥ ବିନିଯୋଗ ସାର୍ଟିଫିକେଟ୍ ଦାଖଲ ପାଇଁ ରାଜ୍ୟ ନିର୍ବାଚନ କମିଶନର ଶ୍ରୀ ଆର୍.ଏନ୍. ସେନାପତି ନିର୍ଦ୍ଦେଶ ଦେଇଛନ୍ତି । ଆସନ୍ତା ନିର୍ବାଚନ କାର୍ଯ୍ୟର ସୁପରିଚାଳନା ଓ ସଜାଗ ହୋଇ ସକ୍ରିୟ ପଦକ୍ଷେପ ନେବାକୁ ଜିଲ୍ଲା ପଞ୍ଚାୟତିରାଜ ଅଧିକାରୀମାନଙ୍କୁ ସେ ପରାମର୍ଶ ଦେଇଛନ୍ତି ।

ପୁଷ୍ପାଞ୍ଜଳି ପାଇକରାୟ, ସୂଚନା ଅଧିକାରୀ

## ଭୀମ୍‌ଡୁଙ୍ଗୁରୀ, ଶିଆଳି ବେଳାଭୂମି ଓ ମେରୁ ମଠକୁ ପର୍ଯ୍ୟଟନସ୍ଥଳୀର ମାନ୍ୟତା

ଭୀମଡୁଙ୍ଗୁରୀ, ଶିଆଳି ବେଳାଭୂମି ଓ ମେରୁ ମଠକୁ ରାଜ୍ୟ ସରକାର ପର୍ଯ୍ୟଟନ ସ୍ଥଳୀର ମାନ୍ୟତା ପ୍ରଦାନ କରିଛନ୍ତି । ଏହି ତିନୋଟି ସ୍ଥାନକୁ ମିଶାଇ ରାଜ୍ୟରେ ପର୍ଯ୍ୟଟନ ସ୍ଥଳୀ ସଂଖ୍ୟା ୩୪୭ରେ ପହଞ୍ଚିଛି । ବଲାଙ୍ଗୀର ଜିଲ୍ଲା ସଦର ମହକୁମାରୁ ୨୨ କିଲୋମିଟର ଦୂରବର୍ତ୍ତୀ ଦେଓଗାଁ ବ୍ଲକ୍‌ସ୍ଥିତ ଭୀମଡୁଙ୍ଗରୀ ଅନନ୍ୟ ପ୍ରାକୃତିକ ଶୋଭା ଓ ପାହାଡ ତଥା ପ୍ରଚୀନ ଗୁମ୍ଫାରେ ସମୃଦ୍ଧ । ସେଠାରେ ପ୍ରତିବର୍ଷ କାର୍ତ୍ତିକ ପୂର୍ଣ୍ଣିମାରେ ଗିରିଗୋବର୍ଦ୍ଧନ ପୂଜା ଅନୁଷ୍ଠିତ ହୁଏ ଓ ହଜାର ହଜାର ଶ୍ରଦ୍ଧାଳୁ ସମବେତ ହୁଅନ୍ତି । ଜଗତସିଂହପୁର ଜିଲ୍ଲାର ବାଲିକୁଦା ବ୍ଲକ୍ ମହକୁମାରୁ ୨୦ କିଲୋମିଟର ଦୂରରେ ଶିଆଳି ବେଳାଭୂମି ଅତ୍ୟନ୍ତ ଆକର୍ଷଣୀୟ ।

ବର୍ଷସାରା ଏଠାକୁ ପର୍ଯ୍ୟଟକମାନଙ୍କ ଆଗମନ ହୋଇଥାଏ । ସେହିପରି ମୟୂରଭଞ୍ଜ ଜିଲ୍ଲାର ସଦର ମହକୁମା ବାରିପଦା ସହରରୁ ପ୍ରାୟ ୩୮ କିଲୋମିଟର ଓ ସାରସକଣା ବ୍ଲକ୍‌ରୁ ୮ କିଲୋମିଟର ଦୂରବର୍ତ୍ତୀ ସୁବର୍ଣ୍ଣରେଖା ନଦୀକୂଳରେ ମେରୁ ମଠ ଅତ୍ୟନ୍ତ ପ୍ରସିଦ୍ଧ । ଏଠାରେ ପ୍ରତିବର୍ଷ ମକର ମେଳା ଅନୁଷ୍ଠିତ ହୁଏ ।

ସମ୍ବିତ ମହାନ୍ତି, ସୂଚନା ଅଧିକାରୀ

## ଓଡ଼ିଶା ସହରାଞ୍ଚଳ ଆବାସ ମିଶନର ପ୍ରଥମ ପରିଚାଳନା ବୈଠକ

ସହରାଞ୍ଚଳରେ ସମସ୍ତଙ୍କ ପାଇଁ ବାସଗୃହ ନିର୍ମାଣ ଲକ୍ଷ୍ୟରେ ଗଠିତ ସହରାଞ୍ଚଳ ଆବାସ ମିଶନ ଇତିମଧ୍ୟରେ କାର୍ଯ୍ୟ କରିବା ଆରମ୍ଭ କରିଛି । ମୁଖ୍ୟ ଶାସନ ସଚିବ ଶ୍ରୀ ଆଦିତ୍ୟ ପ୍ରସାଦ ପାଢ଼ୀଙ୍କ ଅଧ୍ୟକ୍ଷତାରେ ମିଶନର ପ୍ରଥମ ପରିଚାଳନା ପରିଷଦ ବୈଠକ ସଚିବାଳୟ ସଭା ପ୍ରକୋଷ୍ଠରେ ଅନୁଷ୍ଠିତ ହୋଇଥିଲା । ଏଥିରେ ଗୃହ ଓ ନଗର ଉନ୍ନୟନ ସଚିବ ଶ୍ରୀ ଜି.ମାଥିଭାଥିନାନ୍ ମିଶନର ଲକ୍ଷ୍ୟ, କାର୍ଯ୍ୟାନ୍ୱୟନ ପଦ୍ଧତି ଏବଂ ବର୍ତ୍ତମାନ ପର୍ଯ୍ୟନ୍ତ ପ୍ରସ୍ତାବିତ ବିଭିନ୍ନ ପ୍ରକଳ୍ପ ଆଲୋଚନା ପାଇଁ ଉପସ୍ଥାପନ କରିଥିଲେ । ସହରର ବସ୍ତି ଏବଂ ନୂତନଭାବେ ସହରସହ ସଂଯୁକ୍ତ ହୋଇଥିବା ଅଂଚଳମାନଙ୍କୁ ଏହି ଯୋଜନାରେ ଅଗ୍ରାଧିକାର ଭିତ୍ତିରେ ସାମିଲ କରିବା ପାଇଁ ମୁଖ୍ୟ ଶାସନ ସଚିବ ଶ୍ରୀ ପାଢ଼ୀ ପରାମର୍ଶ ଦେଇଥିଲେ । ଗ୍ରାମାଞ୍ଚଳରେ ଇନ୍ଦିରା ଆବାସ ଯୋଜନା ଏବଂ ବିଜୁ ପକ୍କାଘର ଯୋଜନା ଯେପରି ଦୃଶ୍ୟମାନ ହେଉଛି ସହରାଞ୍ଚଳ ବାସଗୃହ ଯୋଜନାକୁ ସେହିପରି ସଘନ ଓ ଦୃଶ୍ୟମାନ କରିବା ପାଇଁ ବୈଠକରେ ଉପସ୍ଥିତ ଉନ୍ନୟନ କମିଶନର ଶ୍ରୀ ଆର.ବାଲାକ୍ରିଷ୍ଣନ୍ ପରାମର୍ଶ ଦେଇଥିଲେ ।

ସହରାଞ୍ଚଳ ଆବାସ ଯୋଜନା କାର୍ଯ୍ୟକାରୀ କରିବା ପାଇଁ ମୁଖ୍ୟ ଶାସନ ସଚିବଙ୍କ ଅଧ୍ୟକ୍ଷତାରେ ଓଡ଼ିଶା ସହରାଞ୍ଚଳ ଆବାସ ମିଶନ ଗଠନ କରାଯାଇଛି । ଜିଲ୍ଲାସ୍ତରରେ ଏହାର କାର୍ଯ୍ୟାନ୍ୱୟନ ପାଇଁ ଜିଲ୍ଲା ସହରାଞ୍ଚଳ ଆବାସ ସୋସାଇଟି ଗଠନ କରିବା ପାଇଁ ବୈଠକରେ ନିଷ୍ପତ୍ତି ହୋଇଛି । ଜିଲ୍ଲାପାଳ ଏହି ସୋସାଇଟିର ଅଧ୍ୟକ୍ଷ ରହିବେ ଏବଂ ପ୍ରକଳ୍ପ ନିର୍ଦ୍ଦେଶକ, ଜିଲ୍ଲା ସହର ଉନ୍ନୟନ ସଂସ୍ଥା ଏହାର ସଂପାଦକ ଭାବେ କାର୍ଯ୍ୟ କରିବେ । ଜିଲ୍ଲାରେ ନିୟୋଜିତ ସଂପୃକ୍ତ ବିଭାଗର ନିର୍ବାହୀ ଯନ୍ତ୍ରୀ, ଉନ୍ନୟନ ସଂସ୍ଥାର ଯୋଜନା ସଦସ୍ୟ, ଲିଡ୍ ବ୍ୟାଙ୍କ୍‌ର ପ୍ରତିନିଧି ଅଗ୍ରଣୀ ସ୍ୱେଚ୍ଛାସେବୀ ସଂଗଠନ ଆଦି ଏଥିରେ ସଦସ୍ୟ ରହିବେ ।

ପ୍ରାପ୍ତ ସୂଚନାରୁ ଜଣାପଡିଛି, ରାଜ୍ୟର ୧୧୦ ଟି ସହରାଞ୍ଚଳ ମଧ୍ୟରୁ ୧୦୩ ଟି ସହରାଞ୍ଚଳକୁ ପ୍ରଧାନମନ୍ତ୍ରୀ ଆବାସ ଯୋଜନାରେ ସାମିଲ କରାଯାଇଛି । ଅବଶିଷ୍ଟ ୭ ଟି ସହରକୁ ଏଥିରେ ସାମିଲ କରିବା ପାଇଁ ଭାରତ ସରକାରଙ୍କ ନଗର ଉନ୍ନୟନ ମନ୍ତ୍ରଣାଳୟକୁ ଅନୁରୋଧ କରିବା ନିମନ୍ତେ ବୈଠକରେ ନିଷ୍ପତ୍ତି ହୋଇଥିଲା । ୨୨ ଟି ସହରରେ ସମୁଦାୟ ୨୨ ଟି ପ୍ରକଳ୍ପକୁ ପ୍ରଧାନମନ୍ତ୍ରୀ ଆବାସ ଯୋଜନା ନିମନ୍ତେ ସୁପାରିଶ କରିବା ପାଇଁ ବୈଠକରେ ଅନୁମୋଦନ ହୋଇଥିଲା । ଏଥିରେ ସମୁଦାୟ ୨୨,୨୦୫ ଟି ବାସଗୃହ ନିର୍ମାଣ ହେବ । ଏଗୁଡିକ କେନ୍ଦ୍ର ଓ ରାଜ୍ୟ ସରକାରଙ୍କ ପାଣ୍ଠି ଏବଂ ହିତାଧିକାରୀଙ୍କ ଅଂଶ ଅର୍ଥରେ ନିର୍ମାଣ ହେବ । ସହରାଞ୍ଚଳରେ ୧.୮ ଲକ୍ଷ ଟଙ୍କା ବାର୍ଷିକ ଆୟରୁ କମ୍ ଆର୍ଥିକ ଦୁର୍ବଳ ଶ୍ରେଣୀର ବ୍ୟକ୍ତିମାନେ ଏହି ପ୍ରକଳ୍ପରେ ସାମିଲ ହେବା ପାଇଁ ଯୋଗ୍ୟ ହେବେ । ସମୁଦାୟ ପ୍ରକଳ୍ପ ପାଇଁ ୮୫୦.୧୧ କୋଟି ଟଙ୍କାର ବ୍ୟୟ ଅଟକଳ କରାଯାଇଛି ।

ଉମାକାନ୍ତ ମହାପାତ୍ର, ସୂଚନା ଅଧିକାରୀ

